PATHIKA
(Pleasant Reminiscences)
by Gopal Chhotray
**Publishers : Vidyapuri, Cuttack 753002**
**1995**

ISBN : 81-7411-118-2

ପ୍ରଥମ ପ୍ରକାଶ : ଜୁଲାଇ ୧୯୯୫

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ
ଗ୍ରାମସେବକ ପ୍ରେସ୍
ବାଖରାବାଦ, କଟକ ୭୫୩୦୦୨

ମୂଲ୍ୟ—ଟ ୫୫.୦୦

# ଉତ୍ସର୍ଗ

ସୌଭାଗ୍ୟବତୀ

ବନଲତା ଦେବୀ

ପଥିକର ଯାତ୍ରାର ସମାପ୍ତି ଯେଉଠି ଘଟେ,
ଯେଉଁଠି ସେ ତା'ର ସତ୍ତାକୁ ହରାଇବସେ ।

# ସୂଚୀପତ୍ର

ବିଷୟ | ପୃଷ୍ଠା

ବିଷୟ ପୃଷ୍ଠା

ପଥିକ କେବଳ ତା'ର ଯାତ୍ରାପଥ ଅତିକ୍ରମ କରେ ନାହିଁ, ତାର ଜୀବନର ଗତିପଥ ମଧ୍ୟ ଅତିକ୍ରମ କରି ଚାଲିଥାଏ । ଏ ଦୁଇଟି ବାକ୍ୟରେ କୌଣସି ଜଟିଳତା କିମ୍ବା କୌଣସି ଅବୋଧ୍ୟ ରୂପରେଖ ନାହିଁ । ବାକ୍ୟ ଦୁଇଟି ଅତି ସହଜ ଓ ସରଳ । ତଥାପି ଏ ବାକ୍ୟ ଦୁଇଟି ଭିତରେ ଯେଉଁ ପାର୍ଥକ୍ୟ ବା ତାରତମ୍ୟ ରହିଛି, ତାକୁ ହୃଦୟଙ୍ଗମ କରିବା ଓ ତାର ବିଶେଷତ୍ୱକୁ ଉପଲବ୍ଧି କରିବାରେ ପାଠକଙ୍କୁ କିଛି ଅସୁବିଧାରେ ପଡ଼ିବାର ଆଶଙ୍କା ରହିଛି । ····ଗୋଟିଏ ଶ୍ରେଷ୍ଠ ଉଦାହରଣ । ଆପଣ ଘରୁ ବାହାରି ରାସ୍ତାରେ ଚାଲିଚନ୍ତି । ଜଣେ ଅପରିଚିତ ପଥିକଙ୍କ ସହିତ ଭେଟ ହେଲା—ତା' ପରେ ପରିଚୟର ପର୍ବ । ସେ ଆପଣଙ୍କ ନାମ ଜାଣିଲେ, ଜାଣି ଖୁସି ହେଲେ । ତା' ପରେ ଆପଣ ତାଙ୍କ ନାମ ଜାଣିଲେ— ଜାଣି ଖୁସି ହବାର କଥା । କିନ୍ତୁ ନା, ତାଙ୍କ ନାଁ ଶୁଣି ଆପଣ କିଛୁଟା ଅଡୁଆରେ ପଡ଼ିଲେ । କାରଣ ତାଙ୍କ ନାମର ସଙ୍ଗା ମହାପାତ୍ର ନୁହେଁ, ମହାନ୍ତି ନୁହେଁ, ଚୌଧୁରୀ ନୁହେଁ କି ପଟ୍ଟନାୟକ ନୁହେଁ—ତାଙ୍କର ନାମ ହେଲା—ସଜ୍ଜନ ସିଂହ ବଳଭଦ୍ର ପ୍ରସାଦ ଗୁମାନ୍ ସିଂହ ! ନାମଟି ଶୁଣି ଆପଣ କିଛି ଅଡୁଆରେ ପଡ଼ିବା ସଙ୍ଗେ ସଙ୍ଗେ କିଛି ଆମୋଦ ମଧ୍ୟ ଅନୁଭବ କଲେ । ଭାବିଲେ, ଏ ସଜ୍ଜନ ସିଂହରୁ ଗୁମାନ୍ ସିଂହ, ଏ ଭଦ୍ରଲୋକଟି କିଏ ? ଇଏତ ଆମର ଏଇ ଅଞ୍ଚଳର କେହି ନୁହଁନ୍ତି ! ଇଏ ପୁଣି କୋଉଠୁ ଆସିଲେ ! ଠିକ୍ ଏଇପରି ଏକ ପରିସ୍ଥିତିର ସୃଷ୍ଟି ହୋଇଥିଲା ମୁଁ ଯେତେବେଳେ ମାତ୍ର ଦଶବର୍ଷ ବୟସର କିଶୋର ଥିଲି ଓ ଏଇ ପରିସ୍ଥିତି ବିସ୍ତୃତିଲାଭ କରିଥିଲା ଆମ ଗ୍ରାମ ଜଗତ୍‌ସିଂହପୁର ପୁରୁଣାଗଡ଼ଠାରୁ କଟକସହର ପର୍ଯ୍ୟନ୍ତ ଦୀର୍ଘ—ପ୍ରାୟ ପଇଁଚାଳିଶି ମାଇଲ୍ । ଦୂରତ୍ୱ ଖୁବ୍ ବେଶୀ, କାରଣ ସେତେବେଳେ ଅର୍ଥାତ୍ ଏହି ଶତାବ୍ଦୀର ଦ୍ୱିତୀୟ ପାଦରେ ପୁରୁଣାଗଡ଼-ଠାରୁ କଟକ ଯାତ୍ରାର ମାଧ୍ୟମ ଥିଲା ମାତ୍ର ନିଜର ପାଦଦୁଇଟି ।

**ସାମଲ ପଟ୍ଟନାୟକ ଉପାଖ୍ୟାନ**

ସେଦିନର କଥା, ଆମ ଗାଁ ପୁରୁଣାଗଡ଼ର ନିମ୍ନପ୍ରାଥମିକ ବିଦ୍ୟାଳୟ ପରିଦର୍ଶନ କରିବା ପାଇଁ ଆସିଥା'ନ୍ତି ସ୍କୁଲ୍ ସବ୍‌ଇନସ୍‌ପେକ୍ଟର ଅର୍ଥାତ୍ ବିଦ୍ୟାଳୟର

ପରିଦର୍ଶକ ଶ୍ରୀଯୁକ୍ତ ଭଗବତ୍‌ପ୍ରସାଦ ପଟ୍ଟନାୟକ, ବି ଏ., ଡି. ଇଡ଼. । ସେ କାଳରେ ଏଇ ଜିମ୍ ପ୍ରାଇମେରୀ ବିଦ୍ୟାଳୟର ପରିଦର୍ଶକମାନେ ବି. ଏ. ଡି. ଇଡ଼ ଯୋଗ୍ୟତା-ସମ୍ପନ୍ନ ବ୍ୟକ୍ତିମାନେ ନିଯୁକ୍ତ ଥା'ନ୍ତି । ଏହା ହେଉଚି ପ୍ରାୟ ଏଇ ଶତାବ୍ଦୀର ଦ୍ୱିତୀୟ ପାଦର ଘଟଣା—ଯେତେବେଳକୁ ଅବଶ୍ୟ ସାଇକେଲ୍ ପ୍ରଚଳନ ହେଲାଣି । କିନ୍ତୁ ଆମେ ଯେଉଁ ସାଇକେଲ୍‌କୁ ପ୍ରଥମେ ଦେଖିଲୁ, ସେ ସାଇକେଲ୍‌ର ମାଲିକ ତଥା ଚାଳକ ଥିଲେ ଆଉ ଜଣେ ସ୍କୁଲ୍ ସବ୍‌ଇନ୍‌ସପେକ୍ଟର—ତାଙ୍କ ନାମ ଶ୍ରୀଯୁକ୍ତ ଶ୍ରୀଧର ସାମଲ ବି. ଏ. ଡି. ଇଡ଼ । ନାତିଦୀର୍ଘ, ଗୌରବର୍ଣ୍ଣ, ସୁଗୋଲ ସୁଦର୍ଶନ ମୂର୍ତ୍ତି—ସେ ଥିଲେ ଜଣେ ହରିଜନ ଶ୍ରେଣୀର ଭଦ୍ରଲୋକ । ସେଦିନ ଶ୍ରୀଧରବାବୁ ସାଇକେଲରୁ ଓହ୍ଲାଇ ଜଗତସିଂହପୁର ସର୍କଲର ସବ୍‌ଇନ୍‌ସପେକ୍ଟର ଭଗବତବାବୁଙ୍କ ଅଫିସବାଡ଼ିକୁ ଯୋଡ଼ହସ୍ତରେ ଆସିଲେ—ସେମିତି ଯୋଡ଼ ହସ୍ତରେ ଭଗବତବାବୁ ହସହସ ମୁହଁରେ ତାଙ୍କ ଆସନରୁ ଉଠିସାରି ଶ୍ରୀଧରବାବୁଙ୍କ ସମ୍ବର୍ଦ୍ଧନା ଜଣାଇ ଗୋଟିଏ ଚୌକି ଉପରେ ଆସନ ଗ୍ରହଣ କରିବା ପାଇଁ ଅନୁରୋଧ ଜଣାଇଲେ । ଆମେ ପିଲାମାନେ ଦେଖୁଥାଉ ଦୁହିଁଙ୍କର ଯୋଡ଼ହସ୍ତ । ଭଗବତବାବୁ ଚୌକିଟାକୁ ଆଉ ଟିକିଏ ଆଗେଇଦେଇ ଶ୍ରୀଧରବାବୁଙ୍କୁ ବସିବାକୁ ଅନୁରୋଧ କରୁଥା'ନ୍ତି, କିନ୍ତୁ ଶ୍ରୀଧରବାବୁ ବସୁ ନ ଥା'ନ୍ତି । କାହିଁକି ? ଆମେ କେହି କିଛି ବୁଝିପାରୁ ନ ଥାଉ । ଶେଷକୁ ଶ୍ରୀଧରବାବୁ ଅତି ବିନୟ ସହକାରେ ଭଗବତବାବୁଙ୍କୁ ଜଣାଇ କହିଲେ—ଦେଖନ୍ତୁ ଆଜ୍ଞା, ଏ ଚୌକିବାଡ଼ାରେ ଗୋଟିଏ ସଫା ଚଦର ପଡ଼ିଛି, ଆପଣ ଦୟାକରି ଚଦରଟି ଉଠାଇ ଦବାପାଇଁ ଚାକରକୁ କହନ୍ତୁ । ମୁଁ ଚୌକିରେ ବସିବି । ଭଗବତବାବୁ ଟିକିଏ ବିସ୍ମୟ ଅବସ୍ଥାରେ ହଉ ବା ଅପ୍ରସ୍ତୁତ ଅବସ୍ଥାରେ ହେଉ, ଟିକିଏ ଅପେକ୍ଷା-କରି, ତା'ପରେ ହୋ ହୋ ହୋଇ ହସି ଶ୍ରୀଧରବାବୁଙ୍କୁ କୁଣ୍ଢେଇ ପକାଇ କହିଲେ—ବୁଝିଲି, ଆପଣ ଅଛୁଆଁ ଜାତିର ଲୋକ ବୋଲି ଏ ଚୌକିରେ ବସିଲେ ଏ ଚଦରଖଣ୍ଡିକ କାଳେ ଛୁଆଁ ହୋଇଯିବ, ସେଥିପାଇଁ ବସୁନାହାଁନ୍ତି । ହୋଇପାରେ, ଆପଣ ଏଠୁ ଚାଲିଗଲା ପରେ ମୋ' ପରିବାର ଲୋକେ ଏ ଚଦରଟିକୁ ଧୋଇ ତା' ପରେ ବ୍ୟବହାର କରିବେ । କିନ୍ତୁ ମୁଁ ନୁହେଁ । ଏଇ ଦେଖନ୍ତୁ, ଏବେଠୁଁ ଏ ଚଦରଟି ମୋ' କାନ୍ଧରେ ପଡ଼ିଲା । ଆଜି ନୁହେଁ, ସବୁଦିନେ ଏମିତି ଅଧୁଆ ଅବସ୍ଥାରେ ମୋ' କାନ୍ଧରେ ଏ ଚଦର ପଡ଼ି ରହିଥିବ । ...ସରଳ, ଭଦ୍ର ଓ ଅମାୟିକ ଖ୍ୟାତିସମ୍ପନ୍ନ ଶ୍ରୀଧରବାବୁଙ୍କ ଶତ ଅନୁରୋଧ ସତ୍ତ୍ୱେ ଭଗବତବାବୁ ଚଦରଟିକୁ କାନ୍ଧଛଡ଼ା କଲେ ନାହିଁ । ତା'ପରେ ଦୁହେଁ ଏକତ୍ର ବସି ଗୋଟିଏ ପାତ୍ରରେ ଜଳପାନ ପର୍ବ ଶେଷ କଲାପରେ ଶ୍ରୀଧରବାବୁ ଭଗବତବାବୁଙ୍କଠାରୁ ବିଦାୟ ଗ୍ରହଣ କରି ବାଲିକୁଦା ଅଭିମୁଖେ ଯାତ୍ରା କଲେ ।

ସେଦିନ ଆମେ କେତେଜଣ ନିମ୍ନପ୍ରାଥମିକ ଛାତ୍ରଛାତ୍ରୀ ସେ ବର୍ଷର ନିମ୍ନପ୍ରାଥମିକ ବୃତ୍ତି-ପରୀକ୍ଷାର ବଛାବଛି ପରୀକ୍ଷା ପାଇଁ ଭାଗବତବାବୁଙ୍କ ଅଫିସ୍ ଗୃହରେ ଉପସ୍ଥିତ ଥିଲୁ । ବୟସରେ ଶିଶୁ ହେଲେହେଁ ସେ ବେଳର ଚାଲିଚଳଣି ରୀତିନୀତିରୁ ସେ ବୟସରେ ବି ଏକଥା ବୁଝିପାରିଥିଲୁ ଯେ, ଆମଗ୍ରାମ ସୀମାନ୍ତରେ ଏମିତି କିଛି ଲୋକ ଅଛନ୍ତି, ଯେଉଁମାନଙ୍କୁ ଛୁଇଁଦେଲେ ଆମେ ଛୁଆଁ ହେଇଯିବୁ । ଛୁଆଁ ହେଇଯିବା ଅର୍ଥ—ଯିଏ ଛୁଆଁ ହେଲା, ସେ ତାର ପିନ୍ଧିଥିବା ଲୁଗା ନ ବଦଳେଇଲେ ଆଉ କାହାକୁ ଛୁଇଁ ପାରିବନି । ଯାହାକୁ ଛୁଇଁବ, ସେ ମଧ୍ୟ ଛୁଆଁ ହୋଇଯିବ । ତାକୁ ଲୁଗା ବଦଳେଇବାକୁ ପଡ଼ିବ । କିନ୍ତୁ ସେଦିନ ଅଛୁଆଁ ସବ୍‌ଇନସ୍‌ପେକ୍ଟର ବାବୁ ଶ୍ରୀଧର ସାମଲଙ୍କ ସହ ଯେଉଁ ହସଖେଳ ଓ ସ୍ନେହ ଆଦର ସହିତ ଛୁଆଁ ଭାଗବତବାବୁଙ୍କ ଏକତ୍ର ଭୋଜନର ନାଟକଟି ସେଠି ଅଭିନୀତ ହେଲା, ତାକୁ ଆମେ ଶିଶୁଛାତ୍ରମାନେ ଆଦୌ ଗ୍ରହଣ କରିପାରିଲୁ ନାହିଁ । ଆମ ନିଜ ନିଜ ଭିତରେ ଫୁସ୍‌ଫାସ୍ କଥାରେ ଏଇ ସିଦ୍ଧାନ୍ତରେ ଆମେ ଉପନୀତ ହେଲୁ ଯେ, ଆଜିଠୁ ଶ୍ରୀ ଭାଗବତ ପଟ୍ଟନାୟକ—ଭାଗବତ ସାମଲ ହୋଇ ଅଛୁଆଁ ରହିଗଲେ । ଏପରିକି ବାକୀ ଯେତେ ସମୟ ଆମେ ସେଠି ରହିଥିଲୁ, ସେ ସମୟତକ ଆମେମାନେ ଖୁବ୍ ସତର୍କତାର ସହିତ ଲୁଗାପଟା ଟେକି ସେଠି କାରବାର ହେଉଥିଲୁ, ଯେମିତି ଆମେ ତାଙ୍କଠାରୁ ଦୂରେଇ ଦୂରେଇ ରହୁଥିବୁ ଓ ଆମକୁ ଛୁଆଁ ଦୋଷ ଲାଗିବନି । ଭାଗବତବାବୁ ଆମମାନଙ୍କର ଏ ଦୁରବସ୍ଥା ଦେଖି ନିଜେ ହସିଲେ, ଆମକୁ ହସାଇଲେ ଓ ପ୍ରାଞ୍ଜଳ ଭାବରେ ଏ ଛୁଆଁ ଅଛୁଆଁ ପ୍ରସଙ୍ଗଟି ଏମିତି ଭାବରେ ବୁଝାଇଦେଲେ, ଯାହା ଚିରଦିନ ପାଇଁ ଆମମାନଙ୍କର ହୃଦୟପଟରେ ଲିପିବଦ୍ଧ ହୋଇ ରହିଗଲା ।

## ବିଚ୍ଛନ୍ଦ ଚରଣ, କଳିଙ୍ଗ ଭାରତୀ ଓ ବାଳକୃଷ୍ଣ ଦାସ

ଏଇ ସ୍କୁଲ ସ· ଇ. ଭାଗବତ ପଟ୍ଟନାୟକ ବି. ଏ. ଡ଼ି. ଇଡ଼. । ଘର ତାଙ୍କର ବାଙ୍କୀ ଇଲାକାରେ । ତାଙ୍କର ସୁଯୋଗ୍ୟ ଭ୍ରାତୃଷ୍ପୁତ୍ର ବିଖ୍ୟାତ ଡାକ୍ତର ଶ୍ରୀଯୁକ୍ତ ବନବିହାରୀ ପଟ୍ଟନାୟକଙ୍କ ବାସସ୍ଥଳୀ—କଟକ ଉଦରପଡ଼ାରେ । ସେତେବେଳେ ଭଞ୍ଜଜୟନ୍ତୀ ସମାରୋହର ଆରମ୍ଭ ସମୟ । ଡାକ୍ତର ଶ୍ରୀଯୁକ୍ତ ପଟ୍ଟନାୟକ ସନ୍ଧ୍ୟାବେଳେ ନିଜର ଡାକ୍ତରୀ ବ୍ୟବସାୟ କଥା ଭୁଲିଯାଇ ଭଞ୍ଜଜୟନ୍ତୀ ଆୟୋଜନରେ ନିଜକୁ ସମ୍ପୂର୍ଣ୍ଣ ହଜାଇ ଦେଇଥିଲେ । ବାସ୍ତବରେ ସେତେବେଳେ ସୁଶିକ୍ଷିତ ଓ ସୁବକ୍ତା ବିଚ୍ଛନ୍ଦ ପଟ୍ଟନାୟକ ଓ ଡାକ୍ତର ଶ୍ରୀଯୁକ୍ତ ବନବିହାରୀ ପଟ୍ଟନାୟକ ଥିଲେ ଭଞ୍ଜସାହିତ୍ୟ ପ୍ରଚାର ଓ ପ୍ରସାରଣର ଦୁଇ ମୁଖ୍ୟ କର୍ଣ୍ଣଧାର । ଏଇମାନଙ୍କର ପ୍ରଚେଷ୍ଟାରେ ହିଁ ସେବେଳର କଲେଜ-ଛାତ୍ର

ଶ୍ରୀ ରଜତ କର, ଶ୍ରୀ ଶରତ କର, ଶ୍ରୀ ପ୍ରଭାତ କର, ଶ୍ରୀ ଶୈଳେଶ୍ୱର ନନ୍ଦ, ଶ୍ରୀ ହୃଦାନନ୍ଦ ରାୟ, କବିପ୍ରସାଦ ମିଶ୍ର ପ୍ରଭୃତି କେବଳ ଭଞ୍ଜସାହିତ୍ୟରେ ନୁହନ୍ତି, ଓଡ଼ିଆ ତଥା ଇଂରାଜୀରେ ଜଣେ ଜଣେ ସମ୍ମାନନୀୟ ବକ୍ତା ହେବାର ଯୋଗ୍ୟତା ହାସଲ କରିପାରିଛନ୍ତି । ଏମାନଙ୍କୁ ସେବେଳର କଳିଙ୍ଗ ଭାରତୀର ଯୋଗ୍ୟ ସୁପୁତ୍ର କହିଲେ ଅତ୍ୟୁକ୍ତି ହେବ ନାହିଁ । ଅନ୍ୟ ଦିଗରେ ଶ୍ରୀଯୁକ୍ତ ବଞ୍ଛନିଧି ପଟ୍ଟନାୟକ ଯେ କେବଳ ଏ ତରୁଣଗୋଷ୍ଠୀର ଶିକ୍ଷାଦାତା ଥିଲେ ତା' ନୁହେଁ, ସେ ଥିଲେ ରୀତିଯୁଗର ସେଇ ସବୁ ଓଡ଼ିଶୀ, ଛାନ୍ଦ, ଚମ୍ପୂ ଓ ଚୌପଦୀ ପ୍ରଭୃତି ମଧ୍ୟଯୁଗୀୟ ଗୀତିସାହିତ୍ୟର ସଂକଳନବିଦ ପିତାମହ । ରୀତିଯୁଗର ଅନ୍ୟ ଏକ ଉଜ୍ଜ୍ୱଳ ଜ୍ୟୋତି କବି ଗୌରଚରଣଙ୍କ ପରିଚୟ ଆମେ ତାଙ୍କର ମୁହଁରୁ ପ୍ରଥମେ ଶୁଣିଥିଲୁ । ପୁଣି କଲେଜ-ଛାତ୍ର ବେଳୁଁ ବଞ୍ଛନିଧିଚରଣ ଇଂରାଜୀ ଭାଷା ସାହିତ୍ୟରେ ତାଙ୍କର ନୈପୁଣ୍ୟ ବା ଜିନିୟସ୍ ପ୍ରତିପାଦିତ କରିପାରିଥିଲେ । ଆଇ. ଏ. ପରୀକ୍ଷାରେ ତାଙ୍କର ଇଂରାଜୀ ଉତ୍ତରଖାତାଟିକୁ ରେଭେନ୍‌ସା କଲେଜର ପ୍ରିନ୍‌ସିପାଲ ହ୍ୱାଇଟ୍‌ମ୍ୟାନ୍ ସାହେବ ଇଂରାଜୀ ଅନର୍ସ ଓ ଏମ୍. ଏ. ଛାତ୍ରମାନଙ୍କୁ ପଢ଼ି ଶୁଣାଇଥିଲେ ।

ଦିନକର କଥା । ମୁଁ ବେତାରକେନ୍ଦ୍ରରେ ଯୋଗ ଦେଇଥାଏ । ବାଳକୃଷ୍ଣ ଦାସ କଲିକତାରୁ ଆସି କଟକ କେନ୍ଦ୍ରର ସଙ୍ଗୀତ ବିଭାଗ, ବିଶେଷତଃ ଓଡ଼ିଶୀ ସଙ୍ଗୀତର ଦାୟିତ୍ୱ ଗ୍ରହଣ କରିଥା'ନ୍ତି । ସେତେବେଳେ ଟେପ୍ ବା କ୍ୟାସେଟ୍‌ର ସମୟ ଆସିନି । ସମସ୍ତ ପ୍ରୋଗ୍ରାମ ସିଧାସଳଖ ଷ୍ଟୁଡ଼ିଓରୁ ପ୍ରସାରିତ ହେଉଥାଏ । ଆଜି ସେଦିନକବେଳେ ଜଣେ ସଙ୍ଗୀତଜ୍ଞ ଭାବରେ—ବିଶେଷତଃ ଓଡ଼ିଶୀ ସଙ୍ଗୀତର ଶିକ୍ଷକ ଓ ଗାୟକ ଭାବରେ ସଙ୍ଗୀତ-ସୁଧାକର ସ୍ୱର୍ଗତ ବାଳକୃଷ୍ଣ ଦାସଙ୍କ ସୁଖ୍ୟାତି ନିଃସୀମା ସ୍ପର୍ଶ କରିଥାଏ । ....ପ୍ରାତଃକାଳ—ବାଳକୃଷ୍ଣବାବୁ ତାଙ୍କର ସ୍ୱଭାବସୁଲଭ ସୁଲଳିତ କଣ୍ଠରେ ଗୋଟିଏ ଓଡ଼ିଶୀ ସଙ୍ଗୀତ ବେତାରରେ ପରିବେଷଣ କଲେ । ମୋର ସେତେବେଳକୁ ଓଡ଼ିଶୀ ସଙ୍ଗୀତର ଶୈଳୀ ବା ସାଏନ୍‌ସରେ ବିଶେଷ ପ୍ରବେଶ ହୋଇନାହିଁ । ତଥାପି ତାଙ୍କର ଏଇ ସଙ୍ଗୀତଟିକୁ ମୁଁ ମନଃପ୍ରାଣ ଦେଇ ଶୁଣୁଥାଏ । ଗୀତ ଶେଷ ହେଇଆସୁଚି, ହଠାତ୍ ଦେଖିଲି—ଆକାଶବାଣୀ ଫାଟକ ଦେଇ ପ୍ରାଙ୍ଗଣ ଭିତରକୁ ଗୋଟିଏ ରିକ୍‌ସା ପଶି ଆସି ମୋ'ର ପାଖରେ ଅଟକିଗଲା । ସେତେବେଳେ ହାତଟଣା ରିକ୍‌ସା ଚାଲୁଥାଏ । ରିକ୍‌ସା ଉପରେ ବସିଚନ୍ତି ବଞ୍ଛନିଧିବାବୁ—ଦେହମନରେ ଉତ୍ତେଜନା । ସେମିତି ଉତ୍ତେଜିତ ଅବସ୍ଥାରେ ସେ ରିକ୍‌ସାରୁ ଓହ୍ଲାଇପଡ଼ିବାକୁ ବସିଥିଲେ । ମୁଁ ତାଙ୍କୁ ଅଟକେଇଦେଲି (ଏକଥା ସମସ୍ତେ ଜାଣନ୍ତି, ବଞ୍ଛନିଧିବାବୁଙ୍କର ପାଦଚାଳନାରେ ଗୋଟିଏ ପାଦ ଅକ୍ଷମ । ସେଥିପାଇଁ ତାଙ୍କ ସହିତ ସବୁବେଳେ ଜଣେ ସାହାଯ୍ୟକାରୀ ଥା'ନ୍ତି । ସେଦିନ କିନ୍ତୁ ସେ ଏକାକୀ ଆସିଚନ୍ତି) ମତେ ଦେଖି ସେ

ଗୋଟାଏ ଉତ୍ତେଜନାରେ ନିଜ ଅକ୍ଷମ ପାଦର କଥା ଭୁଲିଯାଇ ଏକା ଏକା ରିକ୍‌ସାରୁ ହୁଏତ ଓହ୍ଲାଇଆସିବାକୁ ଯାଉଥିଲେ, ମୁଁ ତାଙ୍କୁ ଅଟକାଇଦେଇ ଓହ୍ଲାଇଆସିବାକୁ ସାହାଯ୍ୟ କଲି । ସେ ମୋ' କାନ୍ଧରେ ହାତରଖି ଠିଆ ହେବା ସଙ୍ଗେ ସଙ୍ଗେ ଏକାନ୍ତ ଉତ୍ତେଜିତ, ଏପରିକି ଅଶ୍ରୁପୂର୍ଣ୍ଣ ଚକ୍ଷୁରେ କହିଚାଲିଥା'ନ୍ତି— ଆପଣ କୁହନ୍ତୁ ଗୋପାଳବାବୁ, ବାଳକୃଷ୍ଣବାବୁ ଯଦି ହିନ୍ଦୁସ୍ଥାନୀ ଢଙ୍ଗରେ ଓଡ଼ିଶୀ ଗାଇବେ, ତା' ହେଲେ ଏ ଦେଶର ଅବସ୍ଥା କ'ଣ ହେବ—ଆମମାନଙ୍କର ଅବସ୍ଥା କ'ଣ ହବ ! କହିବା ସଙ୍ଗେ ସଙ୍ଗେ ତାଙ୍କ ଆଖିରେ ଲୁହ ଟଳ ଟଳ ହୋଇ ଆସୁଥାଏ । ଗୋଟାଏ ମୁହୂର୍ତ୍ତିରେ ମୁଁ ସବୁ ବୁଝିପାରିଲି—ବୁଝିପାରିଲି ଯେ ସେଦିନ ସେ ବାଳକୃଷ୍ଣ ଦାସଙ୍କ କଣ୍ଠରୁ ହିନ୍ଦୁସ୍ଥାନୀ ଧାଞ୍ଚରେ ଓଡ଼ିଶୀ ସଙ୍ଗୀତ ଶୁଣି ସଙ୍ଗେ ସଙ୍ଗେ ରିକ୍‌ସାରେ ବସି ଉଗରପଡ଼ାରୁ ସେବେଳର ମଧୁପୁରକୋଠି ବେତାର କେନ୍ଦ୍ରକୁ ଚାଲିଆସିଚନ୍ତି । ତାଙ୍କ ପ୍ରତି ମୋର ସମସ୍ତ ଶ୍ରଦ୍ଧା ଓ ସମ୍ମାନ ସହି ତାଙ୍କୁ ଆଣି ଷ୍ଟୁଡ଼ିଓ କାଉଚ୍‌ରେ ବସାଇଲି । ବାଳକୃଷ୍ଣବାବୁ ଷ୍ଟୁଡ଼ିଓ ଭିତରେ ଥା'ନ୍ତି । ତାଙ୍କୁ ଯାଇ ସମସ୍ତ କଥା କହିଲି । ବାଳକୃଷ୍ଣବାବୁ ବିବ୍ରତ ହୋଇପଡ଼ୁଥା'ନ୍ତି । ମୋ' ପାଖରେ ସ୍ୱୀକାର କଲେ ଯେ, ଓଡ଼ିଶୀ ଗୀତର ଆରମ୍ଭର ଆଳାପରେ ସେ କିଛି ମୁହୂର୍ତ୍ତ ପାଇଁ ହିନ୍ଦୁସ୍ଥାନୀ ଟାନ୍ ଦେଇଥିଲେ । ଏବେ କ'ଣ କରାଯିବ ? କିଛି ସମୟ ପରେ ମୋ' ହାତଧରି କହିଲେ—ଆସନ୍ତୁ । ଆମେ ଦୁହେଁ ବକ୍ସିବାବୁଙ୍କ ନିକଟକୁ ଗଲୁ । ବାଳକୃଷ୍ଣବାବୁ ତାଙ୍କ ପାଦକୁଇଁ ନମସ୍କାର କଲେ ଓ ହସହସ ମୁହଁରେ ନିଜର ଦୋଷ ମାନିନେଲେ । ଏହାପରେ ଏ ଦୁଇ ମହାରଥୀଙ୍କର ସେଦିନ ବହୁ ସମୟ ଧରି ସହର୍ଷ ବଦନରେ ଆଳାପ-ଆଲୋଚନା ଚାଲିବାର ଏ ଆଖି ଦେଖିଚି । ଏଠି କହିରଖେ, ସ୍ୱାଧୀନଯୁଗର ସମ୍ମାନ ରକ୍ଷାକାରୀ ଏଇ ନାଟକୀୟ ଦୃଶ୍ୟଟି—କେବଳ ନାଟକୀୟ ଦୃଶ୍ୟ କାହିଁକି, ଏଇ ଐତିହାସିକ ଘଟଣାଟିର ଦର୍ଶକ ଓ ଶ୍ରୋତା ଏକମାତ୍ର ମୁଁ ଥିଲି ।

## ବଙ୍ଗଳା, ବିହାରୀ ଓ ଓଡ଼ିଆ

ଏଇଥିରୁ ମୋର ମନେପଡ଼ିଯାଉଚି ଏଇ ଇତିବୃତ୍ତି ଆରମ୍ଭ ବେଳର ସେଇ ଓଡ଼ିଆ, ବଙ୍ଗଳା, ବିହାରୀ କଥା । ପୂର୍ବରୁ କହିଚି, ଆମ ଜଗତସିଂହପୁର ଶିକ୍ଷା-ଅଞ୍ଚଳର ପ୍ରାଇମେରୀ ଶିକ୍ଷାନୁଷ୍ଠାନମାନଙ୍କର ପରିଦର୍ଶକ ବା ଏସ୍.ଆଇ. ଅଫ୍ ସ୍କୁଲ୍‌ସ ଶ୍ରୀ ଭଗବତ ପ୍ରସାଦ ପଟ୍ଟନାୟକ ବି.ଏ., ଡି.ଇଡି. ଙ୍କ କଥା । ସେତେବେଳେ ଏଇ ସି.ଇ. ବା ସ୍କୁଲ୍ ପରିଦର୍ଶକମାନଙ୍କ ସମ୍ପର୍କରେ ଗୋଟିଏ ପ୍ରବଚନ ଚାଲୁଥିଲା । ପ୍ରବଚନଟି ଭଲ କି ମନ୍ଦ, ପୁଣି ଉଚିତ କି ଅନୁଚିତ, ସେକଥା ଏ ରଚନାଟିର ସୁଧୀ ପାଠକବୃନ୍ଦ କହିବେ । ପ୍ରବଚନଟି ହେଲା—"ସବୁ ଖିଲିଲ, ବନ୍ଦିଲ

କଦଳୀ, ଗୁଆଘିଅ ଓ ଖକୁର ମାଛ” ! ଏ ପ୍ରବଚନଟିର ମର୍ମ ହେଲା ଯେ, ଯେତେ-ବେଳେ ସ୍କୁଲ-ପରିଦର୍ଶକ ପରିଦର୍ଶନରେ ଆସିବେ, ସେତେବେଳେ ସ.ଇ. ଙ୍କ ପକ୍ଷରୁ ପରିଦର୍ଶନ ଦିବସଟି ଗ୍ରାମବାସୀଙ୍କୁ ପୂର୍ବରୁ ଜଣାଇଦିଆଯିବ । ଅନୁରକ୍ତ ଗ୍ରାମବାସୀମାନେ ଉପରୋକ୍ତ ସୁଖାଦ୍ୟମାନ ସ.ଇ. ଙ୍କ ପାଇଁ ପ୍ରସ୍ତୁତ କରି ରଖିଥିବେ । ସ୍ନାନାଦି ଶେଷ ପରେ ସ.ଇ.ବାବୁ ସବୁଗୁଡ଼ିକରୁ ଆରମ୍ଭ କରି ସୁସ୍ବାଦୁରୂପେ ପ୍ରସ୍ତୁତ ଖକୁର ମାଛର ମଥା ପର୍ଯ୍ୟନ୍ତ ଉଦରସ୍ଥ କରି ବିଦ୍ୟାଳୟ ପରିଦର୍ଶନ ପୁସ୍ତକ ପୃଷ୍ଠାରେ ମନ୍ତବ୍ୟ ଦେଖି ଦେଇଯିବେ—“ଆମ୍ଭେ ଅଦ୍ୟ ତାରିଖରେ ଏହି ନିମ୍ନପ୍ରାଥମିକ ବିଦ୍ୟାଳୟଟି ପରିଦର୍ଶନ କରି ଅତ୍ୟନ୍ତ ପ୍ରୀତ ହେଲୁ । ଛାତ୍ରଛାତ୍ରୀମାନେ ପ୍ରାୟ ସମସ୍ତେ ଅର୍ଥାତ୍ ପାଞ୍ଚଜଣ ଉପସ୍ଥିତ ଥିଲେ । ଏ ବିଦ୍ୟାଳୟ ନିଶ୍ଚୟ ଉତ୍ତରୋତ୍ତର ଉନ୍ନତ ଦିଗରେ ଅଗ୍ରସର କରିବ । ଏହାପରେ ଯେଉଁଦିନ ଡି.ଆଇ. ପରିଦର୍ଶନରେ ଆସିବେ, ଏକଥା ଜାଣିବାର କୌଣସି ଉପାୟ ତାଙ୍କର ନ ଥିବ । ସ.ଇ. ଚାଲିଯିବା ପରେ ତାଙ୍କ ମନ୍ତବ୍ୟରେ ସେ ଛାତ୍ରଛାତ୍ରୀ ସଂଖ୍ୟା ଯାହା ୫ ବୋଲି ଲେଖିଥିବେ, ତାଙ୍କ ଗୋପନ ପରାମର୍ଶରେ ଶିକ୍ଷକ ମହାଶୟ ପାଞ୍ଚ ପାଖରେ ଗୋଟିଏ ଶୂନ ବସାଇଦିଅନ୍ତି । କହୁଚି ତ ଏହା ଏକ ଚଳଣି । ଚଳଣି ସବୁ ସମୟରେ ଓ ସବୁ କ୍ଷେତ୍ରରେ ସତ୍ୟ ବୋଲି ଗୃହୀତ ହୁଏ ନାହିଁ । ତେବେ ଏ କ୍ଷେତ୍ରରେ ଯାହାହେଉନା କାହିଁକି, ଆମ ଜଗତସିଂହପୁର ଶିକ୍ଷାୟତନର ସ.ଇ. ବାବୁ ସେଇ ଭାଗବତ ପ୍ରସାଦ ପଟ୍ଟନାୟକ ଏ ସବୁର ବହୁ ଦୂରରେ ଥିଲେ । କାହାରିକୁ କିଛି ନ ଜଣାଇ ସେ ଅକସ୍ମାତ୍ ସ୍କୁଲ ପରିଦର୍ଶନରେ ଆସି ପହଞ୍ଚିଯା’ନ୍ତି । ତାଙ୍କର ଭୋଜନ ପାଇଁ କିଛି ଚାଉଳ ଓ ପରିବା ସଙ୍ଗରେ ଆସିଥାଏ । ସ୍କୁଲ ଗୃହର ଏକ ନିକାଞ୍ଚନ ସ୍ଥାନରେ ତାଙ୍କର ରନ୍ଧନ ଓ ଭୋଜନକାର୍ଯ୍ୟ ସମ୍ପାଦିତ ହୁଏ । ଶ୍ରୁତିଗୋଚର ଅଛି ଯେ, ମୟୂରଭଞ୍ଜର ବିଗତପ୍ରାଣ ପୁଣ୍ୟଶ୍ଳୋକ ମହାରାଜା ମହାତ୍ମା ଶ୍ରୀରାମଚନ୍ଦ୍ରଭଞ୍ଜ ଯେତେବେଳେ ତାଙ୍କର ରାଜ୍ୟ ପରିଦର୍ଶନରେ ଯାଉ-ଥିଲେ, ସେତେବେଳେ ତାଙ୍କ ସହିତ ମାତ୍ର ଜଣେ ବ୍ୟକ୍ତିଗତ ଭୃତ୍ୟ ଯାଉଥିଲା ଓ ସେ ମଧ୍ୟ ଠିକ୍ ଏହିପରି ଭାବେ ତାଙ୍କର ଖାଦ୍ୟପେୟର ବ୍ୟବସ୍ଥା ପାଇଁ ସାଥିରେ କିଛି ଚାଉଳ ଓ ପରିବା ଆଦି ନିଜ ସହିତ ନେଉଥିଲେ । ଏଇ ମହାପୁରୁଷଙ୍କ ନାମ ଅନୁସାରେ କଟକ ଶ୍ରୀରାମଚନ୍ଦ୍ର ମେଡିକାଲ କଲେଜ ନାମିତ ହୋଇଚି ।

### ଛାତ୍ରାବସ୍ଥା ଚଟାର୍କି ପ୍ରସଙ୍ଗ

ସେ ଦିନ ସ.ଇ. ଭାଗବତବାବୁଙ୍କ ଅଫିସରେ ଆମେ ନିମ୍ନ ପ୍ରାଇମେରୀ ବୃତ୍ତି ପରୀକ୍ଷା ପାଇଁ ବଛାବଛି ପରୀକ୍ଷା ଦେଉଥିଲୁ । ତା’ପରେ ଫାଇନାଲ୍ ବୃତ୍ତି-ପରୀକ୍ଷା ଦେବାକୁ ହେଲା । ଆମ ଗାଁର ଏଇ ପୁରୁଣାଗଡ଼ ନିମ୍ନପ୍ରାଥମିକ ବିଦ୍ୟାଳୟ

ଏକ ଅତି ପୁରାତନ ବିଦ୍ୟାପୀଠ । ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଅର୍ଥାତ୍ ଅଠରଶହ ଶତାବ୍ଦୀର ପଞ୍ଚମ ଦଶକରେ ଏଇ ବିଦ୍ୟାଳୟଟି ସ୍ଥାପିତ ହୋଇଥିଲା । ଏଇ ବିଦ୍ୟାଳୟର ଏକାଧିକ ଛାତ୍ରଛାତ୍ରୀ ବୃତ୍ତି ପାଇବାର ଯୋଗ୍ୟତା ମଧ୍ୟ ଲାଭ କରିଥିଲେ । ସେ ବର୍ଷ ବୃତ୍ତିପରୀକ୍ଷା ଫଳ ପ୍ରକାଶ ପାଇଲା ପରେ ଜଣାପଡ଼ିଲା ଯେ, ଆମ ପୁରୁଣାଗଡ଼ ନିମ୍ନପ୍ରାଥମିକ ବିଦ୍ୟାଳୟରୁ ଜଣେ ଛାତ୍ର ବୃତ୍ତି ପାଇଛି । କିନ୍ତୁ କିଏ ସେ ଛାତ୍ର ? କିଛିଦିନ ପରେ ଖବରକାଗଜରୁ ଜଣାଗଲା ଆମ ନିମ୍ନ ପ୍ରାଥମିକ ବିଦ୍ୟାଳୟରୁ ଯେଉଁ ଛାତ୍ରଟି ସେ ବର୍ଷ ବୃତ୍ତି ପାଇଛି, ତାର ନାମ ହେଉଛି ଗୋପାଳ ପ୍ରସାଦ ଚାଟାର୍ଜୀ । ଆମ ବିଦ୍ୟାଳୟରୁ ଆମେ ଦୁ'ଜଣ ଛାତ୍ରଛାତ୍ରୀ ବାଛିବାଛି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ବୃତ୍ତି ପରୀକ୍ଷା ଦେଇଥିଲୁ । ଛାତ୍ରୀଟିର ନାଁଟି ବାହାରି ନାହିଁ । ଆଉ ମୋର ନାମ ହେଲା ଗୋପାଳ ପ୍ରସାଦ ଶ୍ରେଷ୍ଠରାୟ । ଏ ଚାଟାର୍ଜି ତେବେ ଆସିଲା କେଉଁଠୁ ? ଅତି ବିଚିତ୍ର ଘଟଣା ! ମୋର ପୂଜ୍ୟଶିକ୍ଷକ ସ୍ୱର୍ଗତ କ୍ଷେତ୍ରମୋହନ ରାୟ ଆଉ ଅପେକ୍ଷା ନ କରି କଟକ ବାହାରିଗଲେ । କଟକ ଜିଲ୍ଲା ଶିକ୍ଷା ଅଫିସ ଏ ପରୀକ୍ଷା ପରିଚାଳନା କରୁଥା'ନ୍ତି । ଊଣେଇଶିଶହ ଛବିଶ ମସିହାର କଥା । ସେତେବେଳେ ପ୍ରାୟ ସମସ୍ତ ଅଫିସରେ ବଙ୍ଗାଳୀ କର୍ମଚାରୀଙ୍କ ସଂଖ୍ୟା ତଥା ପ୍ରାଧାନ୍ୟ ବେଶୀ । ଶିକ୍ଷକ ମହାଶୟ ଡି.ଆଇ. ଅଫିସରେ ପହଞ୍ଚି ପୁରୁଣାଗଡ଼ ବିଦ୍ୟାଳୟର ବୃତ୍ତି ପାଇଥିବା ଛାତ୍ରଟିର ଦୁର୍ଦ୍ଦଶା କଥା ସେମାନଙ୍କୁ ଜଣାଇଲେ । ଡି.ଆଇ ଅଫିସ୍‌ର ଅଧିକାଂଶ କର୍ମଚାରୀ ତ କେବଳ ବଙ୍ଗାଳୀ । ଶ୍ରୀଯୁକ୍ତ ରାୟଙ୍କ କଥା ଶୁଣି ସମସ୍ତ ଅଫିସରେ କେବଳ ହସର ଲହରୀ ଛୁଟିଗଲା । ତାଙ୍କର କୌଣସି କଥା ନ ଶୁଣି ସେମାନେ କେବଳ ହସୁଥାନ୍ତି । ଉପାୟହୀନ ହୋଇ ସେ ଫେରିଆସିଲା ବେଳକୁ ତାଙ୍କ ଭିତରୁ ଜଣେ କେହି ତାଙ୍କୁ ଅଟକାଇ ପ୍ରକୃତ କଥାଟି କଣ ଜାଣିବାକୁ ଚାହିଁଲେ । ଅସହାୟ ଶ୍ରୀଯୁକ୍ତ ରାୟ ତାଙ୍କୁ ବୁଝାଇଲେ ଯେ, ଏଇ ଛାତ୍ରଟିର ପ୍ରକୃତ ନାମ ହେଉଛି ଗୋପାଳପ୍ରସାଦ ଶ୍ରେଷ୍ଠରାୟ, କିନ୍ତୁ ସମ୍ବାଦପତ୍ରରେ ଭୁଲ୍‌ରେ ଚାଟାର୍ଜି ହୋଇଯାଇଛି । ସେ ପାଖରୁ ପ୍ରଶ୍ନହେଲା—ଏ ଭୁଲ କଲା କିଏ ? ଶିକ୍ଷକ ମହାଶୟ ରହି ରହି ଉତ୍ତର ଦେଲେ—ସେ କଥା ମୁଁ କେମିତି କହିବି ଆଜ୍ଞା ? ସେକଥା କହିଲେ କହିବେ ସି.ଇ. ବାବୁ । ଏଇଠି ବଙ୍ଗାଳୀବାବୁ ଜଣକ କହିଲେ—ହଁ, ଏ ଶ୍ରେଷ୍ଠରାୟ-ଚାଟାର୍ଜି ବିଭ୍ରାଟ ତମର ସେ ସି.ଇ. କରିଚନ୍ତି । ତମ ଏ ଅଞ୍ଚଳରେ ଶ୍ରେଷ୍ଠରାୟ ବୋଲି କେହି ନାହାଁନ୍ତି । ଶ୍ରେଷ୍ଠରାୟ ବୋଲି ଗୋଟିଏ ସଂଜ୍ଞା ଥିବା ଆମକୁ ଜଣା ନାହିଁ । "ଶ୍ରେଷ୍ଠରାୟ" ରାଜପରିବାରମାନଙ୍କରେ ପ୍ରଚଳିତ ଥାଏ । ଏ ପିଲାଟାର ପ୍ରକୃତ ସଂଜ୍ଞା ନିଶ୍ଚୟ ଚାଟାର୍ଜି । ଏସ୍. ଆଇ. ଙ୍କ ଅଫିସରୁ ଚାଟାର୍ଜି ଶବ୍ଦଟାର ଭୁଲ୍ ଇଂରାଜୀ ବନାନ୍ 'ଶ୍ରେଷ୍ଠରାୟ' ବୋଲି ଆସିଚି । ଅତଏବ ଆମେ ଏ ଭୁଲ୍

ସଂଶୋଧନ କରି ଗୃହାର୍ଜିକୁ ବଜାୟ ରଖିଲୁ । ତୁମେ ଏତକ ଜାଣିରଖ, ପୁରୁଣାଗଡ଼ ନ:ପ୍ରା: ବିଦ୍ୟାଳୟରୁ ଗୋପାଳ ପ୍ରସାଦ ଗୃହାର୍ଜୀ ବୋଲି ଗୋଟିଏ ବାଳକ ଏ ବର୍ଷ ବୃତ୍ତି ପାଇଛି । ତୁମେ ଏବେ ଯାଇପାର ।.... ଶିକ୍ଷକ ଅଶ୍ରୁଳ ନୟନରେ ଫେରିଆସିଲେ ।

ମୋର ଏଥିରେ ଯାଏ କେତେ ବା ଆସେ କେତେ । ମୁଁ ବୃତ୍ତି ପାଇଥିଲେ ଘରକୁ ଟଙ୍କା ଆସିଥା'ନ୍ତା । ଏବେ ସେ ଗୃହାର୍ଜି ଘରକୁ ଟଙ୍କା ଯିବ, ଯାଉ । ମୁଁ ମାତ୍ର ଜାଣିଥିଲି, ଆମର ଗୁଡ଼ଲକଣା ଘର ନୁହେଁ, ଆମର ଗୃହଟି ହାଲର ଗୃହ—ଥିଲାବାଲା ଘର । ମାସକୁ ବୃତ୍ତି ତିନିଟଙ୍କା ଆସିଲା ନାହିଁ ବୋଲି କାହାରି ମନରେ କିଛି ଚିନ୍ତା ନାହିଁ । ତେବେ ମୋ ମନରେ ଗୋଟିଏ ଦୁଃଖ ହୋଇଥିଲା । ଯେତେବେଳେ ଜଗତସିଂହପୁର ମଧ୍ୟଇଂରାଜୀ ବିଦ୍ୟାଳୟର ଚତୁର୍ଥ ଶ୍ରେଣୀ ପିଲାମାନଙ୍କର ନାମଲେଖା ଆରମ୍ଭ ହେଲା, ଯେତେବେଳେ ଅନ୍ୟ ଛାତ୍ରମାନଙ୍କର ମାସିକ ଦରମା ସେମାନେ ଜମାକଲେ, କିନ୍ତୁ ମୋ'ଠାରୁ ଆଦୌ ଦରମା ନିଆଗଲା ନାହିଁ । ମୁଁ ବୃତ୍ତି ପାଇଛି ବୋଲି ମୋ ଦରମା ଫ୍ରି କରି ଦିଆଗଲା । ଏ କେମିତି କଥା ? ଯିଏ ବୃତ୍ତି ପାଇଲା, ସେଇ ଟଙ୍କାରୁ ସିଏତ ଅତି ସୁବିଧାରେ ତାର ସ୍କୁଲ ଦରମା ଦେଇପାରିଥା'ନ୍ତା । ଅଥଚ ମୁଁ ଅଭାବଗ୍ରସ୍ତ ପରିବାରର ପିଲା ନ ହୋଇ ବି ମୋର ଦରମା ଛାଡ଼ କରିଦିଆଗଲା । ବାସ୍ତବରେ ଦରମା ଦାଖଲ ହେବା ଦିନର ସେ ଦୃଶ୍ୟ ମୋର ସେ ବୟସରେ ବି ମତେ ବାଧୁଥିଲା ।

## ସତାଇଶି ରୂପା ଟଙ୍କା

ଏପାଖରେ ସ.ଇ. ବାବୁ ମୁଁ କିପରି ଗୃହାର୍ଜି ବନ୍ଧନରୁ ମୁକ୍ତ ହେବି ଓ ମୋର ମାସିକ ବୃତ୍ତି ମୁଁ ପାଇବି, ସେଥିପାଇଁ ତାଙ୍କର ଆପ୍ରାଣ ଚେଷ୍ଟା ସେ ଚଳେଇଥା'ନ୍ତି । ଏ ପ୍ରକ୍ରିୟା ପାୟ ନ'ମାସ ପର୍ଯ୍ୟନ୍ତ ଚାଲିଲା । ନ'ମାସ ପରେ ମୁଁ ଗୃହାର୍ଜିରୁ ଶ୍ରେଷ୍ଠତ୍ୱକୁ ଫେରିଲି । ପିଲାଟି ତାଙ୍କ ଗୋଷ୍ଠୀରୁ ଖସିଗଲା ବୋଲି ଡି.ଆଇ. ଙ୍କ ଅଫିସ-କର୍ମଚାରୀଙ୍କ ମନ ନିଶ୍ଚୟ ଦବିଯାଇଥିବ । ମାସକୁ ବୃତ୍ତି ତିନିଟଙ୍କା ହିସାବରେ ନଅମାସର ସତେଇଶି ଟଙ୍କା ମୋ ହାତକୁ ଆସିଲା— ଗୋଟିକିଆ ରୁପାଟଙ୍କା—କଟକୀ ପାଏ ଓଜନ । ସେତେବେଳେ ତ ଆମ ବୟସର ପିଲାମାନଙ୍କ ପାଇଁ ଜାମାପଟାର ଆୟୋଜନ ହୋଇ ନ ଥିଲା । ଦେହରେ ଖଣ୍ଡିଏ ଚାଦର—ସେଇ ଚାଦର ଗଣ୍ଠି ଖୋଲି ଝନ୍ ଝନ୍ ସତେଇଶି ଟଙ୍କା ମୁଁ ଆମ ଦୁଆର ପିଣ୍ଡାରେ ନେଇ ଅଜାଡ଼ିଦେଲି । କଟକୀ ପାଏ ଓଜନର ଜିନିଷ, ତିନିମାଇଲ୍ ବାଟ ବୁହାଇ ଆଣିଥାଏ ବୋଲି ମୋ ଦେହରୁ ଝାଳ ବୋହି-

ଯାଉଥାଏ—ସେତେବେଳେ ମୋର ବୋଉ, ଆଈମା, ଖୁଡ଼ୀ ଓ ଭଉଣୀମାନେ ଟଙ୍କା ଉପରୁ ଆଖି ଫେରେଇନେଇ ସସ୍ନେହ ସଦୟ ଦୃଷ୍ଟିରେ ମତେ ଗୃହିଁ ରହୁଥା'ନ୍ତି ।

ଏ ପାଠ କିନ୍ତୁ ଏତିକରେ ଶେଷ ହେଲାନି । କଟକ ପି.ଏମ୍. ଏକାଡେମୀରୁ ମ୍ୟାଟ୍ରିକ୍ୟୁଲେସନ୍ ପରୀକ୍ଷା ଦେଲି । ସେତେବେଳକୁ ସେକେଣ୍ଡାରୀ ବୋର୍ଡ଼ ଗଠିତ ହୋଇ ନ ଥିଲା । ମ୍ୟାଟ୍ରିକ୍ୟୁଲେସନ୍ ପରୀକ୍ଷା ପରିଚାଳନା କରୁଥାନ୍ତି ପାଟନା ବିଶ୍ୱବିଦ୍ୟାଳୟ । ଓଡ଼ିଶାରେ ସେତେବେଳେ ବିଶ୍ୱବିଦ୍ୟାଳୟ ନ ଥାଏ । ପୂର୍ବବଙ୍ଗର ଢାକା ବିଶ୍ୱବିଦ୍ୟାଳୟକୁ ବାଦ୍ ଦେଲେ ଆମ ସମଗ୍ର ପୂର୍ବାଞ୍ଚଳରେ ଥାଏ ଦୁଇଟି ବିଶ୍ୱବିଦ୍ୟାଳୟ—କଲିକତା ଏବଂ ପାଟନା ବିଶ୍ୱବିଦ୍ୟାଳୟ । କଲିକତା ବିଶ୍ୱ-ବିଦ୍ୟାଳୟର ଭାଇସ ଚାନ୍ସେଲର ଥା'ନ୍ତି ସାର ଆଶୁତୋଷ ମୁଖାର୍ଜୀ—ପାଟନା ବିଶ୍ୱବିଦ୍ୟାଳୟର ଭାଇସ୍ ଚାନ୍ସେଲର ଥା'ନ୍ତି ସାର ସଚ୍ଚିଦାନନ୍ଦ ସିହ୍ନା । ଗୋଟିଏ କଥାରେ କୁହାଯାଇପାରେ, ଏ ଦୁହେଁ ଥିଲେ ବିଶ୍ୱବିଦ୍ୟାଳୟ ପରିଚାଳନା କ୍ଷେତ୍ରରେ ଦୁଇ ପୁରୁଷସିଂହ । ବିଶ୍ୱବିଦ୍ୟାଳୟ ପରିଚାଳନାରେ ଏ ଦୁଇ ବିଶ୍ୱ-ବିଦ୍ୟାଳୟ ଭିତରେ କିଛି ଧିକାମଲି ନ ଥିଲା । କିନ୍ତୁ ଗୋଟିଏ କ୍ଷେତ୍ରରେ ଏଇ କଲିକତା ଓ ପାଟଣା ମଧ୍ୟରେ ଥିଲା ଆକାଶ-ପାତାଳ ପ୍ରଭେଦ । ଏହା ହେଲା ପାଟଣା ବିଶ୍ୱବିଦ୍ୟାଳୟର ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ସଫଳତା ବା ପାଶ ହାର ସଂଖ୍ୟା ଥିଲା ଶତକଡ଼ା ତେତିଶ/ଚଉତିରିଶ, ଅଥଚ କଲିକତା ବିଶ୍ୱବିଦ୍ୟାଳୟର ମାଟ୍ରିକ୍ ପରୀକ୍ଷାର ଏଇ ପାସ ହାର ହେଲା ଶତକଡ଼ା ସତୁରି ପାଖାପାଖି । ଦେଖାଯାଇଛି, ପାଟଣା ବିଶ୍ୱବିଦ୍ୟାଳୟର ଜଣେ ମାଟ୍ରିକ୍ ପରୀକ୍ଷାର୍ଥୀ ବାରମ୍ବାର ପରୀକ୍ଷା ଦେଇ ମଧ୍ୟ ଅକୃତକାର୍ଯ୍ୟ ହୋଇଥିବାବେଳେ ସେଇ ପରୀକ୍ଷାର୍ଥୀଟି ମାତ୍ର ଗୋଟିଏ ଥର କଲିକତା ବିଶ୍ୱବିଦ୍ୟାଳୟରେ ପରୀକ୍ଷା ଦେଇ ଦ୍ୱିତୀୟ ଶ୍ରେଣୀରେ କୃତକାର୍ଯ୍ୟ ହୋଇପାରିଛି । କପିଳ ମହାନ୍ତି ବୋଲି ଜଣେ ଛାତ୍ର ପାଟଣା ବିଶ୍ୱ-ବିଦ୍ୟାଳୟରେ ସତରଥର ପରୀକ୍ଷା ଦେଇ ଫେଲ ହୋଇଥିଲା । କାହିଁକି ଏ ପାର୍ଥକ୍ୟ ? କୁହାଯାଉଥିଲା ଯେ ସେତେବେଳେ ଇଂରାଜୀ ଭାଷାର ନୂତନ ପ୍ରଚଳନ ଓ ଦେଶର ବହୁ ଅଞ୍ଚଳରେ କର୍ମନିଯୁକ୍ତିର ବହୁଳ ପ୍ରସାର ଯୋଗୁଁ କଲିକତା ବିଶ୍ୱବିଦ୍ୟାଳୟରୁ ବହୁସଂଖ୍ୟକ ମେଟ୍ରିକ୍ ପରୀକ୍ଷାର୍ଥୀଙ୍କୁ ପାସ୍ କରାଇ ଦିଆଯାଉଥିଲା, ଯେପରିକି ସେମାନେ ବିଭିନ୍ନ କମ୍ପାନୀ ଓ ଅନ୍ୟ କର୍ମନିଯୁକ୍ତି କ୍ଷେତ୍ରମାନଙ୍କରେ ସୁବିଧାରେ କିରାଣି ଚାକିରି ପାଇପାରିବେ । ଅନ୍ୟପକ୍ଷରେ ପାଟନା ବିଶ୍ୱବିଦ୍ୟାଳୟର କୁଳପତି ସାର୍ ସିହ୍ନା ଚାହୁଁଥିଲେ ଯେ, ପାଟନା ବିଶ୍ୱବିଦ୍ୟାଳୟରୁ ଯେଉଁ ପରୀକ୍ଷାର୍ଥୀଟି ମେଟ୍ରିକ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବ, ସେ ନିଶ୍ଚିତଭାବରେ ଜଣେ ଗ୍ରାଜୁଏଟ୍‌ର ଜ୍ଞାନ ଅର୍ଜନ କରିଥିବ । ଏଥିରେ ଅନ୍ୟ କେହି ଯାହା ମତପୋଷଣ

କରନ୍ତୁନା କାହିଁକି, ମୋ ନଜର ଅଭିଜ୍ଞତାରୁ ମୁଁ ଏହି ସତ୍ୟ ଘଟଣାଟିର ଏଠି ସମର୍ଥନ ନ କରି ରହିପାରୁ ନାହିଁ । ହଁ, କେବଳ ମେଟ୍ରିକ୍ ପରୀକ୍ଷା କ୍ଷେତ୍ରରେ ଏ ନୀତି ପ୍ରଚଳିତ ଥିଲା ।

ଯେଉଁ ବର୍ଷ ଆମେ ପାଟଣା ବିଶ୍ୱବିଦ୍ୟାଳୟର ପରୀକ୍ଷାର୍ଥୀଭାବେ ମେଟ୍ରିକ୍ ପରୀକ୍ଷା ଦେଇଥିଲୁ, ସେ ବର୍ଷ ହେଲା ୧୯୩୪ ମସିହା । ସେ ବର୍ଷ ପାଟଣା ସହର ସହ ସମସ୍ତ ବିହାରରେ ବହୁ ଅଞ୍ଚଳରେ ପ୍ରବଳ ଭୂମିକମ୍ପର ତାଣ୍ଡବଲୀଳା ସୃଷ୍ଟି ହୋଇଥିଲା । ଭୂମିକମ୍ପ ପାଇଁ ପରୀକ୍ଷା ଦୁଇମାସ ଘୁଞ୍ଚିଗଲା । ଦୁଇମାସ ପରେ ଯଥାରୀତି ପରୀକ୍ଷା ହେଲା—ଯଥା ସମୟରେ ପରୀକ୍ଷାଫଳ ପ୍ରକାଶିତ ହେଲା । ସେତେବେଳେ ସମସ୍ତ ବିଶ୍ୱବିଦ୍ୟାଳୟର ମେଟ୍ରିକ୍ ପରୀକ୍ଷାଫଳ ସମ୍ବାଦପତ୍ର-ମାନଙ୍କରେ ବିସ୍ତାରିତ ଭାବେ ପ୍ରକାଶିତ ହେଉଥାଏ ଓ ପରୀକ୍ଷା ଫଳ ଜାଣିବା ପାଇଁ ଏକ ବିଚିତ୍ର ନୀତି ଅନୁସୃତ ହେଉଥିଲା । ସମ୍ବାଦପତ୍ର ଅଫିସମାନଙ୍କରେ (ଏକମାତ୍ର ସମାଜ) ଯେତେ ନିପୁଣତାର ସହିତ କର୍ମ କଲେ ମଧ୍ୟ, ସନ୍ଧ୍ୟାପୂର୍ବରୁ ପରୀକ୍ଷାଫଳ ଜାଣିବା ସମ୍ଭବ ନୁହେଁ । ସେଥିପାଇଁ ପରୀକ୍ଷାର୍ଥୀମାନେ ଦୁଇପଇସା (ଗୋଟିଏ ସମ୍ବାଦପତ୍ରର ମୂଲ୍ୟ ହେଉଛି ଦୁଇପଇସା) ଓ ଖଣ୍ଡେ କାଗଜରେ ପରୀକ୍ଷାର୍ଥୀର ରୋଲ୍ ନମ୍ବର ଲେଖି ସମ୍ବାଦପତ୍ର କାଉଣ୍ଟରରେ ଦିନ ଦୁଇଟା ସୁଦ୍ଧା ଦାଖଲ କରୁଥିଲେ ଓ ପ୍ରାୟ ଏକଘଣ୍ଟା ପରେ ସେ କାଗଜ ଖଣ୍ଡିକରେ ସେଇ ପରୀକ୍ଷାର୍ଥୀଙ୍କ ପରୀକ୍ଷା ଫଳର ସୂଚନା ପାଇପାରୁଥିଲେ । ପରେ କାଗଜଖଣ୍ଡିକ ଫେରାଇଦେଲେ ସମ୍ପୂର୍ଣ୍ଣ ସମ୍ବାଦପତ୍ରଟି ତାଙ୍କୁ ମିଳୁଥିଲା ।

## ବିହାରୀ ପ୍ରସାଦ-ଓଡ଼ିଆ ପ୍ରସାଦ

ସମ୍ବାଦପତ୍ରରେ ପରୀକ୍ଷାରେ ପାସ୍ କରିଥିବା ପରୀକ୍ଷାର୍ଥୀମାନଙ୍କ ସହିତ ମୋର ନାମ ବାହାରିଛି । ପୂର୍ବରୁ ମୁଁ କହିଛି ମୋର ପୂର୍ଣ୍ଣ ନାମଟି ହେଲା ଗୋପାଳ ପ୍ରସାଦ ଶ୍ରୋତ୍ରିୟ । କିନ୍ତୁ ସମ୍ବାଦପତ୍ରରେ ମୋର ନାମ ବାହାରିଛି ଗୋପାଳ ଶ୍ରୋତ୍ରିୟ ପ୍ରସାଦ । ଇଏତ ଆଠବର୍ଷ ତଳର ସେଇ "ଶ୍ରୋତ୍ରିୟ—ଗୃଟାର୍ଜି" ପ୍ରହସନର ପୁନରଭିନୟ । କିଛି ବୁଝିପାରିଲିନି । ସ୍କୁଲ ଅଫିସ୍‌କୁ ଗଲି । ସେଠି ବି ସେଇ ଗୋଳିକ ଧନ୍ଦା । ଏତେ ଏତେ ପରୀକ୍ଷାର୍ଥୀଙ୍କ ନାମ ଠିକ୍ ଠିକ୍ ବାହାରିଛି— ମୋ ନାମର ଏ ବିଚିତ୍ର ବେଶ କାହିଁକି ? ସମସ୍ତେ କହିଚନ୍ତି, ନିଶ୍ଚେ ଗୋଟାଏ ଭୁଲ କେଉଁଠି ରହିଯାଇଛି । କିନ୍ତୁ ଭୁଲ୍‌ଟା କଲା କିଏ ? ସ୍କୁଲ ଅଫିସ୍ ? ସ୍କୁଲ କିରାଣି ଚଟାପଟ ଫାଇଲ୍ ଖୋଲିଲେ—ନା ସେଠି କିଛି ଭୁଲ୍ ନାହିଁ । ୟୁନିଭର୍‌ସିଟି ସାର୍ଟିଫିକେଟକୁ ଅପେକ୍ଷା କରିଗଲି । ସାର୍ଟିଫିକେଟ୍ ଆସିଲା । ସେଥିରେ ବି ସେଇ ଦୁର୍ଦ୍ଦଶା । ଚମତ୍କାର ବାଲିଗ୍ରାଫିକ୍ ଅକ୍ଷରରେ ସ୍ୱାକ୍ଷର

କରିଛନ୍ତି ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାର କମଲା ପ୍ରସାଦ । ମତେ କାନ୍ଦ ମାଡ଼ିଲା । ଭୂମିକମ୍ପ ଯୋଗୁଁ ପରୀକ୍ଷା ଫଳ ଡେରିରେ ବାହାରିଲା । କଲେଜ ଖୋଲିଗଲାଣି—ଏ ଭୁଲ୍ ସାର୍ଟିଫିକେଟ୍ ନେଇ ନାମ ଲେଖାଇବି କେମିତି ? ଏ ଘଟଣାରେ ହେଡ୍‌ମାଷ୍ଟର ଶ୍ରୀଯୁକ୍ତ ବସନ୍ତ କୁମାର ଦାସ ବ୍ୟସ୍ତ ବିବ୍ରତ ହୋଇପଡ଼ିଲେ । · · · ପ୍ରଧାନ ଶିକ୍ଷକ ବସନ୍ତ କୁମାର ଦାସ—ସାଧାରଣରେ ବସନ୍ତବାବୁ ନାମରେ ପରିଚିତ । ଓଡ଼ିଶା ଶିକ୍ଷା ମହାକାଶରେ ଏକ ସମୁଜ୍ଜ୍ୱଳ ତାରକା । ଯେତେବେଳେ ଗୁରୁଦିବସ ଉପଲକ୍ଷେ ଭାରତ ସରକାର କୃତୀ ଶିକ୍ଷକମାନଙ୍କୁ ସମ୍ମାନିତ କରିବାର ଯୋଜନା କଲେ, ଏହାର ପ୍ରଥମ ବର୍ଷରେ ହିଁ ସର୍ବଭାରତୀୟ ସ୍ତରରେ ବସନ୍ତବାବୁ ଓଡ଼ିଶାର ପ୍ରଥମ ଓ ଏକମାତ୍ର ହାଇସ୍କୁଲ-ଶିକ୍ଷକ ଭାବେ ଏ ସମ୍ମାନ ଲାଭ ପାଇଁ ମନୋନୀତ ହୋଇଥିଲେ । କିନ୍ତୁ ସେତେବେଳକୁ ତାଙ୍କର ଇହଲୀଳା ସାଙ୍ଗ ହୋଇଗଲାଣି । ସେଥିପାଇଁ ପ୍ୟାରୀମୋହନ ଏକାଡେମୀର ପ୍ରଧାନଶିକ୍ଷକ ପୁଣ୍ୟଶ୍ଳୋକ ବସନ୍ତ କୁମାର ଦାସ ମରଣୋତ୍ତର ସମ୍ମାନ ଓ ପୁରସ୍କାର ଲାଭ କଲେ ।

ବସନ୍ତବାବୁ ଅନୁଭବ କଲେ, ସାର୍ଟିଫିକେଟ୍‌ର ତୁରନ୍ତ ସଂଶୋଧନ ନ ହେଲେ ମୋର ଉଚ୍ଚଶିକ୍ଷା ଲାଭ ପଥରେ ପ୍ରତିବନ୍ଧକ ସୃଷ୍ଟି ହେବ । ଏଥିପାଇଁ ଡି.ପି.ଆଇ. ସ୍କୁଲ କର୍ତ୍ତୃପକ୍ଷଙ୍କୁ ଦାୟୀ କରିପାରନ୍ତି । ସେ ଆଉ ଅପେକ୍ଷା ନ କରି ଜଣେ ସ୍କୁଲ କର୍ମଚାରୀଙ୍କୁ ସମସ୍ତ କାଗଜପତ୍ର ଓ ଏହି ସାର୍ଟିଫିକେଟ ସହ ପାଟନା ପଠାଇଲେ ।

ପାଟନା ବିଶ୍ୱବିଦ୍ୟାଳୟ ଅଫିସରେ ଆମ ସ୍କୁଲ କର୍ମଚାରୀ ପହଞ୍ଚି ମୋ ନାମ ବିଭ୍ରାଟ ସଂକ୍ରାନ୍ତ ବିଷୟ ସେମାନଙ୍କୁ ଜଣାଇଲା ପରେ ସେମାନଙ୍କଠୁ ଯେଉଁ ଉତ୍ତର ପାଇଲେ, ସେଥିରେ ସେ ଏକାବେଳକେ ହତବାକ୍ ଓ ହତବୁଦ୍ଧି ହୋଇ ପଡ଼ିଲେ । ସେମାନେ ସ୍ପଷ୍ଟ ଗଳାରେ କହିଲେ ଯେ ପିଲାଟାର ପ୍ରକୃତ ନାମ ହେଉଛି 'ଗୋପାଳ ଚ୍ଛେଟରାୟ ପ୍ରସାଦ' । ଗୋପାଳ 'ପ୍ରଥମ' ନାମ 'ଚ୍ଛେଟରାୟ' ମଧ୍ୟମ ନାମ ଓ 'ପ୍ରସାଦ' ସଂଜ୍ଞା ବା ସର୍‌ନେମ୍ । ତମ ସ୍କୁଲ ଅଫିସ ଭୁଲ୍ ନାମ ପଠେଇଥିଲା । ଆମେ ସେ ଭୁଲ୍ ସଂଶୋଧନ କରି ସାର୍ଟିଫିକେଟ୍‌ରେ ଠିକ୍ ନାମ ଲେଖିଚୁ । ଆମର ଆଉ କିଛି କରିବାର ନାହିଁ ।

ସେମାନେ ଭୁଲ୍ ସଂଶୋଧନ ଆଳରେ ମୋ' ନାଁ ଶେଷରେ 'ପ୍ରସାଦ' ସଂଜ୍ଞାଟି ଯୋଡ଼ିବାର ପ୍ରକୃତ ସୂତ୍ର କ୍ରମେ ଉଦ୍‌ଘାଟିତ ହେଲା । ବିହାରରେ 'ପ୍ରସାଦ' ସଂଜ୍ଞାଟି ବହୁଳଭାବେ ପ୍ରୟୋଗ କରାହୁଏ । ସେଠି ଅସଂଖ୍ୟ ଅସଂଖ୍ୟ ଅଧିବାସୀଙ୍କ ସଂଜ୍ଞା ହେଉଚି 'ପ୍ରସାଦ' । ପୂଜ୍ୟନେତା ରାଜେନ୍ଦ୍ର ପ୍ରସାଦ ତ ଅଛନ୍ତି—ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାର ତ କମଳାପ୍ରସାଦ । କିଏ ଜାଣେ ସେଇ

ଅଫିସ୍ କର୍ମଚାରୀଙ୍କ ଭିତରୁ କେତେଜଣଙ୍କ ସଂଜ୍ଞା ହୋଇଥିବ ପ୍ରସାଦ ! ସେଥିପାଇଁ ହୁଏତ ସେମାନେ ମୋ' ନାମରେ ପ୍ରସାଦ ଶବ୍ଦଟିକୁ ଦେଖିଲାମାତ୍ରେ ସଙ୍ଗେ ସଙ୍ଗେ ଅସ୍ତ୍ରୋପଚାର କରି, ପ୍ରସାଦଟିକୁ ନାମର ମଧ୍ୟସ୍ଥଳରୁ କାଟିନେଇ ନାମ ଶେଷରେ ଯୋଡ଼ିଦେଲେ । ଫଳରେ ମୁଁ ଆଉ ଗୋପାଳ ପ୍ରସାଦ ଛୋଟରାୟ ନ ରହି ହୋଇଗଲି ଗୋପାଳ ଛୋଟରାୟ ପ୍ରସାଦ । ଆମ ସ୍କୁଲ କର୍ମଚାରୀଙ୍କୁ ଧନ୍ୟବାଦ । ସେ ତାଙ୍କର ସମସ୍ତ ପ୍ରମାଣପତ୍ର ସହ ନିଜର କଳବଳ କୌଶଳ ପ୍ରୟୋଗ କରି, ଜାହ୍ନବୀ-ତଟସ୍ଥ ଭାରତର ସର୍ବପୁରାତନ ନଗରୀ ପାଟଳିପୁତ୍ରରେ କିଛିଦିନ ଅତିବାହିତ କରି, ରେଜିଷ୍ଟ୍ରାର କମଳାପ୍ରସାଦଙ୍କ ସ୍ୱାକ୍ଷର ସମ୍ବଳିତ ମୋର ଶୁଦ୍ଧ ନାମରେ ସାର୍ଟିଫିକେଟ୍ ଖଣ୍ଡିକ ନେଇ କଟକ ଫେରିଲେ । ଏହାର କିଛିକାଳ ପରେ ମୋ' ନିଜପକ୍ଷରୁ ମୁଁ ମୋ' ନାମରୁ ପ୍ରସାଦ ଶବ୍ଦଟିକୁ ଉଠାଇ ଦେଇ ବର୍ତ୍ତମାନର ନାମ ବହନ କରିଆସୁଛି । ....ବ୍ରିଟିଶ୍ ରାଜତ୍ୱ ସମୟରେ ତତ୍‌କାଳୀନ ଓଡ଼ିଶା ପ୍ରଦେଶ କିଛିକାଳ ବଙ୍ଗଳା ସହିତ ଯୁକ୍ତ ହୋଇ ରହିଥିଲା । ତା'ପରେ ବଙ୍ଗଳାରୁ ବିଯୁକ୍ତ ହୋଇ ବିହାର ସହିତ ଯୁକ୍ତ ହେଲା । ଶେଷରେ ବିହାରରୁ ବିଯୁକ୍ତ ହୋଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା । ...ଆଜି ଏଇ ସବୁ ଅତୀତ କାହାଣୀର ସ୍ମୃତିଚାରଣରେ ମୋର ମନେହେଉଚି, ଓଡ଼ିଶା ପ୍ରଦେଶର ଏଇ ଯୁକ୍ତ-ବିଯୁକ୍ତ ଗାଣିତିକ ଛନ୍ଦରେ ମୁଁ ନିଜେ ଛନ୍ଦି ହୋଇ, ଛୋଟରାୟରୁ ଚାଟାର୍ଜିଙ୍କୁ ଯାଇ କିଛିଦିନ ବଙ୍ଗାଳୀ ହୋଇ ରହିଲି—ତା'ପରେ ଛୋଟରାୟ ପରିବର୍ତ୍ତେ ପ୍ରସାଦ ସାଂଜ୍ଞା ବହନ କରି କିଛିଦିନ ବିହାରୀ ହୋଇଗଲି—ଶେଷରେ ଉଣେଇଶିଶହ ଛତିଶ ଏପ୍ରିଲ୍ ପହିଲାରୁ ଅର୍ଥାତ୍ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବା ପରଠୁଁ ଶୁଦ୍ଧ ଓଡ଼ିଆଟିଏ ହୋଇ ରହିଚି ।

## ଅଳକାଶ୍ରମ, ନୀଳମଣି ପ୍ରଧାନ, ସମ୍ବାଦପତ୍ର ଓ ସମାଜ

ଉଣେଇଶି ଶହ ଛବିଶ ମସିହାର କଥା । ଓଡ଼ିଶାରେ ଭାରତୀୟ ଜାତୀୟ କଂଗ୍ରେସ ଆନ୍ଦୋଳନ କ୍ରମେ ବିସ୍ତୃତିଲାଭ କଲାଣି । ମୁଁ ସେତେବେଳେ ଜଗତସିଂହପୁର ମଧ୍ୟଇଂରାଜୀ ବିଦ୍ୟାଳୟର ଚତୁର୍ଥ ଶ୍ରେଣୀର ଛାତ୍ର । ଆମ ଗାଁ ପୁରୁଣାଗଡ଼ରୁ ଜଗତସିଂହପୁର ଚାଲିବାଟରେ ମାତ୍ର ଦେଢ଼ମାଇଲ୍ ବାଟ । ଆମ ଗ୍ରାମ ସୀମାନ୍ତବର୍ତ୍ତୀ ଅଳକାନଦୀ ପାରି ହେଲା ପରେ ନିକଟବର୍ତ୍ତୀ ଚୂଟଗ୍ରାମଠାରେ ଜମିଦାର ଶ୍ରୀଯୁକ୍ତ ଭଗୀରଥ ମହାପାତ୍ରଙ୍କର ଏକ ସୁଶୋଭିତ ଆମ୍ର ଉଦ୍ୟାନରେ କଂଗ୍ରେସର ସେଇ ବିଖ୍ୟାତ ଅଳକାଶ୍ରମ ସ୍ଥାପିତ ହୋଇଥାଏ । ଏହା ହେଉଛି ଓଡ଼ିଶା କଂଗ୍ରେସର ପ୍ରଥମ କର୍ମସ୍ଥଳୀ । ଆମେ ସ୍କୁଲକୁ ଯିବା ବାଟରେ ହିଁ ଅଳକାଶ୍ରମ ପଡ଼େ । ଯିବାବେଳେ ଏବଂ ଫେରିବାବେଳେ ଆମମାନଙ୍କର ପାଦ ଆପେ ଆପେ

ସେଠି ଅଟକଯାଏ । ପରିଷ୍କାର ପରିଚ୍ଛନ୍ନ ଏଲ୍ ଟାଇପ୍‌ର ସୁବିସ୍ତୃତ ଘରପର—ପ୍ରଚୁର ଝରକା ଓ କବାଟ । ଆଶ୍ରମ ଭିତରେ କେତେବେଳେ ଅରଟ ଓ ତାକୁଡ଼ିରେ ସୂତାକଟା ଚାଲିଥାଏ ତ କେତେବେଳେ ପ୍ରାର୍ଥନା ବା ଜାତୀୟ ସଙ୍ଗୀତ ଗାନ କରାଯାଉଥାଏ । ଏସବୁ ଦୃଶ୍ୟ ଆମ ଶିଶୁମାନଙ୍କ ମନରେ ଅତି ଗଭୀର ରେଖାପାତ କରିଥିବାର ସ୍ମୃତି ଏବେ ମଧ୍ୟ ମୋ' ମନରେ ଜାଗରୂକ ରହିଛି । ଏହି ଅଲକାଶ୍ରମରେ ହିଁ ମୁଁ ସେଇ ଚତୁର୍ଥ ଶ୍ରେଣୀ ଛାତ୍ର ଥିବା ଅବସ୍ଥାରୁ ଓଡ଼ିଶାର ବହୁ ଭୁଙ୍ଗ କଂଗ୍ରେସ ନେତାଙ୍କୁ ଦେଖିଥିଲି—ତାଙ୍କ ପରିଚୟ ଲଭର ସୌଭାଗ୍ୟ ପ୍ରାପ୍ତ ହୋଇଥିଲି । ଆମ ପଡ଼ୋଶୀ ଗ୍ରାମ ଗୃଡବରି ଉଦାରହୃଦୟ ପ୍ରଜାବତ୍ସଳ ଜମିଦାର ଦୁର୍ଗାଚରଣ ମହାପାତ୍ରଙ୍କ ପୁତ୍ର ଶ୍ରୀ ଭଗୀରଥି ମହାପାତ୍ର, ଡବ୍ଲ ଏମ. ଏ., ବି. ଏଲ୍—ଚାହିଁଥିଲେ ସେ ଖୁବ୍ ଉଚ୍ଚ ସରକାରୀ ଚାକିରିରେ ଅଧିଷ୍ଠିତ ହୋଇପାରିଥା'ନ୍ତେ, ନ ହେଲେ ବିଲାତ ଯାଇ ବାରିଷ୍ଟର ହୋଇ ଫେରିଥାନ୍ତେ । କିନ୍ତୁ ସେ କଂଗ୍ରେସରେ ଯୋଗଦେଲେ । ସେ ପୁଣି ବିବାହ କରିଥିଲେ ସେବେଳର ପ୍ରଥମଶ୍ରେଣୀ ଡେପୁଟି ମାଜିଷ୍ଟ୍ରେଟ ବାଳମୁକୁନ୍ଦ କାନୁନ୍‌ଗୋ'ଙ୍କ କନ୍ୟା ସରଳାଦେବୀଙ୍କୁ । ଅଭିଜାତ ଜମିଦାର ପରିବାରର ନୂତନ ବଧୂ ଅବସ୍ଥାରେ ହିଁ ସରଳାଦେବୀ କଂଗ୍ରେସରେ ଯୋଗଦେଲେ । ଅଭିଜାତ ଜମିଦା'ର ପରିବାରର ନୂତନ ବଧୂ ଅବସ୍ଥାରେ ହିଁ କାରାଗାର ଭିତରେ ତାଙ୍କର ପ୍ରଥମ ସନ୍ତାନ ଜନ୍ମ ହୋଇଥିଲା । ତା'ପରେ ସେଇ ଜଗତସିଂହପୁରର ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ—ଯିଏ ଅତି ଉଚ୍ଚ ସରକାରୀ ପଦବୀକୁ ତ୍ୟାଗକରି କଂଗ୍ରେସରେ ଯୋଗ ଦେଇଥାନ୍ତି । ପୁଣି ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ଜାତୀୟକବି ବୀରକିଶୋର ଦାସ ଓ ଓଡ଼ିଆଙ୍କ ପରି ପ୍ରତିଜ୍ଞାବଦ୍ଧ ଆଜୀବନ ନିଷ୍ଠାପର ନିଷ୍କଳଙ୍କ କଂଗ୍ରେସକର୍ମୀ ନୀଳମଣି ପ୍ରଧାନ । ପରବର୍ତ୍ତୀ କାଳରେ ଏହି ମହାନ୍ କଂଗ୍ରେସକର୍ମୀ ଓ ନେତାମାନଙ୍କର ଅତି ନିକଟ ସମ୍ପର୍କରେ ମୁଁ ଅବଶ୍ୟ ଆସିଛି । କିନ୍ତୁ ମୁଁ ଛାତ୍ର ଥିଲାବେଳେ ମୋର ସେଇ ପ୍ରାକ୍ କିଶୋର ଅବସ୍ଥାରୁ ହିଁ ଅଲକାଶ୍ରମ ପରିସର ଭିତରେ ସେମାନଙ୍କୁ ନିୟମିତ ଦେଖି, ତାଙ୍କ କଥା ଶୁଣି ଯେତେଦୂର ସମ୍ଭବ ସେମାନଙ୍କ ସମ୍ପର୍କରେ କିଛି କିଛି ଜ୍ଞାତବ୍ୟ ବିଷୟ ଜାଣି ମୋର ମାନସିକ ଚିନ୍ତା ଓ ଚେତନାରେ ଏପରି ଏକ ପ୍ରଭାବ ପଡ଼ିଥିଲା ଯେ, ପ୍ରାୟ ଦୁଇବର୍ଷ ଭିତରେ ମୁଁ ଯେତେବେଳେ ଷଷ୍ଠ ଶ୍ରେଣୀର ଛାତ୍ର, ସେତେବେଳେ ଜାତୀୟ କଂଗ୍ରେସର ରୂପରେଖ ଓ ଏହି ନେତୃବର୍ଗଙ୍କ କର୍ମ ଓ ତ୍ୟାଗର ଏକ ସ୍ପଷ୍ଟ ଧାରଣା ମୋ' ମନ ଭିତରେ ସୃଷ୍ଟି ହୋଇପାରିଥିଲା ।

ଆମ ଘରକୁ ଊନବିଂଶ ଶତାବ୍ଦୀରୁ ସମ୍ବାଦପତ୍ର "ଉତ୍କଳ ଦୀପିକା" ନିୟମିତ ଆସୁଥିଲା । "ଉତ୍କଳ ଦୀପିକା" ବନ୍ଦ ହେବା ପରେ ଆସିଲା "ସମାଜ" । ମୋର

ସାନ ଅଜା ସମ୍ବାଦପତ୍ରମାନଙ୍କର ଜଣେ ଭକ୍ତ ଓ ବିଦଗ୍ଧ ପାଠକ ଥିଲେ । ମୁଁ ପ୍ରାଇମେରି ସ୍କୁଲ ଛାତ୍ର ଥିଲାବେଳେ ସମାଜର ପୃଷ୍ଠାସବୁକୁ ନିରର୍ଥକ ଓଲଟାଉଥିଲି ମାତ୍ର । କିନ୍ତୁ ଯେତେବେଳେ ମୁଁ ଜଗତସିଂହପୁର ମଧ୍ୟଇଂରାଜୀ ବିଦ୍ୟାଳୟକୁ ପଢ଼ିବାକୁ ଗଲି ଓ ମାସ ମାସ ବର୍ଷ ବର୍ଷ ଧରି ଅଲକାଶ୍ରମର କର୍ମଙ୍ଗସ୍ଥାନ ଓ କଂଗ୍ରେସର ତୁଙ୍ଗ ନେତାମାନଙ୍କ ସମ୍ପର୍କରେ ମୋର ସମ୍ୟକ୍ ଧାରଣା ଓ ଜ୍ଞାନ ଆସିଲା, ସେତେବେଳେ ସମ୍ବାଦପତ୍ର "ସମାଜ" ପ୍ରତି ମୁଁ ଆପେ ଆପେ ଆକୃଷ୍ଟ ହୋଇଗଲି । ତା' ପରେ ମୁଁ ଷଷ୍ଠ ଶ୍ରେଣୀରେ ପଢ଼ିଲାବେଳକୁ ତତ୍କାଳୀନ ଓଡ଼ିଶାର ଗର୍ବ ସମ୍ବାଦପତ୍ର "ସମାଜ" ପରି ଗୋଟିଏ ଉଚ୍ଚମାନର ସମ୍ବାଦପତ୍ର ପଢ଼ି ସବୁ ତଥ୍ୟ ହୃଦୟଙ୍ଗମ କରିପାରୁଥିଲି । ମାନୁଚି, ଏହା ହୁଏତ ସମ୍ଭବ ହୋଇନପାରେ । କିନ୍ତୁ ମନେ ରଖିବାକୁ ହେବ ଯେ, ଆମେ ମାଇନର ପଢ଼ିଲାବେଳେ ଭକ୍ତକବି ମଧୁସୂଦନ ରାଓଙ୍କ ରଚିତ "ସାହିତ୍ୟ କୁସୁମ" ଓ "ସାହିତ୍ୟ ପ୍ରସଙ୍ଗ" ଭଳି ଅତି ଉଚ୍ଚମାନର ପୁସ୍ତକ ଆମ ପାଠ୍ୟକ୍ରମରେ ଥିଲା । ସେଥିରୁ ଗୋଟିଏ ଦୁଇଟି ବିଷୟର କିଛି ଅଂଶ ମୁଁ ଏଠି ଉଦ୍ଧାର କରୁଛି । ସାହିତ୍ୟ ପ୍ରସଙ୍ଗରେ ଭକ୍ତକବିଙ୍କ ରଚିତ ପ୍ରବନ୍ଧ "ହିମାଳୟ"ର ଏଇ ଅଂଶଟି ପାଠକମାନଙ୍କ ପାଇଁ ଉଦ୍ଧୃତ ହେଲା—"ଯେଉଁ ନଗାଧିରାଜ ହିମାଳୟର ବଚନା-ଭୂତ ମହିମା ବର୍ଣ୍ଣନା କରିବାକୁ ଯାଇ ବ୍ୟାସ, ବାଲ୍ମୀକି, କାଳିଦାସ ପ୍ରଭୃତି ମହାପୁରୁଷମାନଙ୍କର କଳ୍ପନା, ଧାରଣା ଓ ପ୍ରକାଶ-ଶକ୍ତି ପରାଜୟ ସ୍ୱୀକାର କରିଅଛି, ଯାହାର ଦିଗନ୍ତବ୍ୟାପୀ ମହାଗମ୍ଭୀର ମହାବିରାଟ ମହାବିସ୍ମୟକର ଦୃଶ୍ୟରାଜିର ଦର୍ଶନରେ ମାନବର ଚିନ୍ତାଧାରା ଅଭିଭୂତ ହୋଇପଡ଼େ, ସେଇ ପ୍ରକାଣ୍ଡ ହିମାଦ୍ରି ପ୍ରଦେଶର ଦିଗଦିଗନ୍ତର ପ୍ରସାରିତ ମହାସମୁଦ୍ର ସଦୃଶ ଦୃଶ୍ୟ-ରାଜିରେ କାହାର ମନ ସ୍ତବ୍ଧ ହେବ ନାହିଁ ! ··· ପୁଣି ଭକ୍ତକବିଙ୍କର ସେଇ ମହାନ୍ ଦାର୍ଶନିକ ଭାବାପନ୍ନ କବିତା "ଜୀବନ ଚିନ୍ତା"ର ଦୁଇଟି ପଙ୍କ୍ତି :

"ରେ ଆତ୍ମନ୍ ! ନିଦ୍ରା ପରିହରି
ଫେଡ଼ି ଚିନ୍ତାର ଲୋଚନ କର କର ନିରୀକ୍ଷଣ
କିଂଶବେ ଜୀବନସ୍ରୋତ ଧାଉଁଛି କପରି
ଭେଟିବାକୁ ମୃତ୍ୟୁ-ସିନ୍ଧୁ-କରାଳ-ଲହରୀ ।
ଜଗତର ଲୋଚନ ନନ୍ଦନ
ଯୁବତୀର ରକ୍ତାଧର ରମ୍ୟଜ୍ୟୋତି ନୟନର
ସ୍ୱର୍ଣ୍ଣ ଘନ ସମ ବକ୍ଷ, ସ୍ମିତ ଚାରୁ ପଦ୍ମାନନ
ଇନ୍ଦ୍ରଧନୁ ଶୋଭା ସମ ପଳାନ୍ତି ବହନ ।"

ଏଇ ସବୁ କବିତା ଓ ପ୍ରବନ୍ଧ ଆମର ଷଷ୍ଠ ଶ୍ରେଣୀରେ ଓଡ଼ିଆ ସାହିତ୍ୟର ପାଠ୍ୟକ୍ରମ ଥିଲା । ଆମେ ଷଷ୍ଠ ଶ୍ରେଣୀରେ ଏଇ ପାଠ ପଢ଼ି, ଓଡ଼ିଆ ସାହିତ୍ୟରେ ଅନର୍ସ ଓ ଡିସ୍‌ଟିଙ୍ଗ୍‌ସନ୍ ମାର୍କ ରଖି ସମ୍ମାନର ସହିତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଉଥିଲୁ । ମୋ ଜାଣିବାରେ ଗୋଟିଏ ବର୍ଷ ଆମ ଜଗତ୍‌ସିଂପୁର ମଧ୍ୟଇଂରାଜୀ ବିଦ୍ୟାଳୟର ଜଣେ ଛାତ୍ର ମାଇନର ଶେଷ ପରୀକ୍ଷାରେ ଓଡ଼ିଆ ସାହିତ୍ୟରେ ଏକଶହରୁ ଅଶୀ ନମ୍ବର ରଖି ସମଗ୍ର ଓଡ଼ିଶାରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିଥିଲା । ତା'ହେଲେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଲିଖିତ "ସମାଜ"ର ସରଳ ତରଳ ଯାଦୁକରୀ ଭାଷା ଯାହାକୁ ପଢ଼ି ଆମେ ଓଡ଼ିଆମାନେ ଓଡ଼ିଆ ଭାଷା ଶିକ୍ଷାକଲୁ, ତାକୁ କିଏ ହୃଦୟଙ୍ଗମ କରି ନପାରିବାର କୌଣସି ଯଥାର୍ଥତା ନଥିଲା ।··· 'ସମାଜ'ରେ ପଣ୍ଡିତ ଗୋପବନ୍ଧୁଙ୍କ ଲେଖା ସୂତ୍ରରୁ ମୋର ଦୃଷ୍ଟିପଥରେ ଆଜି ପ୍ରମାଣିତ ହେଉଛି ସମାଜର ପରବର୍ତ୍ତୀ କାଳରେ ତାଙ୍କର ଏକ ସମ୍ପାଦକୀୟ ଲେଖା । ଲେଖାଟିର ଶିରୋନାମ ଥିଲା····

**ସତ୍ୟ ହେଲେ ସାଙ୍ଘାତିକ**

"ସତ୍ୟ ହେଲେ ସାଙ୍ଘାତିକ" । ପ୍ରବଳ ବ୍ରିଟିଶ ରାଜତ୍ୱର ସମୟ । ଜଣେ ମହିଳା ପ୍ରତି ଜଣେ ପୋଲିସ କର୍ମଚାରୀର ବଳାତ୍କାର ଓ ପାଶବିକ ଅତ୍ୟାଚାରର ଅଭିଯୋଗର ପରିପ୍ରେକ୍ଷୀରେ 'ସମାଜ'ର ପ୍ରତିଷ୍ଠାତା ଓ ସୁଯୋଗ୍ୟ ସମ୍ପାଦକ ଶ୍ରୀଯୁକ୍ତ ଗୋପବନ୍ଧୁ ଦାସ ତାଙ୍କ ରଚିତ ଏ ଲେଖାଟିକୁ ପ୍ରକାଶ କରିଥିଲେ । ଲେଖାଟି ପାଠକ ଓ ଜନସମାଜ ଦ୍ୱାରା ବହୁଳ ଭାବେ ଆଲୋଚିତ ହେବା ସଙ୍ଗେ ବ୍ରିଟିଶ୍ ସରକାରଙ୍କ ବିଷ-ଦୃଷ୍ଟିରେ ପଡ଼ିଲା ଓ 'ସମାଜ' ସମ୍ପାଦକଙ୍କ ବିରୋଧରେ ଏକ ଗୁରୁତର ଅଭିଯୋଗ ଅଣାଯାଇ କଚେରୀରେ ମକଦ୍ଦମା ରୁଜୁ କରାଗଲା । ଏଇ ଘଟଣାଟି ଖୋରଧା ଅଞ୍ଚଳରେ ଘଟିଥିଲା । ସେଥିପାଇଁ ଖୋରଧାର ଏସ୍.ଡି.ଓ. ଙ୍କ ଅଦାଲତରେ ମକଦ୍ଦମାର ବିଚାର ଚାଲିଲା । ସେତେବେଳେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ଜଣେ ଭ୍ରାତା ଖୋରଧାର ଏସ୍.ଡି.ଓ. ଥିଲେ । ସମାଜ ସମ୍ପାଦକ ପଣ୍ଡିତ ଗୋପବନ୍ଧୁଙ୍କ ବିରୋଧରେ ମକଦ୍ଦମା—ଏ ଖବର ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ବିଦ୍ୟୁତ୍‌ବେଗରେ ଖେଳିଗଲା । ମକଦ୍ଦମା ତାରିଖ ଦିନ ଅଦାଲତ ଭିତରେ ଦେଖଣାହାରୀଙ୍କ ସଂଖ୍ୟା ଏପରି ଭାବରେ ବୃଦ୍ଧି ପାଇଲା ଯେ, ଅଦାଲତ ବାହାରେ ମକଦ୍ଦମାର ବିଚାର ଚାଲିଲା । ଯେଉଁଦିନ ମକଦ୍ଦମାର ରାୟ ପ୍ରକାଶ ପାଇବାର କଥା, ସେଦିନ ଦର୍ଶକମାନଙ୍କର ସଂଖ୍ୟା କଳନା କଲାବେଳେ "ମୁଣ୍ଡ ଉପରେ ଥାଳି ମାରିଲେ ଗଳିଯିବ" ବୋଲି କୁହାଯାଉଥିଲା । ଯଥା ସମୟରେ ଏହି ଐତିହାସିକ ରାୟ ପ୍ରକାଶ ପାଇଲା ଓ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ନିର୍ଦ୍ଦୋଷରେ ଏ ଅଭିଯୋଗରୁ ମୁକ୍ତ ହେଲେ ।··· ଏଇ

ସମ୍ପର୍କରେ ଆଉ ଏକ ପ୍ରସଙ୍ଗର ଉଲ୍ଲେଖ ମୁଁ ଏଠି କରୁଛି—ମୁଁ ତ ପୂର୍ବରୁ କହିଚି, "ସମାଜ"ର ଜନ୍ମଠାରୁ ଆମ ପରିବାରକୁ "ସମାଜ" ଆସିଛି । ମୋର ସୌଭାଗ୍ୟ, ଆମ ଘରେ ପୁରୁଣା "ସମାଜ" ଗଦାଭିତରୁ 'ସମାଜ' ଖୋଲେଇଲାବେଳେ ଏଇ 'ସତ୍ୟ ହେଲେ ସାଙ୍ଘାତିକ' ଲେଖାଟି ପଢ଼ିବାର ସୌଭାଗ୍ୟ ଲାଭ କରିଥିଲି । ଅବଶ୍ୟ ଜନଶ୍ରୁତିରୁ ପୂର୍ବରୁ ଏଇ ଐତିହାସିକ ଲେଖା "ସତ୍ୟ ହେଲେ ସାଙ୍ଘାତିକ" ଘଟଣା ବିଷୟରେ କିଛି ଜାଣିବାକୁ ପାଇଥିଲି । ଲେଖାଟି ପଢ଼ିସାରିଲା ପରେ ମୁଁ ଜାଣିଲି, ଏପରି ଏକ ସମ୍ବେଦନଶୀଳ, ଅଡ଼ୁଆ ଓ ଅପ୍ରୀତିକର ଏମ୍ଯାଗ୍ରିସିଙ୍ଗ୍ ଘଟଣା ଉପରେ ଲେଖନୀ ଚାଳନା କରି ପୂଜ୍ୟ ଗୋପବନ୍ଧୁ ତାଙ୍କ ଲେଖାରେ ଅଶ୍ଳୀଳତା ପ୍ରୟୋଗ ତ ଦୂରରକଥା, କେଉଁଠି ଟିକେ ଉଗ୍ରବାଦୀ ବି ହୋଇ ନାହାଁନ୍ତି । କେବଳ ନିଜର ସୁଚିନ୍ତିତ ଯୁକ୍ତିପୂର୍ଣ୍ଣ ଉପସ୍ଥାପନା ପାଇଁ ସେ ଏ ମକଦ୍ଦମାରେ ଜୟଲାଭ କରିଥିଲେ । ଅଥଚ ଏ ଘଟଣାର ବହୁ ବହୁ ବର୍ଷ ପରେ ଏକ ସମ୍ବାଦପତ୍ରରେ ଏହିପରି ଜଣେ ଧର୍ଷିତା ଯୁବତୀର କାହାଣୀ ବର୍ଣ୍ଣନା କରିବାକୁ ଯାଇ ଅଶ୍ଳୀଳ ଭାଷା ପ୍ରୟୋଗ ସହ ଯୁବତୀଟିର ନଗ୍ନ ଶରୀରର ନିର୍ଯ୍ୟାତିତ ଅଙ୍ଗ-ରେଖାମାନଙ୍କର ବିଭିନ୍ନ ଆଲୋକଚିତ୍ର ପ୍ରକାଶିତ ହୋଇଥିଲା । ଏଇ ସଚିତ୍ର ଲେଖାଟି ପଢ଼ି ମୋ ମନରେ ଏଇ ପ୍ରଶ୍ନ ଉଠିଲା ଯେ, ଏପରି ଏକ ବୀଭତ୍ସ ଲେଖା ପାଠକ-ମାନଙ୍କ ମନରେ କ'ଣ ଯୌନକାମନା ଉଦ୍ରେକ କରିବା ପାଇଁ ପ୍ରକାଶିତ ହୋଇଚି ! ଅଥଚ ଏଇ ଶ୍ରେଣୀର ଏକ ଘଟଣା ଉପରେ ବୋଧହୁଏ ଓଡ଼ିଆ ସମ୍ବାଦପତ୍ରରେ ପ୍ରକାଶିତ ପ୍ରଥମ ଲେଖା "ସତ୍ୟ ହେଲେ ସାଙ୍ଘାତିକ" ବହୁଦିନ ତଳେ ପଢ଼ି ଏପର୍ଯ୍ୟନ୍ତ ସେ ରଚନାର ସୁସ୍ଥ ସାମ୍ବାଦିକତାକୁ ଭୁଲି ହୋଇନି । ···
ମୋର ସେଇ କିଶୋର ଅବସ୍ଥାରେ "ସମାଜ" ପଢ଼ି ସବୁଠୁ ଏଇ ବଡ଼ କଥାଟି ଜାଣିପାରିଲି ଯେ, ଶ୍ରୀ ଗୋପବନ୍ଧୁ ଦାସ ହେଉଛନ୍ତି "ସମାଜର" ସମ୍ପାଦକ । ଏହା ହେଲା ଉଣେଇଶିଶହ ଅଠେଇଶି ମସିହାର କଥା । ସେତେବେଳେ ମୋ ମନରେ ଏଇ ପ୍ରଶ୍ନଟି ଉଠିଲା ଯେ, ଗୋପବନ୍ଧୁ ତ ଓଡ଼ିଶାକୁ କଂଗ୍ରେସକୁ ଆଣିଛନ୍ତି—କାଠଯୋଡ଼ି ନଈ ବାଲିରେ ଗାନ୍ଧିଜୀଙ୍କ ପ୍ରଥମ କଂଗ୍ରେସ ସଭାର ଫଟୋଚିତ୍ର "ସମାଜ"ରେ ବାହାରିଚି—ଚିତ୍ରରେ ଗାନ୍ଧିଜୀ ଗୋଟିଏ କାଠ-ଚଉତରା ଉପରେ ଗୋଟିଏ ଚୌକିରେ ବସି ବକ୍ତୃତା ଦେଉଛନ୍ତି, ଅଦୂରରେ କସ୍ତୁରୀବା ବସିଚନ୍ତି, ଗାନ୍ଧିଜୀଙ୍କ ପାଖରେ ସେବେଳର ତରୁଣ ଯୁବନେତା ରାଜକୃଷ୍ଣ ବୋଷ ଠିଆହୋଇ ଗାନ୍ଧିଜୀଙ୍କର ହିନ୍ଦୀ ଭାଷଣର ଓଡ଼ିଆ ଅନୁବାଦ କରି ସଭାସ୍ଥ ଲୋକ-ମାନଙ୍କୁ ଶୁଣାଉଚନ୍ତି । ସଭାମଞ୍ଚର ଅଗ୍ରଭାଗରେ ବସିଛନ୍ତି ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ । ଏଇ ଐତିହାସିକ ଚିତ୍ରଟି ସେତେବେଳେ ସମାଜରେ ଦେଖି ଆଜିପର୍ଯ୍ୟନ୍ତ ମୋ ହୃଦୟ-ପଟ୍ଟରେ ତାହା ଲିଖିରହିଛି । ସେତେବେଳେ ମୋ

ମନରେ ଏଇ ଗୋଟିଏ ପ୍ରଶ୍ନ ଉଠିଲା ଯେ, ଗୋପବନ୍ଧୁ ତ ଓଡ଼ିଶାକୁ କଂଗ୍ରେସକୁ ଆଣିଛନ୍ତି—ଓଡ଼ିଶା ପାଇଁ ଏତେ କାମ କରୁଛନ୍ତି—ପାଟନାରୁ ଗ୍ଲେଟଲାଟଙ୍କୁ ଅଣାଇ ଓଡ଼ିଶାର ବଢ଼ି, ମରୁଡ଼ିରେ ଦରମଲା ଲୋକଙ୍କୁ ଦେଖାଇଛନ୍ତି । କଂଗ୍ରେସର ବଡ଼ ନେତା ସେ । ମୁଁ କଂଗ୍ରେସର ଏତେ ଏତେ ନେତାଙ୍କୁ ଦେଖିଲି, ତାଙ୍କୁ ତ ଥରେ ଦେଖିପାରିଲି ନାହିଁ । ସେ ପୁଣି ସତ୍ୟବାଦୀରେ ଆଶ୍ରମ ଓ ବିଦ୍ୟାଳୟ ବସାଇଛନ୍ତି । ପୁଣି ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ ଓ ହରିହର—ଏଇ ପଞ୍ଚସଖା ସେଦିନ ଜ୍ୟୋତ୍ସ୍ନାପ୍ଲୁତ ରଜନୀରେ ଭାର୍ଗବୀ ନଦୀକୂଳରେ ପ୍ରତିଜ୍ଞା କରିଥିଲେ ସେମାନେ ସରକାରୀ ଚାକିରି କରିବେ ନାହିଁ ଓ ଆଜୀବନ ଦେଶ-ସେବାରେ ନିଜକୁ ନିୟୋଜିତ କରିବେ । ଏକଥା ସ୍ମରଣ କରି ଦେଶର ଯେ କେହି ନାଗରିକ ଆନନ୍ଦ ଓ ଗର୍ବରେ ଅନୁଭବ କରିବ ଯେ, ଏଇ ପଞ୍ଚସଖା ଆଜୀବନ ଅକ୍ଷରେ ଅକ୍ଷରେ ତାଙ୍କର ପ୍ରତିଜ୍ଞାକୁ ପାଳନ କରିଯାଇଚନ୍ତି । ··ସେଇ ଷଷ୍ଠ ଶ୍ରେଣୀର ଛାତ୍ର ଥିଲାବେଳେ ଥରେ ମୋ ମନରେ ପୁଣି ଏଇ ପ୍ରଶ୍ନ ଉଠିଲା ଯେ, ଆମ ଜଗତ୍‌ସିଂହପୁର ଅଲକାଶ୍ରମରେ ମୁଁ ତ କଂଗ୍ରେସର ଅନେକ-ଅନେକ ନେତାଙ୍କୁ ଦେଖୁଚି, କିନ୍ତୁ ଉତ୍କଳମଣିଙ୍କୁ ତ କାହିଁକି ଦେଖୁ ନାହିଁ ! ସେ କ'ଣ ଏଠିକି ଆସୁ-ନାହାନ୍ତି ? କିନ୍ତୁ କାହାକୁ ଏକଥା ପଚାରିବି ? ଏତିକିବେଳେ ଆମ ଗାଁ ବାଟରେ ଥିବା ପୋଷ୍ଟମ୍ୟାନ୍ ମୋ ହାତକୁ ଖଣ୍ଡିଏ ପୋଷ୍ଟକାର୍ଡ଼ ଚିଠି ବଢ଼େଇଦେଲା । ଚିଠିଟି ଇଂରାଜୀରେ ଲେଖା, ବିହାର ଖରସୁଆଁରୁ ଆମ ଗାଁର ଜଣେ ଲୋକ ପାଖକୁ ଆସିଚି । ମଧ୍ୟଇଂରାଜୀ ବିଦ୍ୟାଳୟର ଷଷ୍ଠ ଶ୍ରେଣୀର ଛାତ୍ର ମୁଁ—ଇଂରାଜୀ ଚିଠି ପଢ଼ି ଯାହା ବୁଝିଲି, ସେଥିରୁ ଜାଣିଲି ସେଇ ଲୋକଟି ଖରସୁଆଁରେ ସେଟଲ୍‌ମେଣ୍ଟରେ ଚାକିରି କରେ । ଅନେକ ଦିନ ହେଲାଣି ଛୁଟିରେ ଗାଁକୁ ଆସିଚି । ନିହାତି ଅକର୍ମା ଅଳସୁଆ ଲୋକ । ଖରସୁଆଁ ଫେରିବାର ନାଁ ଧରୁନି । ସେମାନଙ୍କୁ ଜଣେଇଦେଇଚି ଆମ ଗ୍ରାମରୁ କଟକ ଅନେକ ବାଟ (ପ୍ରକୃତରେ ମାତ୍ର ୩୦ ମାଇଲ୍) ସେଠୁ ଚାଲି ଚାଲି ଯାଇ କଟକରେ ଟ୍ରେନ୍ ଧରିବା ତା ପକ୍ଷରେ ସମ୍ଭବ ନୁହେଁ । ଏହାର ଉତ୍ତରରେ ସେଟଲ୍‌ମେଣ୍ଟ ଅଫିସରୁ ଏ ଚିଠି ଆସିଚି । ଚିଠିରେ ଇଂରାଜୀରେ ଲେଖାଅଛି, ଜଗତ୍‌ସିଂହପୁରରୁ କଟକ ପର୍ଯ୍ୟନ୍ତ ଏବେ ଲରି ସର୍ଭିସ୍ ଚାଲିଲାଣି—ଅତଏବ ତମର ଆସିବାରେ କିଛି ଅସୁବିଧା ହେବ ନାହିଁ । ତମେ ଚଞ୍ଚଳ ଆସ । ····ଚିଠିରୁ ମୁଁ ସବୁ ବୁଝିଲି—କିନ୍ତୁ ଲରି ଅର୍ଥ ବୁଝିପାରିଲି ନାହିଁ । ଦେଖିଲି ଅଲକାଶ୍ରମ ବାରଣ୍ଡାରେ ଶ୍ରୀଯୁକ୍ତ ନୀଳମଣି ପ୍ରଧାନ ବସିଚନ୍ତି । ସାହସ କରି ତାଙ୍କୁ ଚିଠି ଦେଖାଇ ଲରି ଅର୍ଥ କ'ଣ ପଚାରିଲି । ସେ ମୃଦୁ ହସ ହସି କହିଲେ—ଲରି ଅର୍ଥ ହେଉଚି ଗୋଟିଏ ପ୍ରକାର ମଟରଗାଡ଼ି ଯାହା ଚାରିପାଖରେ କୌଣସି

ବାଡ଼ା ନାହିଁ ।····ତାଙ୍କୁ ବିନମ୍ର ପ୍ରଣାମ ଜଣାଇ ତାଙ୍କଠାରୁ ବିଦାୟ ନେଇ ଆସିଲି । ପାଦେ ଦି ପାଦ ଆସିଚି କି ନାହିଁ, ଗୋପବନ୍ଧୁଙ୍କ ଅଲକାଶ୍ରମକୁ ଆସିବା କଥା ପୁଣି ମନରେ ଜାଗିଲା । କିଞ୍ଚିତ୍ ଭୟମିଶ୍ରିତ ଚିତ୍ତରେ ନୀଳମଣି ବାବୁଙ୍କ ନିକଟକୁ ଫେରିଲି । ମତେ ଦେଖି ପଚାରିଲେ—କ'ଣ ପୁଣି ହେଲା ?···କିଛିଟା ସାହସ ସଞ୍ଚୟ କରି କହିଲି—ପଣ୍ଡିତ ଗୋପବନ୍ଧୁ ଦାସ କ'ଣ ଆମର ଏ ଅଲକାଶ୍ରମକୁ କେବେ ଆସୁନାହାନ୍ତି ?··ଗୋଟିଏ କିଶୋର ବାଳକ ମୁହଁରୁ ଏ କଥା ଶୁଣି ଓ ତାଳୁରୁ ତଳିପା ପର୍ଯ୍ୟନ୍ତ ମତେ ଚାହିଁ ପଚାରିଲେ—କାହିଁକି ତୁମେ ଏକଥା ପଚାରୁଚ ?····ଟିକେ ଦବିଯାଇ ଉତ୍ତର ଦେଲି—ତାଙ୍କୁ କେବେ ଦେଖିନାହିଁତ, ସେଇଥିପାଇଁ ଆପଣଙ୍କୁ ପଚାରିଲି ।···ଦେଖିଲି, ମୋ କଥାରେ ଯେମିତି ତାଙ୍କ ମୁହଁରେ ପୂର୍ବପରି ହସ ଫୁଟିଉଠିଲା । ସେମିତି ହସ ହସ ମୁହଁରେ ତାଙ୍କଠାରୁ ଉତ୍ତର ପାଇଲି— ହଁ, ସେ ଏଠିକି ଆସିଚନ୍ତି, ତୁମେ ହୁଏତ ତାଙ୍କୁ ଦେଖିପାରିନ । ତେବେ ତୁମେ ଯଦି କଟକ ଯିବ, ତାଙ୍କ ଦେଖା ପାଇବ ।····ତାଙ୍କର ଏଇ କେଇପଦ ମଧୁର କଥା ମତେ ଭଲ ଲାଗିଲା ।···· ଏଇ ନୀଳମଣି ପ୍ରଧାନ । ମୁଁ ସ୍କୁଲକୁ ଯିବା ଆସିବାବେଳେ ଲକ୍ଷ୍ୟ କରିଚି, ଅଲକାଶ୍ରମରେ ଦିନେ ଦିନେ ଲୋକ ଭର୍ତ୍ତି ହୋଇଚନ୍ତିତ ବେଳେ-ବେଳେ ମାତ୍ର କିଛି ଲୋକ ଅଛନ୍ତି । ମାତ୍ର ପ୍ରତ୍ୟେକଦିନ ଦେଖେ ଜଣେ ଲୋକ ନିର୍ଦ୍ଦିଷ୍ଟଭାବେ ଉପସ୍ଥିତ ରହିଚନ୍ତି । ଜାଣିଲି, ଉଜ୍ଜ୍ୱଳ ଶ୍ୟାମବର୍ଣ୍ଣ, ନାତିଦୀର୍ଘ— ଶୁଭ୍ର-ଖଦଡ଼ ପରିହିତ ପ୍ରାୟ ତିରିଶିବର୍ଷ ବୟସ୍କ ସେ ବ୍ୟକ୍ତି ହେଉଚନ୍ତି ଶ୍ରୀଯୁକ୍ତ ନୀଳମଣି ପ୍ରଧାନ । ନିଆଲୀ ବାହିରଣା ନିବାସୀ ସତ୍ୟବାଦୀ ବକୁଳବନରୁ ଶିକ୍ଷାପ୍ରାପ୍ତ ଶ୍ରୀଯୁକ୍ତ ପ୍ରଧାନଙ୍କୁ ମୁଁ କେବେହେଲେ ଆଶ୍ରମରେ ଅନୁପସ୍ଥିତ ଦେଖିନି । ବେଳେ ବେଳେ କିଛି ଲେଖା ପଢ଼ା କରୁଥାନ୍ତି—ନଚେତ୍ ଅରଟରେ ସୂତା କାଟୁଥା'ନ୍ତି— ନ ହେଲେ ସ୍ୱହସ୍ତରେ ଆଶ୍ରମପ୍ରାଙ୍ଗଣ ଝାଡ଼ୁଦ୍ୱାରା ସଫା କରୁଥା'ନ୍ତି । ମୁଁ ଘରକୁ ଫେରିଲି । ଶ୍ରୀଯୁକ୍ତ ପ୍ରଧାନ ମତେ କହିଚନ୍ତି—ମୁଁ କଟକ ଗଲେ ଗୋପବନ୍ଧୁଙ୍କୁ ଭେଟିପାରିବି । କିନ୍ତୁ କଟକ କିଏ, ମୁଁ କିଏ ! ମାତ୍ର ଷଷ୍ଠ ଶ୍ରେଣୀର ଛାତ୍ର ମୁଁ । ମୁଁ କେବେ କଟକ ଯିବି ନା ତାଙ୍କୁ ଦେଖିବି ! କିନ୍ତୁ ନା, କଟକ ଯିବାର ସୁଯୋଗ ଆସିଗଲା । ମୋର ଗୋଟିଏ ଭଉଣୀର ବିବାହ ଉପଲକ୍ଷେ କିଛି ଜିନିଷପତ୍ର ଆଣିବା ପାଇଁ ବାପା କଟକ ବାହାରିଲେ । ଆମର ଥିଲା ଏକ ସ୍ୱଚ୍ଛଳ ପରିବାର । ମୁଁ ସେପର୍ଯ୍ୟନ୍ତ କଟକ କେବେ ଯାଇନି । ମତେ କଟକ ଦେଖାଇବା ପାଇଁ ବାପା ସାଥିରେ ନେଇ କଟକ ଆସିଲେ । କଟକ ଆସିଲେ ମୁଁ ଉତ୍କଳମଣିଙ୍କୁ ଦେଖିପାରିବି । ମୁଁ ଆଜି ଏଠି ଠିକ୍ ବର୍ଣ୍ଣନା କରିପାରୁ ନାହିଁ ଯେ, ସେଦିନ ମୁଁ କଟକ ଆସିବାର ସୁଯୋଗ ପାଇଲି ବୋଲି ମନ ଭିତରେ କି ବିପୁଳ ଆଶା ଓ ଉଲ୍ଲାସ ନେଇ ମୁଁ ବାପାଙ୍କ ସାଥିରେ କଟକ ଯାତ୍ରା କରିଥିଲି । ବିବାହ ଜିନିଷପତ୍ର

କଣା ଶେଷ ହେଲା । ମୋ ପାଇଁ ଜୋତା କଣାହବ ବୋଲି ଆମେ ବାଲୁବଜାର ଖ୍ରୀମବାବୁଙ୍କ ଦୋକାନକୁ ଆସିଲୁ । ଦେଖିଲି, ଖ୍ରୀମବାବୁ ସମ୍ପୂର୍ଣ୍ଣ ଖଦଡ଼ ଲୁଗା ପିନ୍ଧିଚନ୍ତି । ବୁଝିପାରିଲି, ସେ ନିଶ୍ଚୟ କଂଗ୍ରେସର ଲୋକ । ତାଙ୍କୁ ପଚାରିଲି, ମୁଁ କୋଉଠି ଗୋପବନ୍ଧୁ ଦାସଙ୍କୁ ଭେଟିବି ?....ସେ ବାଟ ବତେଇଦେଲେ । ଦୋକାନରୁ ଓହ୍ଲାଇ ବାପା ତାଙ୍କ ପକେଟରୁ ଘଣ୍ଟା କାଢ଼ି କହିଲେ—ନାଇଁରେ ବାପା, ଆଜି ଆଉ ବେଳ ନାହିଁ । ତେଣେ ମଟର ଛାଡ଼ିଦେବ । ଆଜି ସନ୍ଧ୍ୟା ପୂର୍ବରୁ ଘରେ ନ ପହଞ୍ଚିଲେ ତୋ ଅପା ଘରକୁ "ସ୍ୱୀକାର" ଯାଇପାରିବ ନାହିଁ । ଆମେ ଆଉ ସ୍ୱରାଜ ଆଶ୍ରମ ନ ଯାଇ ଘରକୁ ଫେରିଲୁ । ବିବାହ କର୍ମ ଶେଷ ହେଲା । ବାପାଙ୍କର ଦେହ ଭଲ ନ ଥାଏ । ମୁଣ୍ଡ ଭିତରେ ବେଳେ ବେଳେ ଯନ୍ତ୍ରଣା ହେଉଥାଏ ବୋଲି କହୁଥା'ନ୍ତି । ତା'ପରେ ହଠାତ୍ ସେଦିନ ଊଣେଇଶିଶହ ଅଠେଇଶି ମସିହା ବୈଶାଖ ଶୁକ୍ଲା ଏକାଦଶୀ ତିଥିରେ ବାଉନ ବର୍ଷ ବୟସରେ ବାପା ଚିରଦିନ ପାଇଁ ଆମମାନଙ୍କୁ ଛାଡ଼ି ଚାଲିଗଲେ । ବାପା କେବଳ ପରିବା'ରର କର୍ତ୍ତା ନ ଥିଲେ. ଥିଲେ ହର୍ତ୍ତାକର୍ତ୍ତା ବିଧାତା । ବାପା ଚାଲିଗଲା ପରେ ମୋ ବ୍ୟତୀତ ଆଉ କେହି ଦ୍ୱିତୀୟ ବ୍ୟକ୍ତି ଆମ ପରିବାରରେ ନାହିଁ, ଯିଏ ଏ ପରିବାରର ଦାୟିତ୍ୱ ବହନ କରିପାରିବ । ଆମେ କାନ୍ଦୁଥାଉ । ମୃତ ବ୍ୟକ୍ତିଙ୍କ ପାଇଁ ଶୋକ କରିବାତ ସ୍ୱାଭାବିକ । କିନ୍ତୁ ଆମେ ସର୍ବସ୍ୱ ହରାଇଲା ପରି ଯେମିତି ଆକୁଳ ବିକଳ ଅବସ୍ଥାରେ କାନ୍ଦୁଥାଉ, ଭାଙ୍ଗିପଡ଼ୁଥାଉ, ସେଥିରୁ ମୁଁ ବାପାଙ୍କର ୧୨/୧୩ ବର୍ଷର ପୁଅ, ଠିକ୍ ଜାଣିପାରୁଥିଲି ଯେ ତାଙ୍କ ଅନ୍ତେ ଆମକୁ କୂଳରେ ଲଗେଇବା ପାଇଁ ଆଉ କେହି ନାହାନ୍ତି । ଆମେ ସତରେ ଅନାଥ ହେଇଗଲୁ । ବାପା ଆମକୁ ଅକୂଳରେ ଭସାଇ ଦେଇ ଚାଲିଗଲେ ।

**ଉତ୍କଳମଣିଙ୍କ ତିରୋଧାନ**

ଗ୍ରୀଷ୍ମ ଛୁଟି ସମାପ୍ତ ହେଲା । ପୁଣି ଜଗତ୍‌ସିଂହପୁର ପଢ଼ିବାକୁ ଗଲି । ଦିନ ଗଡ଼ିଯାଉଚି । ସେତେବେଳକୁ ବାପାଙ୍କର ସ୍ୱର୍ଗବାସ ଦୁଇମାସ ହେଇଗଲାଣି । ମୋ ମୁଣ୍ଡରେ ଭଲଭାବରେ ବାଳ ଉଠି ନ ଥାଏ—ଘରୁ ଶୋକର ଛାୟା ସମ୍ପୂର୍ଣ୍ଣ ଅପସରି ଯାଇ ନ ଥାଏ । ରଥଯାତ୍ରା ସମୟ । 'ସମାଜ' ଆସିଲା । ମୁଁ ଆମ ଅଗଣାରେ ଠିଆହେଇ ସମାଜ ଖୋଲିଲି । ପଢ଼ିବାକୁ ଆରମ୍ଭ କଲି ।....ହେ ଭଗବାନ୍ ! ମୋ ଆଖି ସାମ୍‌ନାରେ 'ସମାଜ' ପୃଷ୍ଠାରେ ଏ କଣ ମୁଁ ଦେଖୁଚି ! ମୋ ଆଖି ଝାପ୍‌ସା ହୋଇ ଯାଉଛି ! ସବୁ ଯେମିତି ଅନ୍ଧାର । ମୁଁ ଆତଙ୍କରେ ପୃଷ୍ଠା ଓଲଟାଇଲି । ତା'ପରେ ଅନ୍ୟ ପୃଷ୍ଠା....ସବୁ ପୃଷ୍ଠାରେ ସେଇ ଆତଙ୍କର ଛାୟା । ମୋ ହାତ ଥରୁଥାଏ, ପାଦ ସ୍ଥିର ରହୁ ନ ଥାଏ । ସମ୍ବାଦପତ୍ରରୁ କ'ଣ

କିଛି ପଢ଼ିବାକୁ ଚେଷ୍ଟା କରୁଥାଏ—ଧାଡ଼ିଏ ଅଧେ ପଢ଼ିଲା ପରେ ଆଖି ଆପେ ଆପେ ବନ୍ଦ ହୋଇଯାଉଥାଏ । ଆଖିରୁ ଧାର ଧାର ଲୁହ ବହିଆସିଲାଣି । ଅଦୂରରେ ମୋ ବଡ଼ଅପା ବସି ମତେ ହୁଏତ ଲକ୍ଷ୍ୟ କରୁଥିଲା । ଧାଇଁଆସି ମତେ ତା କୋଳକୁ ଆଉଜାଇ ନେଇ ଅସ୍ଥିର କଣ୍ଠରେ କହିଉଠିଲା—କ'ଣ ହେଲା ? କାହିଁକି କାନ୍ଦିଲୁ ? ଆବେଗରେ ମତେ ଆଉଁଶି ପକାଉଥାଏ । ତା'ର ଏ ଆଦର ଏ ଆବେଗରେ ମୁଁ ଆଉ ଧୈର୍ଯ୍ୟ ସମ୍ଭାଳି ରହିପାରିଲି ନାହିଁ । କହିଁ କହିଁ ହୋଇ କାନ୍ଦି ଉଠି କହିଲି—ଦେଖ୍ ଅପା, ଏଇ ଦି'ମାସ ତଳେ ମାତ୍ର ବାଉନ ବର୍ଷ ବୟସରେ ବାପା ମରିଗଲାଦିନ ଆମେ ସବୁ ଏଇଠି ଏଇ ଅଗଣାରେ ବସି, ବାପା ଆମକୁ ଅକୂଳରେ ଭସାଇ ଦେଇ ଚାଲିଗଲେ ବୋଲି ମୁଣ୍ଡ ପିଟି ପିଟି କାନ୍ଦୁଥିଲୁ । ଆଜି ଏଇ ଦେଖ୍, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଆଉ ନାହାନ୍ତି । ତୁ'ତ ଜାଣୁ ତାଙ୍କୁ, ଏଇ 'ସମାଜ'ରେ ବାହାରିଛି—ସାରା ଓଡ଼ିଶାରେ ସମସ୍ତଙ୍କୁ ସେଇ ବାଉନ ବର୍ଷ ବୟସରେ ସେ ଶୋକସାଗରରେ ଭସାଇ ଜଗନ୍ନାଥଙ୍କ ନେଇଯିବ ଦିନ ଚାଲିଗଲେ । ବାପା ସିନା ଆମ ପରିବାରକୁ ଅନାଥ କରି ଯାଇଛନ୍ତି, ଉତ୍କଳମଣି ଆମ ସମସ୍ତଙ୍କୁ, ହଁ ଲୋ ଅପା, ଓଡ଼ିଶାର ଆମ ସମସ୍ତଙ୍କୁ ଅନାଥ କରି ଚାଲିଗଲେ । ଆମେ ସମସ୍ତେ ଅନାଥ ହୋଇଗଲୁ । ମୁଁ ଥରେ ତାଙ୍କୁ ଦେଖିପାରିଲି ନାହିଁ ।

### କାଠଯୋଡ଼ି ହଷ୍ଟେଲ୍ ଓ କଟକରେ ବଜୁଳି ଆଲୁଅ

ଲବଣ ସତ୍ୟାଗ୍ରହ ବର୍ଷ—ଉଣେଇଶିଶହ ତିରିଶି ମସିହା । ଏପ୍ରିଲ୍‌ମାସ ଛ' ତାରିଖ—ମୁଁ ସେଇବର୍ଷ ଜାନୁଆରି ମାସରେ ହାଇସ୍କୁଲ୍‌ରେ ପଢ଼ିବା ପାଇଁ କଟକ ଆସିଲି । ରହିଲି କାଠଯୋଡ଼ି ହଷ୍ଟେଲରେ । ବିରାଟ ଦ୍ୱିତଳ ପ୍ରାସାଦ—ବିହାର ଓଡ଼ିଶାର ସବୁଠାରୁ ବୃହତ୍ତମ ସ୍କୁଲ-ଛାତ୍ରାବାସ । ତାହାର ପାଖରେ କଲିଜିଏଟ୍ ସ୍କୁଲ, ସମ୍ମୁଖ ଅଞ୍ଚଳରେ ପ୍ରାକ୍ଟିସିଂ ଗାର୍ଲସ୍ ସ୍କୁଲ ଓ ରାଧାନାଥ ଟ୍ରେନିଂ କଲେଜର ଛାତ୍ରାବାସ । ଏଇ ଅଞ୍ଚଳରେ ପ୍ରାୟ ସତୁରି ବର୍ଷ ତଳେ ଅତି ସୁଦୃଢ଼ଭାବେ ନିର୍ମିତ ଏ ପ୍ରାସାଦଟି ବର୍ତ୍ତମାନ ସେମିତି ଅକ୍ଷତ ଅବସ୍ଥାରେ ରହିଚି । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ବେଳେ ଏହା କିଛି ବର୍ଷ ପାଇଁ ଡ.ପି.ଆଇ. ଓ ସ୍ୱାସ୍ଥ୍ୟ ନିର୍ଦ୍ଦେଶକଙ୍କ କାର୍ଯ୍ୟାଳୟ ହୋଇଥିଲା । ବର୍ତ୍ତମାନ ଏହା ଏକ ମହିଳାନିବାସ ହୋଇଚି । ମୁଁ ସେଇ ଉଣେଇଶିଶହ ତିରିଶି ମସିହା ଜାନୁଆରି ମାସରେ ଆସି କଟକ ଟାଉନ୍ ଭିକ୍ଟୋରିଆ ହାଇସ୍କୁଲରେ ନାମ ଲେଖାଇଲି—ରହିଲି କାଠଯୋଡ଼ି ହଷ୍ଟେଲ୍ ଉପର ମହଲାରେ । ମୁଁ ଯୋଉଦିନ ପଢ଼ିବାକୁ କଟକ ଆସିଲି, ସେଦିନ ମୋ' ପାଇଁ ଏକ ବିରାଟ ଘଟଣା ଘଟିଗଲା ବୋଲି ମୁଁ କହିବି—ଘଟଣାଟି ହେଲା, ସେଦିନ

ଅର୍ଥାତ୍ ଊଣେଇଶଶହ ତିରିଶି ମସିହା ଜାନୁଆରୀ ମାସ ଚଉଦ ତାରିଖ କଟକରେ ପ୍ରଥମେ ବିଜୁଳି ଆଲୁଅ ଜଳିଲା । ଆମ ହଷ୍ଟେଲ୍ ଗେଟ୍ ପାଖକୁ ଲାଗି ଗୋଟିଏ ବିଜୁଳିବତି ଖୁଣ୍ଟ ରହିଥାଏ । ଆଲୁଅ ଜଳିବାର ବହୁପୂର୍ବରୁ ସେ ଖୁଣ୍ଟ ପୋତା-ହୋଇଥାଏ । ଏପର୍ଯ୍ୟନ୍ତ ଆମେ କେବଳ ଗୃହିଁ ଗୃହିଁ ଏକ ଆକୁଳ ପ୍ରତ୍ୟାଶାରେ ରହିଥାଉ । ଜାନୁଆରୀ ଚଉଦ ତାରିଖ ଶୀତଦିନ—ସନ୍ଧ୍ୟା ସାଢ଼େ ପାଞ୍ଚଟାରେ ଆଲୁଅ ଆସିବ—ଆମେ ସବୁ ଯାଇ ଗେଟ୍ ପାଖରେ ଜମା ହେଇଗଲୁଣି । ସମସ୍ତଙ୍କ ଆଖି ସେଇ ବିଜୁଳିବତି ଉପରେ । ସାଢ଼େ ପାଞ୍ଚ ବାଜିଲା । ଆମ ସମସ୍ତଙ୍କ ମନରେ ଆଲୋକର ଉଚ୍ଛ୍ୱାସ ଭରିଦେଇ ବତିଟି ଜଳିଉଠିଲା । ବିଜୁଳିବତିକୁ ଅଭିନନ୍ଦନ ଜଣାଇ ଆମେ ତାଳିମାରି ଉଠିଲୁ । ଏତିକିବେଳେ ଆମ ହଷ୍ଟେଲ୍‌ର ଗୋଟିଏ ପିଲା ବଲ୍‌ବଟିକୁ ଲକ୍ଷ୍ୟ କରି ଗୋଟିଏ ଟେକା ଫିଙ୍ଗିଲା । ଭାଗ୍ୟକୁ ଟେକାଟି ବତିରେ ନ ବାଜି ବତି ହୋଲ୍‌ଡର୍‌ରେ ବାଜିଲା । ବତିଟି ଈଷତ୍ କମ୍ପିଉଠିଲା । ସେଇ ସଙ୍ଗେ ସଙ୍ଗେ ଆମ ସମସ୍ତଙ୍କ ହୃଦୟତନ୍ତ୍ରୀ ଭୟରେ କମ୍ପି ଉଠିଲା । ବଲ୍‌ବ ଭାଙ୍ଗିନାହିଁ ସତ, କିନ୍ତୁ ଟେକା ଯାଇ ହୋଲ୍‌ଡ଼ର୍‌ରେ ବାଜିଚି ! କିଏ ଜାଣେ, ଏ ଦୁଷ୍କର୍ମର ଫଳ କିଏ ଭୋଗିବ ? ହଷ୍ଟେଲ୍ ଦରୱାନ୍ ସେ ପିଲାଟାକୁ ନେଇ ସୁପରିଣ୍ଟେଣ୍ଡେଣ୍ଟଙ୍କ ପାଖରେ ପହଞ୍ଚେଇଦେଲା । ସୁପରିଣ୍ଟେଣ୍ଡେଣ୍ଟ ତାର ଅଭିଭାବକଙ୍କୁ ଡକାଇ ସେ ପିଲାଟାକୁ ହଷ୍ଟେଲ୍‌ରୁ ବହିଷ୍କାର କରିଦେଲେ ।...ଊଣେଇଶଶହ ତିରିଶ ମସିହା ପୂର୍ବରୁ ଓଡ଼ିଶାରେ ପୁରୀ ସହରକୁ ଇଲେକ୍‌ଟ୍ରିକ୍ ଯୋଗାଇ ଦିଆଗଲାଣି । ପୁରୀସହରର ଇଲେକ୍‌ଟ୍ରିକ୍ କମ୍ପାନୀର ମାଲିକ ଥିଲେ ଇଞ୍ଜିନିୟର ଶ୍ରୀଯୁକ୍ତ ବି. ଦାସ୍ ଅର୍ଥାତ୍ ଭୁବନାନନ୍ଦ ଦାସ୍, ବି. ଇ. । ଏକ ଅତି ମର୍ଯ୍ୟାଦାସମ୍ପନ୍ନ ପରିବାରରେ ତାଙ୍କର ଜନ୍ମ । ଭୁବନାନନ୍ଦ ଦାସ ଓ ସ୍ୱାମୀ ବିଚିତ୍ରାନନ୍ଦ ଦାସ—ଦୁହେଁ ଯମଜ ଭ୍ରାତା । ଭୁବନାନନ୍ଦ ବି. ଏସ୍‌ସି. ଇଞ୍ଜିନିୟରିଂ ପାସ୍ କରି ଚାକିରି କଲେ ନାହିଁ, ବରଂ ଜାତୀୟ କଂଗ୍ରେସ ସହିତ ସମ୍ପର୍କ ରଖିଥିଲେ । କେତେଥର କଂଗ୍ରେସ୍ ପାର୍ଲିଆମେଣ୍ଟ ସଭ୍ୟ ହୋଇଥିଲେ । ତାଙ୍କର ଗୋଟିଏ ମାତ୍ର ସନ୍ତାନ—ଶ୍ରୀଯୁକ୍ତ ରାଧାକୃଷ୍ଣ ଦାସ । ରାଧାକୃଷ୍ଣ ବାବୁ ପୁରୀ ଇଲେକ୍‌ଟ୍ରିକ୍ କମ୍ପାନୀର ଦେଖାଶୁଣା କରୁଥା'ନ୍ତି । ସ୍ୱାମୀ ବିଚିତ୍ରାନନ୍ଦ ଦାସ—ଓକିଲ, ଅବିବାହିତ । ଭାରତୀୟ ଜାତୀୟ କଂଗ୍ରେସର ଜଣେ ବରିଷ୍ଠ ନେତା ।

କଟକ ଇଲେକ୍‌ଟ୍ରିକ୍ କମ୍ପାନୀର ମାଲିକ ଥିଲେ ଏକ ବିଦେଶୀ ପ୍ରତିଷ୍ଠାନ-ଓକ୍ଟାଭିଅସ୍ ଷ୍ଟିଲ୍ କମ୍ପାନୀ । ଊଣେଇଶିଶହ ତିରିଶରୁ ଊଣେଇଶିଶହ ବାଆଷଠି । ଏଇ ବତିଶିବର୍ଷ ଭିତରେ କେବଳ ଊଣେଇଶଶହ ସତେଇଶ ମସିହାରେ ପ୍ରବଳ ଝଡ଼ ବତାସ ଯୋଗୁ କେତେକ ବିଜୁଳିଖୁଣ୍ଟ ନଷ୍ଟ ହୋଇଯିବାରୁ ଦୁଇ ତିନିଦିନ

ବିଜୁଳି ଯୋଗାଣ ବନ୍ଦ ହୋଇଯାଇଥିଲା । ଏହା ବ୍ୟତୀତ ଏହି ବତିଶ ବର୍ଷ ଭିତରେ ଆଉ କେବେହେଲେ ଅକ୍ଟୋଭିଅସ୍ କମ୍ପାନୀ ସହରକୁ ବିଜୁଳି ଯୋଗାଣ ବନ୍ଦ କରିନାହିଁ । ଊଣେଇଶଶହ ଏକଷଠି / ବାଆଷଠି ମସିହାରେ କମ୍ପାନୀଠାରୁ ଓଡ଼ିଶା ସରକାର କମ୍ପାନୀର ପରିଚାଳନା ଭାର ଗ୍ରହଣ କଲେ । ଆମେ ସମସ୍ତେ ଉତ୍ଫୁଲ୍ଲ ହୋଇଉଠିଲୁ । ସେତେବେଳକୁ କୌଣସି ଏକ ଜନହିତକର ପ୍ରତିଷ୍ଠାନର ପରିଚାଳନା ଦାୟିତ୍ୱ ସରକାର ଓ ଏକ କମ୍ପାନୀ ତୁଲାଇବାର ମଧ୍ୟରେ ପାର୍ଥକ୍ୟ ଜନସାଧାରଣଙ୍କ ନିକଟରେ ସ୍ପଷ୍ଟରୂପେ ପ୍ରତିଭାତ ହୋଇପାରି ନ ଥିଲା । ଆମେ ଧରିନେଲୁ ବିଜୁଳି ଯୋଗାଣ ପରି ଏକ ଜନହିତକାରୀ ଉଦ୍ୟୋଗ ବା ପ୍ରକଳ୍ପ ସରକାରଙ୍କ ହାତରେ ହିଁ ଦୃଢ଼ ରହିବ—କାରଣ କମ୍ପାନୀପରି ଲାଭ ଉଠେଇବାର ପ୍ରଶ୍ନ ସରକାରୀ ସ୍ତରରେ ନାହିଁ । ....କମ୍ପାନୀ ପରିଚାଳନା ସମୟରେ ମୁଁ ଦୁଇଟି ମିଟର ପାଇଁ ଦରଖାସ୍ତ କରିଥିଲି । ଗୋଟିଏ ମିଟର ପାଇଥାଏ ।.... ଦ୍ୱିତୀୟ ମିଟରଟି ମିଳିବା ପାଇଁ ମୁଁ ଅପେକ୍ଷା କରିଥାଏ । ସେଦିନ ଦିନ ପ୍ରାୟ ବାରଟା—ପ୍ରଚଣ୍ଡ ଉତ୍ତାପ । କମ୍ପାନୀର ଜଣେ କର୍ମଚାରୀ, (ତାଙ୍କ ନାମ ବୋଧହୁଏ ବଟବାବୁ) ଅସ୍ତବ୍ୟସ୍ତ ହୋଇ ଗୋଟିଏ ମିଟର ଆଣି ମୋ' ଘରେ ପହଞ୍ଚିଲେ । ଏମିତି ଅସମୟରେ କାହିଁକି ଆସିଲେ ବୋଲି ମୋ' ପ୍ରଶ୍ନର ଉତ୍ତରରେ ସେ କହିଲେ—ଆଜି ରାତି ବାରଟାବେଳେ ସରକାର କମ୍ପାନୀଠୁଁ ଦାୟିତ୍ୱ ନେଇଯିବେ । ତା'ପରେ ବିଜୁଳି ଯୋଗାଣ ଅଫିସ୍ କେଉଁ ମାର୍ଗରେ ଚାଲିବ, ସେକଥା କେହି କହିପାରିବେନି । ସେଥିପାଇଁ ନିର୍ଦ୍ଧାରିତ ସମୟ ପୂର୍ବରୁ ଆମେ ସବୁ ଅଡୁଆ ତୁଟାଇ ଦେଉଛୁ । ମିଟର ବସାଇ ଦେଇ ସେମାନେ ଚାଲିଗଲେ । ବଟବାବୁଙ୍କ କଥାରେ ମୁଁ ବିସ୍ମିତ ତଥା ବିବ୍ରତ ହୋଇପଡ଼ିଲି । ସରକାରୀ ପରିଚାଳନାରେ କ'ଣ ବିଜୁଳି ବିଭାଗର କାର୍ଯ୍ୟ ଧିମେଇଯିବ ? ଅବଶ୍ୟ ସମୟେ ସମୟେ ସରକାରୀ ଦପ୍ତରର ଗତି ଧିମେଇଯାଏ । କିନ୍ତୁ ସେସବୁ କାଗଜପତ୍ର କାରବାର । କିନ୍ତୁ ଇଏ ଯେ ବିଜୁଳି-ବିଭାଗ—ତାଙ୍କ କାମ ବିଜୁଳି ଗତିରେ ଚାଲିବାର କଥା । ସେମାନେ ଆମକୁ ବିଜୁଳି ଯୋଗାଇ ଦେବେ, ଆମେ ସେମାନଙ୍କୁ ଟଙ୍କା ଦେବୁ । ଏଥିରେ ସେମାନେ ଧିମେଇଗଲେ ଏ କଟକ ସହର ଯେ ଅନ୍ଧାର ହୋଇଯିବ ! କିନ୍ତୁ ନିର୍ବୋଧ ମୁଁ, ବୁଝିପାରୁ ନ ଥିଲି ଯେ ଓକ୍ଟୋଭିଅସ୍ କମ୍ପାନୀ ରାଣୀହାଟରେ ଗୋଟିଏ ସାଧାରଣ ଅଥଚ ଅତି ସୁଦୃଢ଼ ଘରେ ଅଫିସ୍ ଖୋଲି କଟକ ସହରକୁ ବିଜୁଳି ଯୋଗାଉଥିଲା । ତାଙ୍କ କାମ ଧିମେଇଗଲେ ଲାଭର ମାତ୍ରା ସେମିତି ପଛେଇଯିବ । ସେଥିପାଇଁ ସେମାନେ ପାଦରେ ଠିଆ ନ ହୋଇ, ପାଦ ଆଙ୍ଗୁଳି ଅଗରେ ଠିଆ ହୋଇ କାମ କରୁଥିଲେ । କିନ୍ତୁ ସରକାରୀ ପରିଚାଳନା ଅଧୀନକୁ ଗଲାପରେ ଦେଖାଗଲା ଯେ,

ଏକ ବିଶାଳ ବିଦ୍ୟୁତ୍‌ବୋର୍ଡ଼ ଗଠିତ ହେଲା । ବହୁ ଉଚ୍ଚପଦବୀଧାରୀ ବିଚକ୍ଷଣ ଇଞ୍ଜିନିଅରମାନେ ବୋର୍ଡ଼ ପରିଚାଳନା ଦାୟିତ୍ୱରେ ରହିଲେ । ସେମିତି ବିଜୁଳି ଉତ୍ପାଦନ ତାଳଚେର, ହୀରାକୁଦ ଓ ବାଲିମେଲା ପ୍ରଭୃତି ଅଞ୍ଚଳମାନଙ୍କରେ ପରିବ୍ୟାପ୍ତ ହୋଇ ସମସ୍ତ ଓଡ଼ିଶାକୁ ବିଜୁଳି ଯୋଗାଇ ଦେବାର ପ୍ରଚେଷ୍ଟା କରାଗଲା । କମ୍ପାନୀ ଅମଳରେ ଯଦି କେହି ଉପଭୋକ୍ତାର କିଛି ଅସୁବିଧା ହେଉଥିଲା, ତେବେ ସେ କମ୍ପାନୀକୁ ଜଣେଇବା ସଙ୍ଗେ ସଙ୍ଗେ ସେମାନେ ଆସି ସବୁ ସୁଧାରି ଦେଉଥିଲେ । ତାର କାରଣ, ଉପଭୋକ୍ତାର ଘର କଟକରେ ଓ କମ୍ପାନୀର ବିଜୁଳି ଉପାଦାନ ସେଇ କଟକରେ । ସେଥିପାଇଁ ବିଳମ୍ବର ପ୍ରଶ୍ନ ନ ଥିଲା । କିନ୍ତୁ ସରକାରୀ କର୍‌ପୋରେସନ୍ ଗଢ଼ାହେଲା ପରେ ଯଦି କାହାର କିଛି ଅସୁବିଧା ହେଲା, ତେବେ ସେ ପାଖରୁ ଉତ୍ତର ଆସିଲା—ହୀରାକୁଦରୁ ଯାଇଚି ତ କେତେବେଳେ ତାଳଚେରରୁ ଯାଇଚି—କେତେବେଳେ ଆସିବ କହିହେବ ନାହିଁ । ଏଥିରୁ ଆମେ ଏଇଆ ବୁଝିଲୁ ଯେ, ଯେହେତୁ ହୀରାକୁଦ, ବାଲିମେଲା ଓ ତାଳଚେର କଟକରୁ ବହୁ ଦୂରରେ ଅବସ୍ଥିତ, ସେମାନେ ସେଠି ଆରାମରେ ବସି ନିରାପଦରେ ଭୁବନେଶ୍ୱର କର୍‌ପୋରେସନ୍‌କୁ ଅଙ୍ଗୁଳି ଅଗରେ ନଚାଉଚନ୍ତି, ଆଉ ବିଚରା କର୍‌ପୋରେସନ୍ ଭୁବନେଶ୍ୱରରେ କିଛି ବୁଦ୍ଧି ବାଟ ନ ପାଇ ତାଙ୍କର ଅଧୀନସ୍ଥ କର୍ମଚାରୀଙ୍କ ସହିତ ବିଜୁଳି ଉପଭୋକ୍ତାମାନଙ୍କୁ ସେମିତି ଅଙ୍ଗୁଳି ଅଗରେ ନଚାଉଚନ୍ତି । ସେଇ ଉଣେଇଶଶହ ଏକଷଠି / ବାଅଷଠି ମସିହାରୁ ଏପର୍ଯ୍ୟନ୍ତ ଅର୍ଥାତ୍ ଉଣେଇଶଶହ ତେୟାନବେ, ଚଉରାନବେ ପର୍ଯ୍ୟନ୍ତ ଏ ନଚାନଚି କାମ ସେମିତି ଚାଲିଚି ।

## ରାଧାକୃଷ୍ଣ ମୁରଲୀଧର

ହଁ, ଏଇ ବିଜୁଳିବତି କାରବାରରୁ ଆଉ ଗୋଟିଏ ଆମୋଦପୂର୍ଣ୍ଣ ଘଟଣା ମନେ ପଡ଼ିଯାଉଚି । ଶ୍ରୀ ମୁରଲୀଧର ଆଚାର୍ଯ୍ୟ—ଘର ତାଙ୍କର କଟକ ଜିଲ୍ଲା ସିଦ୍ଧେଶ୍ୱରପୁର, କିନ୍ତୁ ରହଣି ପ୍ରାୟ କଟକ ସହରରେ । ଶିକ୍ଷାଦୀକ୍ଷା ଅଛି, କିନ୍ତୁ ଚାକିରି କରନ୍ତି ନାହିଁ—ସ୍ଫୁର୍ତ୍ତିମାନ୍ ବିଚକ୍ଷଣ ସ୍ୱଭାବ । ସମାଜସେବୀ ଭାବରେ କିଛିଟା ଖ୍ୟାତି ଥାଏ । ତାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ, ସମବୟସ୍କ ଶ୍ରୀ ରାଧାକୃଷ୍ଣ ଦାସ । କଟକ ଓ ପୁରୀ ସହରରେ ବିଜୁଳିବତି ବ୍ୟବସ୍ଥା ହେଇଯିବା ପରେ ଏ ଦୁହେଁ ଏକ ମିଳିତ ବ୍ୟବସାୟ ସଂସ୍ଥା ଖୋଲି ସମ୍ବଲପୁର ସହରରେ ବିଜୁଳି ଯୋଗାଣ ପାଇଁ ଲାଇସେନ୍‌ସ ପାଇଲେ । ସଂସ୍ଥାର ନାମ ସମ୍ବଲପୁର ଇଲେକ୍‌ଟ୍ରିକ୍ ସପ୍ଲାଇ କମ୍ପାନୀ, ହେଡ଼୍ ଅଫିସ୍ କଟକ । କାମ ଆରମ୍ଭ ହେଲା—ସମସ୍ତ ସରଞ୍ଜାମ କଲିକତାରୁ ଆଣିବାର୍ କଥା, କିନ୍ତୁ ଏ ଦୁହେଁ ଦେଖିଲେ, କଲିକତାର ପ୍ରାୟ ସବୁ ଫାର୍ମ ଏମାନଙ୍କୁ ବେଶୀ ଚଢ଼ାଦରରେ ଜିନିଷପତ୍ର ଯୋଗାଇବା ପାଇଁ କୋଟେସନ୍

ଦଉଚନ୍ତି । ଏତେ ଦରରେ କିନବା କିଣିଲେ ଏମାନଙ୍କ କମ୍ପାନୀ ବୁଡ଼ିଯିବ । କିଛିଟା ପ୍ରଚେଷ୍ଟାରେ ଜଣାପଡ଼ିଲା ଯେ, ଏହା ଓଡ଼ିଆ ଫାର୍ମ ହୋଇଥିବାରୁ କଲିକତାର ମାରୁଆଡ଼ି ଫାର୍ମମାନେ ଜାଣିଶୁଣି ଏମାନଙ୍କୁ ଚଢ଼ାଦରରେ କୋଟେସନ୍ ଦଉଚନ୍ତି । କ'ଣ କରାଯିବ ? ମାରୁଆଡ଼ିମାନେ ଧନୀ ସତ, କିନ୍ତୁ ବହୁ କ୍ଷେତ୍ରରେ ଦେଖାଯାଇଚି ଯେ, ସେମାନଙ୍କ ଧନ ଅପେକ୍ଷା ଓଡ଼ିଆମାନଙ୍କର ବୁଦ୍ଧିର ମାତ୍ରା ବେଶୀ । ସଙ୍ଗେ ସଙ୍ଗେ "ସମ୍ବଲପୁର ଇଲେକ୍‌ଟ୍ରିକ ସପ୍ଲାଇ କମ୍ପାନୀ"କୁ ଭାଙ୍ଗି-ଦିଆଯାଇ ସେ ସ୍ଥାନରେ ଏକ ନୂତନ କମ୍ପାନୀ ଗଠିତ ହେଲା । ଏଇ ନୂତନ କମ୍ପାନୀର ନାମ ରହିଲା—"ରାଧାକିସନ୍ ମୁରଲୀଧର ଜେନେରାଲ୍ ମାର୍ଚ୍ଚେଣ୍ଟସ୍" । ଯେତେବେଳେ ଏଇ ନୂତନ କମ୍ପାନୀ ନାମରେ ଏମାନେ କଲିକତା ମାରୁଆଡ଼ି ଫାର୍ମକୁ କୋଟେସନ୍ ମାଗିଲେ, ସେମାନେ କଟକରେ ଏକ ନୂଆ ମାରୁଆଡ଼ି ପ୍ରତିଷ୍ଠାନ ଗଢ଼ାହେଇଚି ବୋଲି ଜାଣି ଖୁସିରେ ସେମାନଙ୍କର ରେଟ୍ ପ୍ରାୟ କୋଡ଼ିଏ ପର୍ସେଣ୍ଟ କମେଇ ଦେଲେ । ଏଥିରେ କଲିକତାରେ ସେମାନେ ଖୁସୀ, କଟକରେ ଏମାନେ ଖୁସୀ ।

## କାଠଯୋଡ଼ି ହଷ୍ଟେଲ୍ ଓ ଆନନ୍ଦ ଲହରୀ ଉପନ୍ୟାସମାଳା

ଉଣେଇଶିଶହ ତିରିଶି ମସିହାରେ ମୁଁ ମେଟ୍ରିକ୍ ପଢ଼ିବାକୁ କଟକ ଆସି କାଠଯୋଡ଼ି ହଷ୍ଟେଲ୍‌ରେ ଥାଏ । ସେଦିନ ସ୍କୁଲରୁ ଫେରି ଉପର ମହଲା ବାରଣ୍ଡାରେ ଠିଆହେଇଚି, ଦେଖିଲି ଜଣେ ଲୋକ କାନ୍ଧରେ ଗୋଟିଏ ପୁଡ଼ିଆ ରଖି ହଷ୍ଟେଲ୍ ପ୍ରାଙ୍ଗଣକୁ ଆସିଲା ଓ ଟେନିସ୍ ପଡ଼ିଆରେ ବସି ପୁଡ଼ିଆଟିକୁ ଖୋଲି କେତେଖଣ୍ଡ ନୂଆ ବହି ସଜାଇକରି ରଖିଲା । ଏଇଠି ମୁଁ ଅତି ବିନମ୍ର ସହକାରେ କହି ରଖୁଚି ମୁଁ ପିଲାଦିନୁ ପୁସ୍ତକପ୍ରିୟ ଥିଲି । କିନ୍ତୁ ପୁସ୍ତକ କାହିଁ, ବହି କାହିଁ ? ସେଇ ଶିଶୁବୋଧ, କଥା ବହି ବା ସାହିତ୍ୟ କୁସୁମ ବହିକୁ ବାରମ୍ବାର ପଢ଼ୁଥିଲି । ମାଇନର ସ୍କୁଲ ଲାଇବ୍ରେରୀରେ ମାତ୍ର ଦୁଇଖଣ୍ଡି ଉପନ୍ୟାସ ଥିଲା । (ସେତେବେଳେ ଉପନ୍ୟାସ ବା କାହିଁ ?) ଏ ଉପନ୍ୟାସ ଦୁଇଟାର ନାମ ଥିଲା "ତୁ ମୋ ମା" ଓ "ରୁପା ଚୁଡ଼ି" ବା ଏହିପରି କିଛି । ଏ ଦୁଇଖଣ୍ଡି ବହି ତ ପଢ଼ିଥିଲି, ଆଉ ପଢ଼ିଥିଲି ବଙ୍କିମ ଚନ୍ଦ୍ରଙ୍କର ଖଣ୍ଡିଏ ବଙ୍ଗଳା ଉପନ୍ୟାସ "କପାଳକୁଣ୍ଡଳା" । ଏ ବହିଟି ମଧ୍ୟ ଆମ ଲାଇବ୍ରେରୀରେ ଥିଲା ଓ ମୁଁ ଅତି ପିଲାବେଳୁ ମୋ ଅପା ପାଖରୁ ବଙ୍ଗଳା ପଢ଼ିବା ଶିକ୍ଷା ପାଇଥିଲି ।....ସେଦିନ ଟେନିସ୍ ପଡ଼ିଆରେ କେତେଖଣ୍ଡ ନୂଆ ବହି ଦେଖି ମୁଁ ସେଇ ମୁହୂର୍ତ୍ତରେ ତଳକୁ ଓହ୍ଲାଇ ଆସିଲି । ଦେଖିଲି—ଖଣ୍ଡିଏ କନା ଉପରେ ଚାରି ପାଞ୍ଚଖଣ୍ଡି ନୂଆ ବହି ସଜାହେଇଚି । ଏ ବହିସବୁ ହେଲା

କାଳନ୍ଦୀ ପାଣିଗ୍ରାହୀଙ୍କ "ମାଟିର ମଣିଷ" ଓ ଗୋଦାବରୀଶ ମହାପାତ୍ରଙ୍କ "ପ୍ରେମପଥେ" ଓ "ଜଗୁଆ ମା" । ଅନ୍ୟ ଖଣ୍ଡେ ଦୁଇଖଣ୍ଡ ବହିର ନାମ ସ୍ମରଣ ହେଉ ନାହିଁ । ସେ ଲୋକଟିଠାରୁ ବୁଝିଲି ଯେ ସାରସ୍ୱତ ଭଣ୍ଡାରର ମାଲିକ ସୁ-ସାହିତ୍ୟିକ ସ୍ୱର୍ଗତ ଶ୍ରୀଯୁକ୍ତ ବାଳକୃଷ୍ଣ କର ଓଡ଼ିଆ ଉପନ୍ୟାସ ପ୍ରକାଶନ ପାଇଁ ତାଙ୍କର ନିଜସ୍ୱ ଗୋଟିଏ ଯୋଜନା କରିଚନ୍ତି । ଏ ଯୋଜନାଟିର ନାମ ହେଲା "ଆନନ୍ଦ ଲହରୀ ଉପନ୍ୟାସ ମାଳା" । ଏଥିରେ ଗୋଟିଏ ବର୍ଷର ପ୍ରତ୍ୟେକ ମାସରେ ଖଣ୍ଡିଏ ଲେଖା ବର୍ଷକୁ ବାରଖଣ୍ଡ ଉପନ୍ୟାସ ପ୍ରକାଶିତ ହେବ । ଯିଏ ଆଠ ଅଣା (ବର୍ତ୍ତମାନର ପଚାଶ ପଇସା) ଦେଇ ଏ ଆନନ୍ଦ ଲହରୀର ସଭ୍ୟ ହେବ ସେ ଏ ବାରଖଣ୍ଡି ପୁସ୍ତକକୁ ଅଧା ଦାମ୍‌ରେ କିଣିପାରିବ । ସେ ଲୋକଟିଠାରୁ ଏ ଯୋଜନାର ସବିଶେଷ ବିବରଣୀ ବୁଝିବା ପାଇଁ ମତେ ଅବଶ୍ୟ କିଛି ସମୟ ଲାଗିଲା । ମୁଁ ଯେତେବେଳେ ସବୁ ବୁଝିଲି ସେତେବେଳେ ମୋର ଖାଲି ଲୋଭ ହେଲା ଯେ ମୁଁ ଆଠଅଣା ପଇସା ଦେଇ ଆନନ୍ଦ ଲହରୀର ସଭ୍ୟ ହେବି । କିନ୍ତୁ ହାୟ ! ମୋ ପାଖରେ ମୋର ଦରକାରୀ ଖର୍ଚ୍ଚ ଛଡ଼ା ବଳକା ଆଠଅଣା ପଇସା କାହିଁ ? ସେତେବେଳେ ଗୋଟିଏ ପଇସା (ବର୍ତ୍ତମାନ ଦୁଇଟି ନୂଆ ପଇସାରୁ କମ୍) । ହଁ, ଏଇ ଗୋଟିଏ ପଇସାରେ ଜଣେ ପିଲା ଦୁଇଦିନ ତାର ଅପରାହ୍ନ ଜଳଖିଆ ଖର୍ଚ୍ଚ ମେଣ୍ଟାଇ ଦେଇପାରୁଥିଲା । ମୁଁ ଆନନ୍ଦ ଲହରୀର ସଭ୍ୟ ହେବା ଆଶା ଛାଡ଼ି କାଳନ୍ଦୀ ବାବୁଙ୍କ ମାଟିର ମଣିଷ ବହିଟି ନଗଦ ପଇସା ଦେଇ କିଣିଲି । ଏଥିପାଇଁ କମିଶନ୍ ବାଦ୍ ଦେଇ ମତେ ବୋଧହୁଏ ମାତ୍ର ଦୁଇଅଣା ବା ସାମାନ୍ୟ କିଛି ବେଶି ପଇସା ଦେବାକୁ ପଡ଼ିଥିଲା ।....ମୁଁ ସେଦିନ ଲକ୍ଷ୍ୟକରିଚି—ହଷ୍ଟେଲର ଶତାଧିକ ପିଲା, କିନ୍ତୁ ମୋ ବ୍ୟତୀତ ଅନ୍ୟ କେହି ସେଦିନ ଏ ପୁସ୍ତକ ବିକ୍ରେତା ପାଖକୁ ଆସିନାହାନ୍ତି । ଅଥଚ ମୁଁ ବହିଟି କିଣି ନେଇଗଲାପରେ ଅସଂଖ୍ୟ—ଅସଂଖ୍ୟ ପିଲା ପଢ଼ିବା ପାଇଁ ମୋ ପାଖରୁ ବହିଟି ମାଗିନେଇଚନ୍ତି ଓ ବାରମ୍ବାର ବହିଟିକୁ ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥାରେ ମୁଁ ଉଦ୍ଧାର କରି ଆଣିଚି ।....ଆଜି ଏଇ ଊଣେଇଶିହ ବୟାଳିଶ ମସିହାରେ ଯେତେବେଳେ ପଇସା ଧୂଳିମାଟି ପରି ଉଡ଼ୁଚି ଓ ସଂଖ୍ୟାହୀନ ଭାବରେ ଲେଖକ ବଢ଼ିଗଲେଣି, ସେତେବେଳେ ଆମେ ଶୁଣିବାକୁ ପାଉଚୁ ଯେ ବର୍ତ୍ତମାନ ଓଡ଼ିଆ ଗଳ୍ପ, ଉପନ୍ୟାସ ଓ କବିତା ପ୍ରଭୃତି ସାଧାରଣ ପୁସ୍ତକର ବିକ୍ରୟ ନାହିଁ । କିନ୍ତୁ ଆଜିକୁ ବାଆଷଠି ବର୍ଷ ତଳେ ଯେତେ-ବେଳେ ମାତ୍ର କେତେଜଣ ହାତଗଣତି ଲେଖକ ଥିଲେ ଓ ସେତେବେଳର ଗୋଟିଏ ପଇସାର ଟଙ୍କିଭାଗରୁ ଭାଗେ ଗୋଟିଏ ପାହୁଲାକୁ ଗୃହସ୍ଥମାନେ ସାତଗଣ୍ଠି ପକାଇ ସାଇତି ରଖୁଥିଲେ, ସେତେବେଳେ ଶ୍ରୀଯୁକ୍ତ ବାଳକୃଷ୍ଣ କର ତାଙ୍କର

ସତ୍‌ସାହସ ପ୍ରୟୋଗ କରି ବର୍ଷକୁ ବାରଖଣ୍ଡି ଉପନ୍ୟାସ ପ୍ରକାଶ କରିବାର ଏକ ପ୍ରଶଂସାଯୋଗ୍ୟ ଯୋଜନା ପ୍ରସ୍ତୁତ କରିପାରିଥିଲେ । ତାଙ୍କୁ ଆମର କୋଟି ନମସ୍କାର ।

## ଊନେଇଶିଶହ ତିରିଶି ମସିହା ଓ ଲବଣ ସତ୍ୟାଗ୍ରହ

ଏଇ ଊଣେଇଶିଶହ ତିରିଶି ମସିହା ! ମୋ ପାଇଁ ହେଉ ବା ଅନ୍ୟମାନଙ୍କ ପାଇଁ ହେଉ ଏ ଶତାବ୍ଦୀର ଏକ ଅତି ଉଲ୍ଲେଖଯୋଗ୍ୟ ବର୍ଷ । ସେଦିନ ଏକ ଅପରାହ୍ଣରେ ଛାତ୍ର ଓ ଯୁବନେତା ଶ୍ରୀଯୁକ୍ତ ରାଜକୃଷ୍ଣ ବୋଷ ହଷ୍ଟେଲ ପଡ଼ିଆରେ ଆସି ତାଙ୍କ ସ୍ୱଭାବ ସୁଲଭ ଉତ୍ତେଜନା ମୂଳକ ଗଳାରେ କହିଲେ—ହେ ମୋର ପ୍ରିୟ ଛାତ୍ରବୃନ୍ଦ, ଆମେମାନେ ସ୍ୱାଧୀନତା ପାଇଁ ସଂଗ୍ରାମ କରୁଥାଇଁ । ଦେଶତ ସ୍ୱାଧୀନ ହେବ, କିନ୍ତୁ ଏଥିପାଇଁ ଆମ ସମସ୍ତଙ୍କୁ କିଛିନା କିଛି ସ୍ୱାର୍ଥତ୍ୟାଗ କରିବାକୁ ପଡ଼ିବ । ବର୍ତ୍ତମାନ କଂଗ୍ରେସ ନିଷ୍ପତ୍ତି ନେଇଛି ଆମେ ସମସ୍ତେ ହାତକଟା ଖଦଡ଼ ଲୁଗା ପିନ୍ଧିବା ଓ ଆମର ଯାହା କିଛି ବିଲାତି ଲୁଗା ଅଛି ସେ ସବୁକୁ ପୋଡ଼ିଦେବା । ଏଇ କଥା କେଇପଦରେ କିଛିକ୍ଷଣ ନିସ୍ତବ୍ଧତା ଖେଳିଗଲା । ତା'ପରେ ଖଣ୍ଡେ ଦୁଇଖଣ୍ଡ ତିନିଖଣ୍ଡ ଏଇ କ୍ରମରେ ବିଲାତି ଲୁଗାଜାମା ସବୁ ପଡ଼ିଆ ଭିତରକୁ ଫୋପଡ଼ାଗଲା । ମୁଁ ତ ନୂଆ କଟକ ଆସିଥାଏ, କଟକରେ ଯିଏ ମୋର ଅଭିଭାବକ ଥା'ନ୍ତି ସେ ମୋ ପାଇଁ ବେଶ୍ କିଛି ସଂଖ୍ୟାରେ ବିଲାତି ଜାମାପଟା କରେଇ ଦେଇଥିଲେ । ଆମର ପ୍ରିୟ ନେତା ଶ୍ରୀଯୁକ୍ତ ବୋଷଙ୍କ ଆହ୍ୱାନରେ ମୁଁ ସେ ସବୁରୁ ମାତ୍ର କେତେଖଣ୍ଡି ରଖି ବାକିତକ ତଳକୁ ଫୋପାଡ଼ି ଦେଲି । ପଡ଼ିଆ ଭିତରେ ଆମମାନଙ୍କ ବିଲାତିଲୁଗା ବହୁ ପରିମାଣରେ ଜମାହୋଇଗଲା । ଯଥାସମୟରେ ଗୋଟିଏ ଏକ-ବଳଦିଆ ଗାଡ଼ି ଆସି ସେ ଲୁଗାପଟା ସବୁକୁ କାଠଯୋଡ଼ି କୂଳକୁ ନିଆଗଲା । ଆମରି ଆଖି ସାମ୍ନାରେ ସେ ସବୁ କାଠଯୋଡ଼ି ନଦୀବାଲିରେ ହୁ ହୁ ହୋଇ ଜଳି ସତେଯେପରି ଆମର ସ୍ୱାଧୀନତା ପ୍ରାପ୍ତି ପଥକୁ ଆଲୋକିତ କରିଦେଲା । ତା'ପରେ ଆସିଲା ବହୁ ପ୍ରତ୍ୟାଶିତ ସେଇ ଲବଣ ସତ୍ୟାଗ୍ରହ ଦିବସ—ଏପ୍ରିଲମାସ ଛଅ ତାରିଖ । ସେଦିନ ପଶ୍ଚିମ ଉପକୂଳରେ ଚାଲିଥାଏ ମହାତ୍ମାଗାନ୍ଧୀଙ୍କ ଦାଣ୍ଡୀଯାତ୍ରା । ଏ ପାଖ ପୂର୍ବ ଉପକୂଳରେ ଓଡ଼ିଶାର କଟକ ସହର ସ୍ୱରାଜ ଆଶ୍ରମରୁ ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ଏକ ଲବଣ ସତ୍ୟାଗ୍ରହୀ ଦଳ ମହାନଦୀ ଖରାଦିନିଆ ରାସ୍ତାରେ ପହଞ୍ଚିଲା ପରେ ପରେ ଦଳର ନେତା ଗୋପବନ୍ଧୁ ଚୌଧୁରୀଙ୍କୁ ଆରେଷ୍ଟ କରି ନିଆଗଲା । ତାଙ୍କ ସ୍ଥାନରେ ନେତୃତ୍ୱ ନେଲେ ବୋଧହୁଏ ଆଚାର୍ଯ୍ୟ ହରିହର ଦାସ । ଆମର ସକାଳୁଆ ସ୍କୁଲ । ଦିନ ପ୍ରାୟ ଗୋଟାଏବେଳେ ମୁଁ ସ୍କୁଲରୁ ଆସି ହଷ୍ଟେଲ ବାରଣ୍ଡାରେ ଠିଆହୋଇଛି, ଖାଇବାକୁ

ଯାଇନ, ଏତିକିବେଳେ ବିଦ୍ୟୁତ୍ ବେଗରେ ଗୋପବନ୍ଧୁଙ୍କ ଗିରଫ ହେବା ଖବର କଚେରିରେ ପହଞ୍ଚିଲା ଓ କଚେରିରୁ ଅତି ଉଚ୍ଚ ସ୍ୱରରେ ଜାତୀୟ ସ୍ଲୋଗାନ ସବୁ ଶୁଣାଗଲା । ମୁଁ ଖାଇବା ପାଇଁ ଡାଇନିଙ୍ଗ୍ ହଲ୍‌କୁ ନ ଯାଇ ବନ୍ଧପନ୍ତ ରଖି କଚେରି ହତାକୁ ଚାଲିଗଲି । ଦେଖିଲି ଗୋପବନ୍ଧୁ ବନ୍ଦୀ ହେବାର ପ୍ରତିବାଦରେ ଏକ ଶୋଭାଯାତ୍ରାର ଆୟୋଜନ ଚାଲିଚି । ମୁଁ ସେ ଶୋଭାଯାତ୍ରାରେ ଯୋଗଦେଲି । ଆକାଶରୁ ବୈଶାଖର ନିର୍ମମ ତପ୍ତଧାର ଝରିପଡ଼ୁଚି—ପାଦତଳେ ତତଲାଭୂଇଁ— ଅଥଚ ଅସୀମ ଉତ୍ସାହରେ ଆମର ଶୋଭାଯାତ୍ରା ଆଗେଇ ଚାଲିଚି । ନୟାସଡ଼କ ମାରୁଆଡ଼ି ପଟିରେ ଦେଖିଲୁ ସେମାନେ ଡ୍ରମ୍ ଭିତରେ ବରଫ, ଦହି, ମିଠାସର୍ବତ ରଖି ଆମମାନଙ୍କୁ ଯୋଗାଇ ଦେଉଚନ୍ତି । ପୁଣି ବଡ଼ ବଡ଼ ପିଚକାରିରେ ଥଣ୍ଡା ଗୋଲାପ ଜଳ ଆମମାନଙ୍କ ଉପରେ ଛାଟୁଚନ୍ତି । ଶୋଭାଯାତ୍ରା ବକ୍ସିବଜାର ଛକରେ ପହଞ୍ଚିବା ପରେ ଦିନ ପ୍ରାୟ ତିନିଟା । ସେଇଠି ଶୋଭାଯାତ୍ରା ତିନିଭାଗରେ ବିଭକ୍ତ ହୋଇଗଲା ।

## ଖଦଡ଼ ପିନ୍ଧିଥିଲି ବୋଲି ଥାନାକୁ ଗଲି

ଆମ ଦଳଟି ମିଶନ୍ ରୋଡ଼୍‌ରେ ପହଞ୍ଚିଲା ବେଳକୁ ଡି. ଏସ୍. ପି. ଶ୍ରୀ ଦାମୋଦର ରଥଙ୍କ ନେତୃତ୍ୱରେ ଦଳେ ପୋଲିସ ଆମକୁ ଘେରିଗଲେ । ହୁକୁମ୍ ହେଲା ଯୋଉମାନେ ଖଦଡ଼ ପିନ୍ଧିଚନ୍ତି, ସେମାନଙ୍କୁ ପୋଲିସ ବସ୍ ଭିତରେ ଭର୍ତ୍ତିକରି ଅନ୍ୟମାନଙ୍କୁ ଛାଡ଼ିଦିଅ । ଖଦଡ଼ ପିନ୍ଧା ଛଅଜଣ ଲୋକ ବାହାରିଲେ, ତା ଭିତରେ ମୁଁ ରହିଗଲି, ଯେହେତୁ ମୁଁ ଖଦଡ଼ ପିନ୍ଧିଥିଲି । ଆମ ଛଅଜଣଙ୍କୁ ନେଇ କଟକ ଲାଲବାଗ ଥାନା ବାରଣ୍ଡାରେ ବସେଇ ଦେଲେ । ସମୟ ପ୍ରାୟ ଚାରିଟା । ମୁଁ ବୟସରେ ସବୁଠୁ କନିଷ୍ଠ । ଏପରି ଗୋଟିଏ ଘଟଣା ଘଟିବ, ମୁଁ କେବେ ଭାବି ନ ଥିଲି । ସକାଳୁ କିଛି ଖାଇନି ଏକଥା ମୁଁ ଭୁଲିଗଲିଣି । ସେମାନଙ୍କର ଥାନା କାମ ଚାଲିଚି । ଆମ କଥା କେହି ବୁଝୁ ନାହାନ୍ତି । ଆଣ୍ଠୁଟେକି ଆଣ୍ଠୁ ଉପରେ ହାତ ଛନ୍ଦି ତା ଉପରେ ମୁହଁ ରଖି ବସିଚି । ଏତିକିବେଳେ ମୋ ମୁଣ୍ଡ ଉପରେ କିଏ ବାଡ଼ି କି ବେତରେ ଟୁକ୍ କରି ଆଘାତ କରିବାର ସୂଚନା ପାଇଲି । ମଥାଟେକି ଚାହିଁ ଦେଖିଲି, ଜଣେ ପୋଲିସ୍ ସବ୍‌ଇନସ୍‌ପେକ୍ଟର ମତେ ପଚାରିଲେ—କିରେ, କ'ଣ ପଢ଼ାପଢ଼ି କରୁଚୁ? ମୁଁ ମଥା ହଲେଇ ସମ୍ମତି ଜଣାଇଲି । ସେ କହିଚାଲିଚନ୍ତି ପାଠ ତ ପଢ଼ୁଚୁ! ବୋପା ଟଙ୍କାରେ ଏଠି ଆସି ରହି ଏ ଫାର୍ଣ୍ଣ ଲଗେଇଚୁ କାହିଁକି? ....ବୋପା କଥାଟା ଶୁଣି ମତେ କାନ୍ଦ ମାଡ଼ିଲା, ମୁଁ କିଛି କହିଲିନି । ସେ ପଚାରିଚାଲିଚନ୍ତି—କୋଉ ସ୍କୁଲରେ ପଢ଼ୁଚୁ, କୋଉଠି ରହୁଚୁ? ତାଙ୍କ କଥାରେ ଉତ୍ତର ଦେଲି । ଏତିକିବେଳେ କେହି ଜଣେ

ଗୋଟିଏ ଠୁଙ୍ଗାରେ କିଛି ଜଳଖିଆ ଆଣି ମୋ ପାଖରେ ରଖିଦେଇ କହିଲା—ନେ, ଖା । ଏମିତି ତୁ ତା କଥାରେ ମୋ ରାଗ ଆହୁରି ବଢ଼ିଗଲା । ମୁଁ ନ ଖାଇ ସେମିତି ମୁହଁ ତଳକୁ କରି ବସିଚି । ଟିକିଏ ପରେ ସ.ଇ. ପୁଣି ଆସିଲେ । ମୋ ମୁଣ୍ଡବାଳକୁ ଝିଙ୍କିଦେଇ କହିଲେ—କିରେ ଖାଉନୁ ? ମୁଁ କିଛି କହୁ ନ ଥାଏ । ସେ କହିଚାଲିଛନ୍ତି—ଜାଣିଚୁ ଏ ବଦମାସି ଢଙ୍ଗ ବାହାର କଲେ, ଏ ଯୋଉ ଦାମବାବୁ ଡି-ଏସ୍.ପି. ଅଛନ୍ତି, ତତେ ସିଧା ନେଇ ଆଜି ଜେଲ୍‌ରେ ଭର୍ତ୍ତି କରିଦେବ । କାଲି କଚେରିରେ ତୋର ବିଚାର ହେବ । ସେଇଠୁ ହଜାରିବାଗ କି ଭାଗଲପୁର ଜେଲ୍‌ରେ ଯାଇ ସଢ଼ୁଥିବୁ—ଛଅମାସ କି ବର୍ଷେ । ମୁଁ ହତାଶ ହୋଇ ପଡ଼ୁଥାଏ । ଏଠି ଯାହା ଯାହା ଘଟିଯାଉଚି ମୁଁ କିଛି କିଛି ବୁଝି ପାରୁ ନ ଥାଏ । ପ୍ରାୟ ଅଧଘଣ୍ଟାଏ ପରେ ମୋ ସମ୍ମୁଖରେ ଆସି ଠିଆ ହୋଇଗଲେ ଆମ ହଷ୍ଟେଲ ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀ ବୈଦ୍ୟନାଥ ତ୍ରିପାଠୀ । ତାଙ୍କ ଘର ଆମରି ଜଗତ୍‌ସିଂହପୁର କାଦୁଅପଡ଼ାରେ; ଆମ ଗାଁଠୁ ଖୁବ୍ ବେଶୀ ଦୂର ନୁହେଁ ତାଙ୍କୁ ଦେଖି ମୋ ଆଖି କାହିଁକି ଛଳ ଛଳ ହୋଇଗଲା । କହିଲେ - ହଇରେ, ପୁରୁଣାଗଡ଼ର ଶ୍ରେଷ୍ଠରାୟ ବଂଶର ପୁଅ ତୁ—ବାପା ତୋର ମରିଯାଇଚନ୍ତି—ତୋ ଅଜା ଦୁନିଆ ପଇସା ଖର୍ଚ୍ଚ କରି ତତେ ଆଣି ଏଠି ଛାଡ଼ିଯାଇଚନ୍ତି କ'ଣ ତୋର ଏଇ କୀର୍ତ୍ତି ଦେଖିବା ପାଇଁ ! ଏତିକି କହି ସେ ଥାନା ଭିତରକୁ ଗଲେ । ଟିକିଏ ପରେ ସ.ଇ.ଙ୍କ ସହ ପୁଣି ଆସିଲେ । ବୈଦ୍ୟନାଥ ବାବୁ କହୁଚନ୍ତି—ଆଜି ସେ ହଷ୍ଟେଲରେ କିଛି ଖାଇନି । ପୋଲିସବାବୁ କହିଲେ—ଏଡ଼େ ଜିଦ୍‌ଖୋର୍ ପିଲା, ତାକୁ ଜଳଖିଆ ଦିଆହୋଇଚି, ଛୁଇଁ ନାହିଁ····ବୈଦ୍ୟନାଥ ବାବୁ ପଚାରିଲେ—ମୁଁ ଏବେ ତାକୁ ହଷ୍ଟେଲକୁ ନେଇଯିବି ତ ?···· ହସି ହସି ସ.ଇ. କହିଲେ—ହଁ ଆଜ୍ଞା ନେଇଯାଆନ୍ତୁ । ଘୋଡ଼ାଗାଡ଼ିରେ ବସି ବୈଦ୍ୟନାଥ ବାବୁଙ୍କ ସଙ୍ଗରେ ହଷ୍ଟେଲକୁ ଆସିଲି ।

## ସୁରେନ୍ଦ୍ର ଦ୍ୱିବେଦୀ, ସୁରେନ୍ଦ୍ର ପଟ୍ଟନାୟକ ଓ ବିନୋଦ କାନୁନ୍‌ଗୋ

ସେଇଦିନ ରାତି—ନିଦ ତ ହେବାର କଥା ନୁହେଁ । ମୁଁ ବସି ଭାବୁଥାଏ । ଆମ ଘର ଆଉ ଦେଶର ଅବସ୍ଥା କଥା । ଏତିକିବେଳେ ହଠାତ୍ ମୋର ମନେ-ପଡ଼ିଗଲା ରେଭେନ୍‌ସା କଲିଜିଏଟ୍ ସ୍କୁଲ ଦଶମ ଶ୍ରେଣୀର ତିନିଜଣ ବିଚକ୍ଷଣ ଛାତ୍ରଙ୍କ କଥା—ଶ୍ରୀ ବିନୋଦ କାନୁନ୍‌ଗୋ, ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ଓ ଶ୍ରୀ ସୁରେନ୍ଦ୍ରନାଥ ପଟ୍ଟନାୟକ । ସେମାନେ ସବୁବେଳେ କ୍ଲାସ୍‌ର ପ୍ରଥମ ତିନୋଟି ସ୍ଥାନ ଅଧିକାର କରି ଆସୁଥିଲେ । ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ଇଏ ସମସ୍ତେ ତ ପ୍ରଥମ ଶ୍ରେଣୀରେ ନିଶ୍ଚୟ ପାଶ୍ କରିବେ, ତାଙ୍କ ଭିତରୁ କେହି ଜଣେ ସ୍ୱର୍ଣ୍ଣପଦକ

ଲାଭ କରିବା ନିଶ୍ଚିତ । ତିନିଜଣଙ୍କର ଭବିଷ୍ୟତ ଏକାନ୍ତ ଉଜ୍ଜ୍ୱଳ ତଥା ଲୋଭନୀୟ । କିନ୍ତୁ ଓଡ଼ିଶାର ଏଇ ତିନୋଟି ରତ୍ନ ଏ ସବୁକୁ ଜଳାଞ୍ଜଳି ଦେଇ ପଢ଼ା ଛାଡ଼ି କଂଗ୍ରେସରେ ଯୋଗ ଦେଲେ । ଏଇଠି ମୁଁ ହଠାତ୍ ଉତ୍ତେଜିତ ହୋଇପଡ଼ି ଭାବିଲି, ଏଭଳି ତିନୋଟି ରତ୍ନ ଯଦି ଭବିଷ୍ୟତ କଥା କିଛି ନ ଭାବି ଦେଶସେବା ପାଇଁ ଜୀବନୋତ୍ସର୍ଗ କରିଦେଲେ, ତେବେ ମୁଁ ବା କି ଛାର, ମୁଁ କାହିଁକି ଥାନାରୁ ସେଇଠୁ ଜେଲ୍‌କୁ ନ ଯାଇ ବୈଦ୍ୟନାଥବାବୁଙ୍କ କଥା ମାନି ହଷ୍ଟେଲ୍‌କୁ ଫେରିଆସିଲି । ଉତ୍ତେଜନାରେ ଦେହ ଥରୁଥାଏ । ସେଇ ମୁହୂର୍ତ୍ତରେ ମୋ' ମନ ଭିତରେ ଜାଗିଉଠିଲା ମୁଁ ମାତ୍ର ବାରବର୍ଷ ବୟସରେ ପିତୃହୀନ ହେବାର ସେଇ କରୁଣ ଚିତ୍ର—ପୁଣି ମୋ' ଆଖି ସାମ୍‌ନାରେ ଭାସି ଉଠିଲା ମୋର ଅସହାୟା ବିଧବା ମା', ଦୁଇଟି ଅବିବାହିତା ଭଉଣୀ ଓ ଗୋଟିଏ ସାନଭାଇର ମୁହଁ । ମନେ କାନ୍ଦ ମାଡ଼ିଲା—ମୋର ଠିକ୍ ମନେପଡ଼ୁଚି କେମିତି ତକିଆରେ ମୁହଁମାଡ଼ି ମୁଁ କାନ୍ଦି କାନ୍ଦି ଶୋଇପଡ଼ିଲି ।

ଏଇ ତିନିଜଣ ମେଧାବୀ ଛାତ୍ର ସୁରେନ୍ଦ୍ର ଦ୍ୱିବେଦୀ, ସୁରେନ୍ଦ୍ର ପଟ୍ଟନାୟକ ଓ ବିନୋଦ କାନୁନ୍‌ଗୋ ଆଉ ଶିକ୍ଷା କ୍ଷେତ୍ରରେ ପ୍ରବେଶ ନ କରି, ଯେତିକି ଶିକ୍ଷାଲାଭ କରିଥିଲେ ତାର ଉପଯୁକ୍ତ ସଦୁପଯୋଗ କରି ଭବିଷ୍ୟତରେ ସ୍ୱ ସ୍ୱ କ୍ଷେତ୍ରରେ ଅତୁଳନୀୟ ପ୍ରସିଦ୍ଧି ଲାଭ କରିପାରିଛନ୍ତି । ସୁରେନ୍ଦ୍ର ଦ୍ୱିବେଦୀ ହେଲେ ଜଣେ ଫ୍ରିଲାନ୍‌ସ ସାମ୍ବାଦିକ, କେବଳ ଓଡ଼ିଶା ବା ଭାରତବର୍ଷ ନୁହେଁ ଆନ୍ତର୍ଜାତିକ କ୍ଷେତ୍ରରେ ମଧ୍ୟ ସେ ଜଣେ ସାର୍ଥକ ସାମ୍ବାଦିକ ଭାବେ ଯଶସ୍ୱୀ ହୋଇପାରିଛନ୍ତି । ସେ ଜଣେ ସାମ୍ବାଦିକ ବା ରିପୋର୍ଟର, କିନ୍ତୁ ତାଙ୍କର ଟାଇପ୍ ମେସିନ୍ ନ ଥିଲା । ମୁଁ ସେତେବେଳେ କଟକ ଜିଲ୍ଲାବୋର୍ଡ଼ ଅଫିସ୍‌ରେ ଟାଇପିଷ୍ଟ ଥିଲି । କଟକ ଜିଲ୍ଲାବୋର୍ଡ଼ ତ ସରକାରୀ ଅଫିସ୍ ନୁହେଁ, ଏକ ସ୍ୱାୟତ୍ତଶାସନ ଅନୁଷ୍ଠାନ । ଶାସନଭାର କଂଗ୍ରେସ ହାତରେ ଥାଏ । ସୁରେନ୍ଦ୍ର ଦ୍ୱିବେଦୀ ଜଣେ କଂଗ୍ରେସ ପ୍ରେମୀ ବ୍ୟକ୍ତି । ଟାଇପ୍ କରିବା ପାଇଁ ତାଙ୍କର ଅସୁବିଧା କଥା ଜାଣି, ଦରକାର-ବେଳେ ସେ ଟାଇପ୍ କରିବା ପାଇଁ ମୁଁ ତାଙ୍କୁ ମୋ' ଟାଇପ୍ ମେସିନ୍ ଛାଡ଼ିଦିଏ । ଯେତେ ସମୟ ସେ ସେଠି ରୁହନ୍ତି, ସେଥିରେ ମୁଁ ତାଙ୍କ ଜ୍ଞାନ ପ୍ରତିଭା ଓ ବିଦ୍ୟା ବୁଦ୍ଧିର ପରିଚୟ ପାଇ ମୁଗ୍ଧ ହୋଇପଡ଼ୁଥିଲି । ମୋ' ପ୍ରତି ତାଙ୍କର ଶ୍ରଦ୍ଧା, ସ୍ନେହ ଓ ସୁସମ୍ପର୍କ ଏବେ ମଧ୍ୟ ଅତୁଟ ରହିଚି ।

ନଗରପୁରର ଶ୍ରୀଯୁକ୍ତ ସୁରେନ୍ଦ୍ର ପଟ୍ଟନାୟକ ଥିଲେ ଆଜୀବନ ଜଣେ କଂଗ୍ରେସ କର୍ମୀ ଓ ନେତା । ସେତିକି ନୁହେଁ, ସେ ଜଣେ ବିଚକ୍ଷଣ ଓ ବୁଦ୍ଧିମାନ

କୃଟନୀତିଜ୍ଞ ଥିଲେ ଓ ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ସିଂଦେଓଙ୍କ ମନ୍ତ୍ରିମଣ୍ଡଳରେ ରାଜସ୍ୱ ବିଭାଗର କ୍ୟାବିନେଟ୍ ମନ୍ତ୍ରୀ ଥିଲେ । ସେ ବର୍ତ୍ତମାନ ପରଲୋକରେ ।

ଶ୍ରୀ ବିନୋଦ କାନୁନ୍‌ଗୋ ଥିଲେ ଏକ ଅନନ୍ୟ ସାଧାରଣ ବ୍ୟକ୍ତିତ୍ୱର ଅଧିକାରୀ । ବହୁ ଚେଷ୍ଟା ଓ ପ୍ରଚେଷ୍ଟା କରି ମଧ୍ୟ ଅନେକ ଦିନ ଧରି ମୁଁ ତାଙ୍କର ଦର୍ଶନ ଓ ପ୍ରତ୍ୟକ୍ଷ ପରିଚୟ ପାଇପାରି ନ ଥିଲି । ମହାତ୍ମାଗାନ୍ଧୀଙ୍କ ହରିଜନ ଯାତ୍ରା ପରେ ଶ୍ରୀଯୁକ୍ତ କାନୁନ୍‌ଗୋଙ୍କ ଲିଖିତ ଗାନ୍ଧିଜୀଙ୍କ ଉତ୍କଳ ପଦଯାତ୍ରା ଶୀର୍ଷକ ପୁସ୍ତକ ଖଣ୍ଡିକ ତାଙ୍କୁ ସମଗ୍ର ଉତ୍କଳରେ ପରିଚିତ କରେଇ ଦେଲା । ସେଇ ପୁସ୍ତକଟିରେ ଯେଉଁ ଭାଷାର ଅବତାରଣା ସେ କରିଚନ୍ତି ତାହା ବିନୋଦ କାନୁନ୍‌ଗୋ ଭାଷା ରୂପେ ପରିଚିତ । କ୍ରମେ ତାଙ୍କ ସହିତ ମୋର ପରିଚୟ ହେଲା । ସେ ଦିନର କଥା— (୧୯୫୭/୫୮ ମସିହା) ମୁଁ ବେତାର କେନ୍ଦ୍ରରେ ନିଯୁକ୍ତି ପାଇଲିଣି । ସେଦିନ ନିମଚଉଡ଼ି ଛକରେ ଆମ ଦୁହିଁଙ୍କର ସାକ୍ଷାତ ହେଲା । ଏଣୁ ତେଣୁ କିଛି କଥାବାର୍ତ୍ତା ପରେ ସେ କହିଲେ ତମେ ଆସ ମୋ' ସହିତ । ସେ ନିମଚଉଡ଼ି ଛକର ଗୋଟିଏ ଦି' ମହଲା କୋଠାରେ ରହୁଥା'ନ୍ତି । ସେଦିନ କିନ୍ତୁ ସେ ମତେ ରାସ୍ତା ଏ ପାଖରେ ଥିବା ବଲାଇ ପାଲିତ୍‌ଙ୍କ କୋଠାର ତଳ ମହଲାର ଗୋଟିଏ କୋଠରିକୁ ନେଇଗଲେ । ସମସ୍ତ କୋଠରିରେ ଗୋଟିଏ ଚୌକି, ଗୋଟିଏ ଷ୍ଟେଟ ଟେବୁଲ ସହିତ ଆଉ ଚାରି ପାଞ୍ଚୋଟି ଲମ୍ୱାବେଞ୍ଚ ପଡ଼ିଥାଏ ଓ ପ୍ରତ୍ୟେକ ବେଞ୍ଚରେ ଭିନ୍ନ ଭିନ୍ନ ସ୍ଥାନରେ କେତୋଟି ଫାଇଲ୍ ରଖା ହୋଇଥାଏ । ମୁଁ କିଛି ବୁଝିପାରୁ-ନ ଥାଏ । ପଚାରିଲି—ଏଇଟା ତ କିଛି ଅଫିସ୍ ଘରପରି ଜଣା ପଡ଼ୁନାହିଁ ? ସଙ୍ଗେ ସଙ୍ଗେ ସେ ମତେ କହିଲେ—ନା ଏଇଟା ଅଫିସ୍‌ଗୃହ ନୁହେଁ, ଏଇ ଦେଖ—ଗୋଟିଏ ଫାଇଲ୍ ଖୋଲି ମତେ ଦେଖେଇଲେ । ତଥାପି ମୁଁ କିଛି ବୁଝିପାରିଲି ନାହିଁ । ପ୍ରଶ୍ନବାଚକ ଦୃଷ୍ଟିରେ ତାଙ୍କ ମୁହଁକୁ ଚାହିଁଲି । ଟିକିଏ ହସି ମୋତେ ସେ କେବଳ ଗୋଟିଏ ଶବ୍ଦ କହିଲେ—ଏନ୍‌ସାଇକ୍ଲୋପେଡ଼ିଆ । ସତେ ଯେମିତି ମୁଁ ଆକାଶରୁ ପଡ଼ିଲି । ରହି ରହି କହିଲି ଏନ୍‌ସାଇକ୍ଲୋପେଡ଼ିଆ ? ଆପଣ ଏନ୍‌ସାଇକ୍ଲୋପେଡ଼ିଆ ··· ମୋ' କଥା ସିଏ ପୂରଣ କଲାପରି ଯୋଡ଼ହସ୍ତରେ କହିଲେ—ହଁ, ମୁଁ ଏନ୍‌ସାଇକ୍ଲୋପେଡ଼ିଆରେ ହାତ ଦେଇଚି—ଓଡ଼ିଆ ବିଶ୍ୱକୋଷ । ସେତେବେଳେ ଏନ୍‌ସାଇକ୍ଲୋପେଡ଼ିଆ କହିଲେ ଆମେ ବୁଝୁଥିଲୁ ଏନ୍‌ସାଇକ୍ଲୋପେଡ଼ିଆ ବ୍ରିଟାନିକା । ଇଂରାଜୀ ଭାଷାର ଏଇ ଗ୍ରନ୍ଥଟି ବହୁ ପ୍ରସିଦ୍ଧି ଲାଭ କରିଛି । ପୁଣି ମୁଁ ଯାହା ଜାଣିଥିଲି ସେ ପର୍ଯ୍ୟନ୍ତ ଭାରତରେ କେବଳ ମରାଠୀ ଭାଷାରେ ସେମାନେ ତାଙ୍କର ବିଶ୍ୱକୋଷ ସଙ୍କଳନ ସମ୍ପୂର୍ଣ୍ଣ କରିଛନ୍ତି । ବଙ୍ଗଳା ଭାଷାରେ କାମ-ଚାଲିଥାଏ—ଅଥଚ ଏଠି ବିନୋଦବାବୁ ମତେ କହୁଚନ୍ତି ସେ ଓଡ଼ିଆ ବିଶ୍ୱକୋଷ

ସଙ୍କଳନ ଆରମ୍ଭ କରିଚନ୍ତି । ମୁଁ ଏଠି ତାଙ୍କ ପାଖରେ ବସିଚି, ମତେ ଗୁଁ' ଖୁଆଇବାକୁ ଗୁହିଁଥିଲେ ଯେମିତି ସେ କହୁଥା'ନ୍ତେ—"ଗୋପାଳବାବୁ କପେ ଗୁଁ' ହେଉ"—ସେଇ ଢଙ୍ଗରେ ସେ ଗୋଟାଏ ଏତେ ବଡ଼ କଥା ମତେ କହିଲେ । ନ ହେଲା, କଥାରେ ତାଙ୍କର ଦାମ୍ଭିକତା ନ ଥାଉ, ପ୍ରୌଢ଼ୀ କି ବଡ଼ିମା ନ ଥାଉ—ଏତେ ବିରାଟ ଗୋଟାଏ ପ୍ରୋଜେକ୍ଟରେ ହାତ ଦେଇଚନ୍ତି, ସେଥିପାଇଁ ତାଙ୍କ କଥାରେ ଅନ୍ତତଃ କିଛିଟା ଆତ୍ମପ୍ରସାଦର ପ୍ରଲେପ ତ ରହିପାରିଥା'ନ୍ତା ! କିନ୍ତୁ ଏ ସମସ୍ତ କମ୍ପ୍ଲେକ୍ସକୁ ସେ ଦୁଇ ହାତରେ ଆଡ଼େଇ ଦେଇ ମତେ କଥାଟା ସିଧାସଳଖ କହିପକାଇଲେ । ଏକଥା ଆଜି ମୁଁ ସ୍ୱୀକାର କରୁଚି ଯେ, ସେଦିନ ବଡ଼ ସନ୍ଦିଗ୍ଧ ଚିତ୍ତରେ ବେଞ୍ଚ ଉପରେ ରଖାଯାଇଥିବା ଫାଇଲ୍ କେତୋଟିକୁ ଆଡ଼େଇ ଦେଖିଲି—ପ୍ରକୃତରେ ଏହା ଏକ ବିଶ୍ୱକୋଷ ରଚନାର ଉପକ୍ରମ । ଫାଇଲ୍ ଦେଖିସାରି ତାଙ୍କୁ ଗୁହିଁଲି, ମତେ ପଚାରିଲେ—କ'ଣ ଭାବୁଚ, ମୁଁ ପାରିବି ନାହିଁ ? · · · ତାଙ୍କର ଏତେ ବଡ଼ ଗୋଟାଏ କଥାର କି ଉତ୍ତର ମୁଁ ଦେବି, ସେ କଥା ଭାବିବାର ସମୟ ମତେ ଆଉ ନ ଦେଇ ସେ କହିଗୁଲିଚନ୍ତି—ତୁମେ ହୁଏତ ଭାବୁଥିବ, ଏଥିପାଇଁ ମୋ' ହାତରେ ସମୟ ଆଉ ସମ୍ବଳ · · · ଏଇଠି ତାଙ୍କ କଥାରେ ବାଧାଦେଇ ମୁଁ କହିଲି—ମୁଁ ଠିକ୍ ଏଇ କଥାଟି ଆପଣଙ୍କୁ କହିବାକୁ ଯାଉଥିଲି । ସମୟ ଓ ସମ୍ବଳକୁ ଅପେକ୍ଷା କଲେ କେହି କେବେ କିଛି କରିପାରିବେ ନାହିଁ । ସେଥିପାଇଁ ମୁଁ ଆପଣଙ୍କୁ କେବଳ ଏଇ କଥାଟି କହୁଚି ଯେ, ଆପଣ· · ·ପାରିବେ !! · · · ମୋ' ମୁହଁରୁ "ପାରିବେ" ଏଇ କଥାଟା ଶୁଣିବାପାଇଁ ସେ ହୁଏତ ପ୍ରସ୍ତୁତ ନ ଥିଲେ । ଏହା ଅସ୍ୱାଭାବିକ ମଧ୍ୟ ନୁହେଁ । ମୋ' କଥା ଶୁଣି ତାଙ୍କ ମନରେ ଯେଉଁ ଚିନ୍ତାର ଉଦ୍ରେକ ହୋଇଥିଲା, ସେଇଥିରୁ ଖିଅ ଟାଣି ମୁଁ କହିଲି—ମୁଁ କହୁଚି ଆପଣ ପାରିବେ । ଏ କଥାଟା ଆପଣଙ୍କୁ କହିବା ପାଇଁ ହୁଏତ କୌଣସି ଯୋଗ୍ୟତା ମୋର ନାହିଁ, ଆଉ ଆପଣ ଜାଣନ୍ତି, ଆପଣଙ୍କୁ ସନ୍ତୁଷ୍ଟ କରିବା ପାଇଁ ଛଳନାର ଆଶ୍ରୟ ନେଇ ଏକଥା ମୁଁ କହିପାରିବିନି । ଏଇ ନିମଚଉଡ଼ି ଛକରୁ ରଘୁନାଥ ଟ୍ରେନିଂ କଲେଜ ଛକଯାଏ ଏଇ ଯେଉଁ ଗଳିଟି ଯାଇଚି ପୂର୍ବରୁ ତାର ନାମ ଥିଲା—ସାହେବ୍‌ଜାଦା ବଜାର । ବର୍ତ୍ତମାନ ଏଇ ଗଳିର ନାମ ଭାଷାକୋଷ ଲେନ୍ ।····"ଭାଷାକୋଷ" ଏଇ ଶବ୍ଦଟି ମୁଁ ଉଚ୍ଚାରଣ କଲି ପରେ ପରେ ବିନୋଦବାବୁଙ୍କ ସହିତ ମୋର କଥାବାର୍ତ୍ତା ସେଇଠି ଅଟକିଗଲା । ମୋ ସ୍ମୃତିପଟରେ ଗୁଞ୍ଜରି ଉଠିଲା ତୃତୀୟ ଦଶକର ସେଇ ଭାଷାକୋଷର କାହାଣୀ;

**ଭାଷାକୋଷ ବିଶ୍ୱକୋଷ**

ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପ୍ରହରାଜ—ଘର କଟକ ଜିଲ୍ଲା କନ୍ଦରପୁର ସେପାଖ ସିଦ୍ଧେଶ୍ୱରପୁର—ପୈତୃକ ପଣଚଣ ଜମିଦାର, କିନ୍ତୁ ଏବେ କଟକ ସାହେବ୍‌ଜାଦା ବଜାରରେ ରହଣି—ପେଶା ଓକିଲାତି । ମାତ୍ର ଏବେ ଅର୍ଥାତ୍‌ ତୃତୀୟ ଦଶକରେ ଓକିଲାତିକୁ ଜଳାଞ୍ଜଳି ଦେଇ ଓଡ଼ିଆ ଭାଷାକୋଷ ସଙ୍କଳନରେ ନିଜକୁ ଉତ୍ସର୍ଗୀକୃତ କରେଇଦେଇଥାନ୍ତି । ଏଇ ଭାଷାକୋଷର ନାମ ଥିଲା— ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ । ପ୍ରଥମ ପୃଷ୍ଠାରେ ଏଇ ନାମ ତଳକୁ ଇଂରାଜୀରେ ଲେଖା ଥିଲା—A lexicon of the Oriya language—ଏ ଲେକ୍‌ସିକନ୍‌ ଶବ୍ଦଟିର ଓଡ଼ିଆ ଭାଷାନ୍ତର ହେଲା—ଗୋଟିଏ ଶବ୍ଦର ଇତିହାସ ସମ୍ବଳିତ ଅର୍ଥ । ଏହା ସାତଖଣ୍ଡରେ ସମାପ୍ତ । ପ୍ରତ୍ୟେକ ଖଣ୍ଡର କଳେବର ରୟାଲ ଆକାରରେ ହଜାର ପୃଷ୍ଠାରୁ ଅଧିକ— । ଏଇ ବିରାଟ ଗ୍ରନ୍ଥର ମୁଦ୍ରଣ ଓ ପ୍ରକାଶନ ତତ୍‌କାଳୀନ କୌଣସି ପୁସ୍ତକ ବ୍ୟବସାୟୀଙ୍କ ପକ୍ଷରେ ସମ୍ଭବ ନ ଥିଲା । ସେବେଳର ଓଡ଼ିଶା ଗଡ଼ଜାତର ରାଜାମହାରାଜାମାନେ ଏଥିପାଇଁ ଓଡ଼ିଶାର ଶ୍ରୀଯୁକ୍ତ ପ୍ରହରାଜଙ୍କୁ ସାହାଯ୍ୟାର୍ଥେ ଆଗଭର ହେଇ ଆସିଥିଲେ । ପ୍ରଥମ ଖଣ୍ଡଟିର ପ୍ରକାଶନର ସମସ୍ତ ଆର୍ଥିକ ସାହାଯ୍ୟ ମୟୂରଭଞ୍ଜର ତରୁଣ ଶାସକ ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜ ବହନ କରିଥିଲେ । ଏଇ ମହାନ ଆଦର୍ଶକୁ ସ୍ମରଣୀୟ କରି ରଖିବା ପାଇଁ ତାଙ୍କରି ନାମରେ ଭାଷାକୋଷର ନାମକରଣ କରାଯାଇଚି । ମୋର ସୌଭାଗ୍ୟ ଏଇ ଭାଷାକୋଷ ସଙ୍କଳନର ପ୍ରକ୍ରିୟା ଯେପରି ଭାବରେ ଚାଲିଥିଲା, ମୁଁ ତାହାର ଜଣେ ପ୍ରତ୍ୟକ୍ଷଦର୍ଶୀ ହେଇପାରିଥିଲି । ସାହେବ୍‌ଜାଦା ବଜାରସ୍ଥ ତାଙ୍କ ବାସଭବନର ଏକ ପ୍ରଶସ୍ତ କୋଠରି ଓ ତତ୍‌ସଂଲଗ୍ନ ବାରନ୍ଦା (ଏଇ ବାରନ୍ଦା ସଂଲଗ୍ନ ହତାରେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ତାଙ୍କର ବହୁ ପ୍ରଶଂସିତ ରସ ନାଟକ କିଶୋରଚନ୍ଦ୍ରାନନ୍ଦ ଚମ୍ପୂ ଏକାଦିକ୍ରମେ ବହୁରଜନୀ ଅଭିନୀତ କରାଇ ଉତ୍କଳ ସାହିତ୍ୟ ସମାଜ ଦ୍ୱାରା କବିଚନ୍ଦ୍ର ଉପାଧିରେ ଭୂଷିତ ହେଇଥିଲେ ।) ଶ୍ରୀଯୁକ୍ତ ପ୍ରହରାଜଙ୍କ ଏଇ କୋଠରି ଓ ବାରନ୍ଦାରେ ତାଙ୍କର ଭାଷାକୋଷ ସଙ୍କଳନ କାର୍ଯ୍ୟ ସମାହିତ ହେଉଥାଏ । ମୁଁ କାଠଯୋଡ଼ି ହଷ୍ଟେଲରୁ ଏଇ ସାହେବ୍‌ଜାଦା ବଜାର ରାସ୍ତାଦେଇ କଟକ ଟାଉନ୍ ଭିକ୍ଟୋରିଆ ସ୍କୁଲକୁ ଯାଏ । ସ୍କୁଲରୁ ଫେରିଲାବେଳେ ଓ ଅନ୍ୟ ଛୁଟିଦିନ ଶ୍ରୀଯୁକ୍ତ ପ୍ରହରାଜଙ୍କ ବାସଭବନକୁ ଯାଇ ଭାଷାକୋଷ ସଙ୍କଳନ କାର୍ଯ୍ୟକୁ ନିରୀକ୍ଷଣ କରେ । ନବମ ଶ୍ରେଣୀର ଛାତ୍ର ମୁଁ, କିଛି ବୁଝେ, କିଛି ବୁଝିପାରେ ନାହିଁ । ଏହା ୧୯୩୧ ମସିହାର କଥା । କିନ୍ତୁ ଶ୍ରୀଯୁକ୍ତ ପ୍ରହରାଜଙ୍କ ସହିତ ତାଙ୍କୁ ସାହାଯ୍ୟ କରୁଥିବା ପଣ୍ଡିତମାନଙ୍କର କର୍ମବ୍ୟସ୍ତତା ଦେଖି ମୁଁ ମୁଗ୍ଧ ଓ ବିସ୍ମିତ ହେଇପଡ଼ିଥିଲି । ଏଇତ ସେଦିନ

ଦେଖିଲି ଚଉରାଅଶୀ ବୟସ୍କ ପଣ୍ଡିତ ଲମ୍ବୋଦର କର ରାସ୍ତାରେ ଗ୍ଲଚନ୍ତି । ସେ ମଧ୍ୟ ଏଇ ଭାଷାକୋଷ ସଙ୍କଳନରେ କର୍ମରତ ଥିଲେ ।···ରେଭେନ୍‌ସା କଲିଜିଏଟ୍ ସ୍କୁଲର ହେଡ୍‌ପଣ୍ଡିତ ଶ୍ରୀଯୁକ୍ତ କୁଳମଣି ଦାଶ ତାଙ୍କର ଅସାଧାରଣ ପାଣ୍ଡିତ୍ୟ ଯୋଗୁଁ ବିଦ୍ୟାଳୟ ତଥା ବହୁ ବିଶିଷ୍ଟ ବ୍ୟକ୍ତିଙ୍କର ଶ୍ରଦ୍ଧା ଓ ସମ୍ମାନର ପାତ୍ର ହୋଇପାରିଥିଲେ । କବିସୂର୍ଯ୍ୟ ବଳଦେବ ରଥଙ୍କ ଜୀବନୀ ସହ ତାଙ୍କ ରଚିତ ଅମରକୃତି କିଶୋର ଚନ୍ଦ୍ରାନନ ଚମ୍ପୂର ସମ୍ପାଦନକାରୀ ପଣ୍ଡିତ ଶ୍ରୀଯୁକ୍ତ ଦାଶ ପ୍ରହରାଜଙ୍କ ଭାଷାକୋଷ ସଙ୍କଳନରେ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ·· ଶ୍ରୀଯୁକ୍ତ ପ୍ରହରାଜ ଥିଲେ ଜଣେ ସୁଲେଖକ । ଲୋକକଥା ବା କାହାଣୀ ସଂଗ୍ରହରେ ସେ ବିଶେଷ ଭାବରେ ଆଗ୍ରହୀ ଥିଲେ । ବହୁବର୍ଷ ତଳେ ତାଙ୍କ ସଂକଳିତ ଉତ୍କଳ କାହାଣୀ ଏବେ ମଧ୍ୟ ସଜୀବ ରହିଛି । ପୂର୍ବରୁ କହିଛି ଗଡ଼ଜାତର ବହୁ ରାଜାମହାରାଜା ଭାଷାକୋଷ ସଙ୍କଳନ ପ୍ରତି ବିଭିନ୍ନ ଦିଗରୁ ଆଗ୍ରହ ପ୍ରକାଶ କରୁଥିଲେ । ପୁଣି ସେଇ ସଙ୍ଗେ ସଙ୍ଗେ ଗଡ଼ଜାତର କେହି କେହି ଶାସନକର୍ତ୍ତା ବା ରାଜା ଭାଷାକୋଷ ସଙ୍କଳନ ପ୍ରତି ଅଶୋଭନୀୟ ଆଚରଣ ପ୍ରଦର୍ଶନ କରିଥିଲେ । ଏଥିରେ ଶ୍ରୀଯୁକ୍ତ ପ୍ରହରାଜ ବ୍ୟଥିତ ଓ ଅପମାନିତ ବୋଧ କରିବା ସ୍ୱାଭାବିକ । ଏହାପରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ସମ୍ପାଦିତ ମାସିକ ସାହିତ୍ୟ ପତ୍ରିକା "ନବଭାରତ"ରେ ତାଙ୍କର ବ୍ୟଙ୍ଗଧର୍ମୀ ରଚନା "ସ୍ୱପ୍ନରେ ରାଜଯୋଗ" କ୍ରମାନ୍ୱୟରେ ପ୍ରକାଶିତ ହେଲା । ଏଇ ଲେଖାଟି ପାଠକମାନଙ୍କ ଦ୍ୱାରା ବିଶେଷ-ଭାବରେ ଆଦୃତ ହେବା ସଙ୍ଗେ ସଙ୍ଗେ ସୁଧୀ ସମାଲୋଚକମାନଙ୍କ ଶୁଭଦୃଷ୍ଟି ଆକର୍ଷଣ କରିପାରିଥିଲା । ସ୍ୱପ୍ନରେ ରାଜଯୋଗ ଏଇ ନାମକରଣରୁହିଁ ଲେଖାଟିର ବିଷୟବସ୍ତୁର ରୂପରେଖ ସ୍ପଷ୍ଟ ସୂଚିତ ହୋଇପଡ଼େ ।···ଏତିକବେଳେ, ଯେତେ-ବେଳେ ସମସ୍ତ ଓଡ଼ିଆ ଜାତି ଭାଷାକୋଷର ପ୍ରକାଶନ ପ୍ରତି ଆଗ୍ରହ ଓ ଉତ୍ସାହର ସହିତ ଗୃହିଁରହିଛି, ସେତେବେଳେ ଏଇ ମହାର୍ଘ ଗ୍ରନ୍ଥଟି ଏକ ଅଚିନ୍ତନୀୟ ବାଧା-ବିଘ୍ନର ସମ୍ମୁଖୀନ ହେଲା । ତରୁଣ ଲେଖକ ଓ ସମାଲୋଚକ ଶ୍ରୀ ଗୋଦାବରୀଶ ମହାପାତ୍ରଙ୍କ (ପରବର୍ତ୍ତୀ କାଳରେ 'ନିଆଁଖୁଣ୍ଟା' ପତ୍ରିକାର ସମ୍ପାଦକ ରୂପେ ଖ୍ୟାତ) ଭାଷାକୋଷ ଉପରେ ଏକ ଅତି ଉଗ୍ର ବ୍ୟଙ୍ଗାତ୍ମକ ସମାଲୋଚନା ନବଭାରତରେ କ୍ରମାନ୍ୱୟରେ ପ୍ରକାଶିତ ହେବାକୁ ଲାଗିଲା । ଭାଷାକୋଷରେ ଓଡ଼ିଆ ଭାଷାର ନିପଟ ଗ୍ରାମାଞ୍ଚଳଠୁଁ ଆରମ୍ଭ କରି ଉଚ୍ଚ ଶିକ୍ଷାନୁଷ୍ଠାନମାନଙ୍କରେ ପ୍ରଚଳିତ ଓଡ଼ିଆ ଭାଷାର ସମସ୍ତ ଶବ୍ଦ ସ୍ଥାନ ପାଇଥିଲା । ଗ୍ରାମାଞ୍ଚଳରେ ପ୍ରଚଳିତ ଯେଉଁସବୁ ଶବ୍ଦ ଭାଷାକୋଷରେ ସ୍ଥାନ ପାଇଛି, ସେଥିରୁ କେତୋଟି ଶବ୍ଦ ମୁଁ ଏଠି ଉଦ୍ଧାର କରୁଛି । ଲକ୍ଷ୍ୟକରିବାର କଥା ସମଅର୍ଥବୋଧକ ଏକାଧିକ ଶବ୍ଦ ଏଠି ସ୍ଥାନ ପାଇଛି । ଏ ଶବ୍ଦଗୁଡ଼ିକ ହେଲା—ଅଇକା, ଅଇକ୍ଷଣି, ଅଇକ୍ଷଣିକା, ଅଇକ୍ଷିଣି, ଅଇକ୍ଷିଣିକା,

ଅଇଛୁଣି, ଅଇଛୁଣିକା, ଅଇଛୁକା, ଅଇଛୁଣି, ଅଇଛୁଣିକା, ଏଇକ୍ଷଣି, ଏଇକ୍ଷଣିକା, ଏଇକ୍ଷିଣି, ଏଇକ୍ଷିଣିକା, ଏଇଖଣି, ଏଇଖଣିକା,ଏଇଛୁଣି, ଏଇଛୁଣିକା, ଇତ୍ୟାଦି ଇତ୍ୟାଦି । ଏ ସମସ୍ତ ଶବ୍ଦର ଅର୍ଥ ହେଲା—"ବର୍ତ୍ତମାନ ବା ଏବେ" । ୧୯୩୧ ମସିହାରେ ପ୍ରକାଶିତ ଭାଷାକୋଷର ପ୍ରଥମ ଖଣ୍ଡରେ ସ୍ଥାନ ପାଇଥିବା ଏଇସବୁ ଶବ୍ଦମାନ ପଢ଼ି ମୁଁ ବିସ୍ମିତ ଅଭିଭୂତ ହୋଇପଡ଼ିବା ସଙ୍ଗେ ସଙ୍ଗେ ବେଶ୍ ଆମୋଦ ମଧ୍ୟ ଅନୁଭବ କରୁଥିଲି । ଗୋଦାବରୀଶ କେବଳ ତାଙ୍କ ସମାଲୋଚନାରେ ଆବଦ୍ଧ ନ ରହି ତାଙ୍କ ସମାଲୋଚନା ପ୍ରବନ୍ଧର ନାମକରଣ କଲେ "ଅର୍ଦ୍ଧଚନ୍ଦ୍ର ଦେଢ଼ିଆ ପାଲକୋଷ" ଯାହାକି ଶ୍ରୀ ପ୍ରହରାଜଙ୍କ ଭାଷାକୋଷର ଏକ ସାର୍ଥକ ନାମକରଣ "ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ"ର ଏକ ବ୍ୟଙ୍ଗ ବା ଅନୁକରଣ ।

ଗୋଦାବରୀଶଙ୍କ ସମାଲୋଚନାର ଏଭଳି ବ୍ୟଙ୍ଗାତ୍ମକ ନାମକରଣ ଓ ଭାଷାକୋଷର ବିରୋଧାତ୍ମକ ବିଷୟବସ୍ତୁ ସାଧାରଣ ପାଠକଠୁଁ ଆରମ୍ଭ କରି ବହୁ ବିଶିଷ୍ଟ ବ୍ୟକ୍ତିମାନଙ୍କ ଦୃଷ୍ଟି ଆକର୍ଷଣ କଲା । ସାଧାରଣ ପାଠକମାନେ ହୁଏତ ଏଥିରୁ ଆମୋଦଲାଭ କଲେ କିନ୍ତୁ ବିଶିଷ୍ଟ ବ୍ୟକ୍ତିମାନେ ଏଥିରେ ବ୍ୟଥିତ ହୋଇ ପଡ଼ିଲେ । ଏପରି ଅବସ୍ଥା ଉପୁଜିଲା ଯେ ଶ୍ରୀଯୁକ୍ତ ପ୍ରହରାଜ ତାଙ୍କ ସଙ୍କଳନ କାମରେ ଆଗେଇଯିବାକୁ ଭରସା ପାଇଲେ ନାହିଁ । ଏହି ପରିସ୍ଥିତିରେ କଟକ ସହରର ବିଶିଷ୍ଟ ବ୍ୟକ୍ତିମାନେ ନିଶ୍ଚିନ୍ତ ରହି ପାରିଲେ ନାହିଁ । ପ୍ରହରାଜଙ୍କ ଓଡ଼ିଆ ଭାଷାକୋଷ ଅସମ୍ପୂର୍ଣ୍ଣ ରହିବ ଏ କଥା ଜଣେ ସାଧାରଣ ଓଡ଼ିଆ ଲୋକ ବି କଳ୍ପନା କରିପାରିଲା ନାହିଁ । ବିଶିଷ୍ଟ ଆଡ଼ଭୋକେଟ୍ ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ, "ମୁକୁର" ପତ୍ରିକାର ସମ୍ପାଦକ ଓ ଉଦାରପନ୍ଥୀ ନେତା ଶ୍ରୀ ବ୍ରଜସୁନ୍ଦର ଦାସ, ଶିକ୍ଷାବିତ୍ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ପ୍ରଭୃତି କଟକସହରର ପ୍ରମୁଖ ନାଗରିକମାନଙ୍କର ପ୍ରଚେଷ୍ଟାରେ ଶ୍ରୀ ଗୋଦାବରୀଶ ମହାପାତ୍ର ଭାଷାକୋଷ ବିରୋଧରେ ଆଉ ଲେଖନୀ ଚାଳନା କଲେ ନାହିଁ । ଯଥା ସମୟରେ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ପ୍ରକାଶନ କାର୍ଯ୍ୟ ସମାପ୍ତ ହେଲା । ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜଙ୍କର ଏହି ଐତିହାସିକ ସାଧନା ପାଇଁ ସେ ତତ୍‌କାଳୀନ ରାୟବାହାଦୁର ଉପାଧିରେ ଭୂଷିତ ହେଲେ ।

ସେଦିନ କାମଚଳିଆ ଛକ ବଳାଇ ପାଲିତଙ୍କ ଡାଲମହଲା ଘରେ ବିନୋଦ ବାବୁଙ୍କ ସହିତ ତାଙ୍କର ପରିକଳ୍ପିତ ଏନ୍‌ସାଇକ୍ଲୋପେଡିଆ ପ୍ରସଙ୍ଗରେ କଥାବାର୍ତ୍ତା କଲାବେଳେ ଏହି ଗଳିର ନାମ କାହିଁକି ଭାଷାକୋଷ ଲେନ୍ ହେଲା ସେ କଥାଟି କହିଥିଲି । କିନ୍ତୁ ଭାଷାକୋଷ ଶବ୍ଦଟି ମୁଁ ଉଚ୍ଚାରଣ କଲାପରେ ବିନୋଦ ବାବୁଙ୍କ କଥାବାର୍ତ୍ତା ମୋର ସେଇଠି ଅଟକିଗଲା । ମୋ ସ୍ମୃତିପଟରେ ଗୁଞ୍ଜରି ଉଠିଲା

ତୃତୀୟ ଦଶକର ସେଇ ଷ୍ଟାମ୍ପକୋଷର କାହାଣୀ । ଏବେ ମୁଁ ସେ କାହାଣୀରୁ ମୁକ୍ତହୋଇ ବିନୋଦବାବୁଙ୍କ ଏନ୍‌ସାଇକ୍ଲୋପେଡିଆ ପ୍ରସଙ୍ଗକୁ ପୁଣି ଫେରିଯାଇ ତାଙ୍କୁ କହିଲି – ଏଇ ଷ୍ଟାମ୍ପକୋଷଲେନ୍‌ର ଏଇ ମୁଣ୍ଡରେ ଆପଣଙ୍କର ବିଶ୍ୱକୋଷ ବା ଏନ୍‌ସାଇକ୍ଲୋପେଡିଆର ଅସ୍ତମାରମ୍ଭ ହୋଇଛି । ଆଉ ଏଇ ଗଳିର ଶେଷ ପ୍ରାନ୍ତରେ ଥିଲା ଗୋପାଳ ପ୍ରହରାଜଙ୍କ ଷ୍ଟାମ୍ପକୋଷ କାର୍ଯ୍ୟାଳୟ । ତାଙ୍କ କର୍ମର ସମାପ୍ତି ଘଟିଚି, ଆଉ ଏକ ଉଜ୍ଜ୍ୱଳମୟ ସମ୍ଭାବନାକୁ ନେଇ ହୋଇଛି ଆପଣଙ୍କର ଏଇ ମହାନ୍ କର୍ମର ଆରମ୍ଭ ।···ଆପଣ ପାରିବେ ।

ଏହାପରେ ପ୍ରାୟ ତିରିଶି ପଇଁତିରିଶି ବର୍ଷ ପରର କଥା । ଜ୍ଞାନମଣ୍ଡଳ ସଙ୍କଳନ ପାଇଁ ବିନୋଦ ବାବୁ 'ପଦ୍ମଶ୍ରୀ' ସମ୍ମାନ ଲାଭକଲେ । ମୁଁ ଟେଲିଫୋନ୍ କଲି । ଆଉ କେହି ନୁହେଁ, 'ବିନୋଦ କାନୁନ୍‌ଗୋ' ପଦ୍ମଶ୍ରୀ ଉପାଧିରେ ଅଳଂକୃତ ହୋଇଛନ୍ତି ଏଥିରେ ତାଙ୍କୁ କି ଅଭିନନ୍ଦନ ବା ମୁଁ ଜଣାଇବି ! ଟେଲିଫୋନ୍‌ରେ କଥା ପ୍ରସଙ୍ଗରେ ମୁଁ କହିଲି—ଆଜି ଏଇ ତିଥିରେ ଗୋଟିଏ କଥା ମୁଁ ଆପଣଙ୍କୁ କହିବି । ଟିକିଏ ରହି ଈଷତ୍ ମୃଦୁ ଗଳାରେ କହିଲେ– ତିଥି ଆଉ କଥା ! ତାଙ୍କ ଇଙ୍ଗିତ ବୁଝିପାରି କହିଲି, ଶୁଣନ୍ତୁ—ସେଦିନ ନିମଚଉଡ଼ି ଛକରେ ଆମ ଦୁହିଁଙ୍କର ଭେଟ ହୋଇଥିଲା । ପୂର୍ବରୁ କୌଣସି ସୂଚନା ନ ଦେଇ ଆପଣ ମତେ ବଲାଇ ପାଲିତଙ୍କ ଘରକୁ ଡାକନେଲେ । ପ୍ରଶସ୍ତ ପରିଷ୍କାର କୋଠରୀ—ବେଞ୍ଚ ଉପରେ କେତୋଟି ଫାଇଲ୍ ! ମନେପଡ଼ୁଚି ? ଈଷତ୍ କମ୍ପିତ ଗଳାରେ କହିଲେ—ସତ କହୁଚ, ତୁମେ ଆଜି ଯଦି ମୋର ମନେପକେଇଦେଇ ନ ଥା'ନ୍ତ, ମୋ କର୍ମମୟ ଜୀବନର ଅତି ଶ୍ରେଷ୍ଠ, ଅଥଚ ମୋ ନିଜପାଇଁ ଅତି ବଡ଼ ଏଇ ଘଟଣାଟିକୁ ମୁଁ ହୁଏତ ଭୁଲିଯାଇଥା'ନ୍ତି । ଆଚ୍ଛା, ଗୋଟିଏ କାମ କରିପାରିବ ? ସେଦିନ ନିମଚଉଡ଼ି ଛକଠୁ ଆରମ୍ଭ କରି ବଲାଇ ବାବୁଙ୍କ ଘର ପର୍ଯ୍ୟନ୍ତ ଯାହା ଯାହା ଘଟିଥିଲା, ଯାହାସବୁ ତମେ ମତେ କହିଥିଲ, ସେ ସବୁକୁ ଖଣ୍ଡିଏ ଚିଠି ଆକାରରେ ପଠାଇ ପାରିବ ? ଟିକିଏ ଅଭିଭୂତ ହୋଇଯାଇ କହିଲି—କାହିଁକି ଏକଥା କହୁଚନ୍ତି ? ସଙ୍ଗେ ସଙ୍ଗେ ଉତ୍ତର ମିଳିଲା—ଏମିତି ଆଉ କିଛି ଚିଠି ଓ ଡକୁମେଣ୍ଟ ମୁଁ ପାଇଛି । ଏସବୁ ଯଥା ସମୟରେ ଜ୍ଞାନମଣ୍ଡଳରେ ସ୍ଥାନ ପାଇବ । ତମ ଚିଠି ଅପେକ୍ଷାରେ ରହିଲି । ଚିଠି ପାଇ ମତେ ଟେଲିଫୋନ୍ କଲେ—ଚିଠି ପାଇଚି, ଧନ୍ୟବାଦ । ଏତିକିବେଳେ ମୋ ମନ ଭିତରେ ଗୋଟିଏ ଭାବନା ଜାତହେଲା— ମଣିଷ ଯେତେବେଳେ ଯାହା କରେ, ସେ ଜାଣିକରି ହେଉ ବା ଅଜାଣତରେ ହେଉ, ସେଥିରୁ ତୃପ୍ତି ଖୋଜି ବସେ । ସେଦିନ ବିନୋଦବାବୁଙ୍କ ସହିତ

କଥାବାର୍ତ୍ତା ପରେ ଟେଲିଫୋନ୍ ରସିଭରଟା ରଖୁ ରଖୁ ମୁଁ ମନେ ମନେ କହିଉଠିଲି—ଆଜିଏ ଘଟଣାଟିରେ ମୁଁ ତୃପ୍ତ-ପରିତୃପ୍ତ ।

## ପ୍ରବାସୀ ବାଙ୍ଗଲା ସାହିତ୍ୟ ପାଠାଗାର

ହଁ, କ'ଣ ମୁଁ କହୁଥିଲି, ଊଣେଇଶିଶହ ତିରିଶି ମସିହା ଏପ୍ରିଲ ଛ'ତାରିଖ ଲବଣ ସତ୍ୟାଗ୍ରହ ଦିନ ଥାନାରୁ ଫେରି ହଷ୍ଟେଲରେ ସେଦିନ ରାତିରେ ମୁହଁମାଡ଼ି କାନ୍ଦି କାନ୍ଦି ଶୋଇପଡ଼ିଲି । ତା'ପରଦିନ ସକାଳ ମର୍ଣ୍ଣିଂ ସ୍କୁଲ—ଭରବରରେ ସ୍କୁଲକୁ ଗଲି । ସ୍କୁଲରୁ ଫେରିଲାବେଳେ ଦେଖିଲି ନିମଚଉଡ଼ି ଛକପାଖରେ ଗୋଟିଏ ଏକମହଲା କୋଠାଘର ଉପରେ ସାଇନ୍‌ବୋର୍ଡ଼ ଝୁଲୁଚି—"ପ୍ରବାସୀ ବାଙ୍ଗଲା-ସାହିତ୍ୟ ପରିଷଦ ପାଠାଗାର, କଟକ" । ପ୍ରଥମେ ପଢ଼ି ଟିକେ ଅଡ଼ୁଆରେ ପଡ଼ିଲି । ପୁଣି ଆଉଥରେ ପଢ଼ି ବୁଝିଲି—ଏହା ଏକ ବଙ୍ଗଳା ପୁସ୍ତକର ପାଠାଗାର । ଭିତରକୁ ଗଲି । ଦେଖିଲି—କେବଳ ବଙ୍ଗଳା ପୁସ୍ତକର ଏକ ବିରାଟ ଲାଇବ୍ରେରି । ଲାଇବ୍ରେରିୟାନଙ୍କଠୁଁ ବୁଝିଲି ମାସକୁ ଏକ ଅଣା ପଇସା ମେମ୍ବର ଫିସ୍ ଦେଲେ ପଢ଼ିବାକୁ ବହି ମିଳିବ । ପୂର୍ବରୁ ତ କହିଚି, ସେଇ ପ୍ରାକ୍ କିଶୋର କାଳରୁ ପଢ଼ିବାର ସ୍ପୃହା ମୋର ବହୁତ ବେଶି । କିନ୍ତୁ ବହି କାହିଁ ? ବିଶେଷତଃ ବଙ୍ଗଳା ବହି ମାତ୍ର ଦୁଇଖଣ୍ଡ ପଢ଼ିଛି । କୃତ୍ତିବାସ ରାମାୟଣ ଓ ବିଷକନ୍ୟା ଉପନ୍ୟାସ । ଏଠି ଏ ପାଠାଗାର ଭିତରେ ମୁଁ ଦେଖୁଚି ଏଠି ବଙ୍ଗଳା ବହିର ସମୁଦ୍ର । ଲାଇବ୍ରେରିଆନଙ୍କୁ ପଚାରିଲି ଏଠି କି କି ବହି ମିଳେ ? ସେ କହିଲେ ବେଶି ଉପନ୍ୟାସ—ଟେଗୋର୍‌ଙ୍କର ସବୁ କବିତା ବହି ମଧ୍ୟ ମିଳେ । ସଙ୍ଗେ ସଙ୍ଗେ ପଇସା ଦେଇ ମେମ୍ବର ହେଲି, କାର୍ଡ଼ ପାଇଲି । ଏହା ପରର ପ୍ରଶ୍ନ--କେଉଁ ବହି ପ୍ରଥମେ ନେବି ! ବଙ୍ଗଳା ବହି ବିଷୟରେ ମୋର କୌଣସି ଧାରଣା ନାହିଁ । ଗୋଟିଏ ଥାକରୁ ବହି ଖଣ୍ଡିଏ ଟାଣି ଆଣିଲି—ଏକ ଉପନ୍ୟାସ, ଯୁଗ୍ମଲେଖକ ପ୍ରେମେନ୍ ମିତ୍ର ଓ ଅଚିନ୍ତ୍ୟ ସେନ୍‌ଗୁପ୍ତ । ମୁଁ ଦୁଃଖିତ ଯେ ବହିଟିର ନାମ ସ୍ମରଣ ହେଉନାହିଁ । ତେବେ ଏକଥା ଠିକ୍ ଯେ, ବହିର ନାମଟିରେ ପ୍ରେମ ଶବ୍ଦଟି ରହିଚି । ସେଇଠି ଠିଆ ଠିଆ ବହିର ଭୂମିକାରୁ ଜାଣିଲି ଯେ, ଇଏ ଦୁହେଁ ହେଉଛନ୍ତି ଉପନ୍ୟାସଟିର ଯୁଗ୍ମଲେଖକ । କଲିକତା ବେତାର କେନ୍ଦ୍ରରେ ପ୍ରଚାର ପାଇଁ (ସେତେବେଳକୁ କଲିକତାରେ ବେତାର କେନ୍ଦ୍ର ସ୍ଥାପିତ ହେଲାଣି) ଏଇ ଦୁଇ ଲେଖକ ଗୋଟିଏ ବଡ଼ ଗଳ୍ପ ଲେଖିଥିଲେ । ଗଳ୍ପଟି ଶ୍ରୋତାମାନଙ୍କ ଦ୍ୱାରା ଆଦୃତ ହୋଇଥିଲା । ଏବେ ସେଇ ଗଳ୍ପଟି ଗୋଟିଏ ନାତିଦୀର୍ଘ ଉପନ୍ୟାସ ରୂପେ ପ୍ରକାଶ ପାଇଚି । ଉପନ୍ୟାସଟି ନେଇ ପଢ଼ିଲି । ବେଶ୍ ତୃପ୍ତ ହେଲି । ପରେ ଜାଣିଲି ଏ ଦୁଇ ଲେଖକ କାଳକ୍ରମେ ବଙ୍ଗଳା ଭାଷାରେ ଦୁଇବରିଷ୍ଠ ଲେଖକରୂପେ

ସମ୍ମାନ ଲାଭ କରିଛନ୍ତି । ପ୍ରେମେନ୍ ମିତ୍ର ତ ଜଣେ ଉଚ୍ଚକୋଟୀର କବି ଥିଲେ । ଲାଇବ୍ରେରୀରୁ ବଙ୍ଗଳା ବହିର ସ୍ରୋତ ଚାଲିଲା । କ୍ଲାସରେ ପଢ଼ା ହେଉଥିବାବେଳେ ମଧ୍ୟ ଲୁଚେଇକରି ଏସବୁ ବହି ପଢ଼ୁଥିଲି । ତେବେ ମୋର ପଢ଼ାପଢ଼ିରେ ମୁଁ ପ୍ରାୟ ଲକ୍ଷ୍ୟଭ୍ରଷ୍ଟ ହେଉନଥିଲି । ଏତିକବେଳେ ବଜାରକୁ ଓଡ଼ିଆ ବହି ଆସିଲା । କାହ୍ନୁଚରଣ ମହାନ୍ତିଙ୍କ "ବାଲିରଜା", ଉପେନ୍ଦ୍ର କିଶୋର ଦାସଙ୍କ "ମଲାଜହ୍ନ" ଓ ବୋଧହୁଏ ଗୋପାଳ ଚନ୍ଦ୍ର ଦାସଙ୍କ "ଝିମାଭୂସୁଁା" ଇତ୍ୟାଦି । ଓଡ଼ିଆରେ ବହି ପ୍ରକାଶିତ ହେଲା ସତ, କିନ୍ତୁ ଆମ ଛାତ୍ରମାନଙ୍କ ପାଇଁ କିଣିବା ପାଇଁ ଟଙ୍କା କାହିଁ ? ଓଡ଼ିଆ ପୁସ୍ତକ ସାଧାରଣ ଲାଇବ୍ରେରୀରେ ଗୋଟିଏ ସୁଦ୍ଧା ନାହିଁ । ଆମ ସ୍କୁଲ ଲାଇବ୍ରେରୀକୁ ଏସବୁ ବହି ଆସୁନଥାଏ । ଚୌଧୁରୀ ବଜାର ଭାରତୀ ପୁସ୍ତକାଳୟକୁ ବାରମ୍ବାର ଯାଇ ବହି ଦୁଇଟିର ନାମ ମତେ ବହୁତ ଆକୃଷ୍ଟ କରିଥିଲା । ଏତିକ-ବେଳେ ଆମ ଗାଁକୁ ଗୋଟିଏ ବୋହୂ ବିବାହ କରି ଆସିଲା । ସେ ସମୟରେ ବି ବୋହୂଟି କିଛି ଶିକ୍ଷାଲାଭ କରିଥିଲା ଓ ତା ହାତପେଡ଼ୀରେ ଏ ବହି ଦୁଇଖଣ୍ଡି ଆସିଥିଲା । ମୁଁ ସନ୍ଧାନ ପାଇ ବହି ଦି'ଖଣ୍ଡ ଆଣି ପଢ଼ିଲି । ମୋର ସେଇ ସ୍ୱଳ୍ପ ବୟସରେ ମୁଁ କାହ୍ନୁଚରଣ ଓ ଉପେନ୍ଦ୍ର କିଶୋରଙ୍କ ଲିଖନ ପ୍ରଣାଳୀରେ ମନ୍ତ୍ରମୁଗ୍‌ଧ ହୋଇଗଲି । ଭବିଷ୍ୟତରେ ଏ ବହି ଦୁଇଟି ସହିତ ଅତି ନିବିଡ଼ ଭାବରେ ସଂପୃକ୍ତ ହେବାର ସୁଯୋଗ ମୋର ଆସିଲା । ପ୍ରଥମେ "ବାଲିରଜା" । ଊଣେଇଶିଶହ ଅଣଚାଳିଶ ମସିହାରେ ରୂପଭାରତୀ ଚଳଚ୍ଚିତ୍ର ପ୍ରତିଷ୍ଠାନର ଏମ୍. ଡି. ଶ୍ରୀ ସୁରେନ୍ଦ୍ର କୁମାର ଦାସ ତାଙ୍କ ଦ୍ୱାରା ପ୍ରଯୋଜିତ ପ୍ରଥମ ଚଳଚ୍ଚିତ୍ର "ଶ୍ରୀଜଗନ୍ନାଥ"ର ଚିତ୍ରଲିପି ଓ ସଂଳାପ ରଚନାର ଦାୟିତ୍ୱ ମୋ ଉପରେ ପ୍ରଦାନ କଲେ । ଶ୍ରୀଜଗନ୍ନାଥ ମୁକ୍ତି ଲାଭ କଲା । ସମସ୍ତେ ଜାଣନ୍ତି ଯେ ଏ ଚିତ୍ରଟି କିପରି ଅସାମାନ୍ୟ ସଫଳତା ଲାଭ କରିଥିଲା । ଏହାପରେ ସୁରି ବାବୁ କାହ୍ନୁ ବାବୁଙ୍କ "ବାଲିରଜା"ର ଚିତ୍ରରୂପ ପ୍ରଦାନ କଥା ମନସ୍ଥ କରି ମତେ କାହ୍ନୁ ବାବୁଙ୍କ ପାଖକୁ ପଠାଇଲେ । କାହ୍ନୁ ବାବୁ ଟିକେ ହସି ମତେ କହିଲେ—ନାଇଁ ଗୋପାଳ ବାବୁ "ବାଲିରଜା"ର ଚଳଚ୍ଚିତ୍ର ନିର୍ମାଣ ପାଇଁ ଅନୁମତି ମୁଁ ଦେଇ-ପାରିବି ନାହିଁ । କାରଣ ଓଡ଼ିଆରେ ଉପନ୍ୟାସ ପ୍ରାୟ ନଥିବାରୁ ଅନ୍ୟ ଭାଷାର କିଛି ଲୋକଙ୍କ ପରିହାସ ମୁଁ ସହ୍ୟ କରି ନ ପାରି ତରବରରେ ଏ ଉପନ୍ୟାସଟି ଲେଖିଥିଲି । ପ୍ରକୃତରେ ଏହା ମୋର ମୌଳିକ ଉପନ୍ୟାସ ନୁହେଁ । ଇଂରାଜୀ ଉପନ୍ୟାସ Count of Mantecresto ର ଛାୟାରେ ଏ ଉପନ୍ୟାସଟି ମୁଁ ଲେଖିଛି । ସେଥିପାଇଁ ଏ ଚଳଚ୍ଚିତ୍ରର ପ୍ରସାରଣ ମୁଁ ଚାହେଁନି । କାହ୍ନୁ ବାବୁ ଏପରି ଚମତ୍କାର ଶୈଳୀରେ ବାଲିରଜା ଉପନ୍ୟାସକୁ ଲେଖିଛନ୍ତି ଯେ ଏହା ଏକ

ଅନ୍ୟଭାଷା ଉପନ୍ୟାସର ଗ୍ରନ୍ଥାରେ ଲିଖିତ ବୋଲି କେହି କେବେ କଳ୍ପନା କରିପାରିବେ ନାହିଁ । କିନ୍ତୁ କାହ୍ନୁ ବାବୁ ହେଉଚନ୍ତି "କାହ୍ନୁ ବାବୁ"—ଏ ଦିଗରେ ସେ ଟିକେ ଟଳିବେ ନାହିଁ । ପରେ ତାଙ୍କର ଏକ ହୃଦୟସ୍ପର୍ଶୀ ଉପନ୍ୟାସ "ଅଭିନେତ୍ରୀ"ର ଚିତ୍ରରୂପ ପାଇଁ ସେ ବାବୁଲାଲ ଜୋଷୀଙ୍କୁ ଅନୁମତି ପ୍ରଦାନ କଲେ ଓ ଏହାର ଚିତ୍ରଲିପି ଓ ସଂଳାପ ଲେଖିବାର ଦାୟିତ୍ୱ ମଧ୍ୟ ମୋ ଉପରେ ରହିଲା । ଯଥା ସମୟରେ ଚଳଚ୍ଚିତ୍ର "ଅଭିନେତ୍ରୀ" ସମାପ୍ତ ହେଲା । ଏଥିରେ ଅଭିନେତା ଓ ଅଭିନେତ୍ରୀମାନେ ଥିଲେ—ଝରଣା ଦାସ—ପ୍ରଥମ କରି ଓଡ଼ିଆ ଚଳଚ୍ଚିତ୍ରରେ ଝରଣା ଦାସ ଦ୍ୱୈତ ଭୂମିକାରେ ଅଭିନୟ କରିଥିଲେ—ଅନ୍ୟ କଳାକାରମାନେ ହେଲେ ମଣିମାଳା ଦେବୀ, ରଜନୀକାନ୍ତ ମହାନ୍ତି, ହୃଦୟବଲ୍ଲଭ ଦାସ ଓ ଅନ୍ୟମାନେ । ଚିତ୍ରଟି ଅତି ସଫଳତାର ସହିତ ପ୍ରଦର୍ଶିତ ହୋଇଥିଲା ।

## ଡାକ୍ତର ରଜନୀକାନ୍ତ ଘୋଷ
## ସ୍ୱେଚ୍ଛାଭିନେତା ରାଜକିଶୋର ବୋଷ

ସେଇ ଊଣେଇଶିଶହ ତିରିଶି ମସିହାର କଥାକୁ ପୁଣି ଫେରୁଚି । ମୁଁ ସେତେବେଳେ ଟାଉନ୍ ଭିକ୍ଟୋରିଆ ସ୍କୁଲର ଅଷ୍ଟମ ଶ୍ରେଣୀର ଛାତ୍ର । କାଠଯୋଡ଼ି ହଷ୍ଟେଲରୁ ଭିକ୍ଟୋରିଆ ସ୍କୁଲ ଯିବାକୁ ହେଲେ ସେଠୁ ନିମଚଉଡ଼ି ଛକ ପର୍ଯ୍ୟନ୍ତ ଆସି ପ୍ରିୟବାବୁଲେନ୍ ଓ ଆଲମଗୀର ବଜାର ବାଟେ କାଜିବଜାର ଭିକ୍ଟୋରିଆ ସ୍କୁଲ ଯିବାକୁ ହୁଏ । ସେଦିନ ମୁଁ ଟିକେ ହୁଏତ ଡେରିରେ ବାହାରିଥିଲି । ପ୍ରିୟବାବୁଲେନ୍‌ର ପ୍ରିୟନାଥ ଭବନରେ ଡାକ୍ତର ରଜନୀକାନ୍ତ ଘୋଷ ତାଙ୍କର ଡାକ୍ତରଖାନା ଖୋଲିଥା'ନ୍ତି । ରଜନୀବାବୁ ଥିଲେ କଟକ ସାହେବଜାଦା ବଜାରର (ବର୍ତ୍ତମାନର ଭିଷାକୋଷଲେନ୍) ଏକ ବିଖ୍ୟାତ ଘୋଷ ପରିବାରର ସନ୍ତାନ । ସେଇ ପରିବାରର ଶ୍ରୀଯୁକ୍ତ ରାଧାକାନ୍ତ ଘୋଷ ଥିଲେ ହାଇକୋର୍ଟ ଜଜ, ତାଙ୍କ ପୁଅ ଶ୍ରୀକାନ୍ତ ଘୋଷ ଥିଲେ ଆଇ. ପି. ଅଫିସର । ତାଙ୍କ ସମ୍ପର୍କରେ ଏକରୋଚକ ଘଟଣା ଶୁଣାଯାଏ । ସେତେବେଳେ ଓଡ଼ିଶା ଓ ବିହାର ଗୋଟିଏ ପ୍ରଦେଶ ଥିଲା — ବିହାର ଏବଂ ଓଡ଼ିଶା । ଶ୍ରୀକାନ୍ତ ବାବୁ ବି.ଏ ପାସ୍ କରି ପାଟନାରେ ଥା'ନ୍ତି । ସେ ସମୟର ପ୍ରଥାନୁସାରେ ଯଦି ଜଣେ କେହି ଅତି ଦୁଃସାହସିକ କାର୍ଯ୍ୟରେ ସାଫଲ୍ୟ ଲାଭ କରେ, ତେବେ ପୋଲିସ୍ ଚାକିରି ପାଇଁ ତାଙ୍କର ଅନ୍ୟ ଯୋଗ୍ୟତା ସହିତ ତାଙ୍କ ତାଙ୍କର ଏ ଦୁଃସାହସିକ କର୍ମପାଇଁ ନିଯୁକ୍ତିର ପ୍ରାଧାନ୍ୟ ଦିଆଯାଏ । ଦିନେ ସମ୍ବାଦପତ୍ରରେ ପ୍ରକାଶ ପାଇଲା ଯେ କଟକର ଶ୍ରୀଯୁକ୍ତ ଶ୍ରୀକାନ୍ତ ଘୋଷ ନିଜ ଜୀବନକୁ ବିପନ୍ନ କରି ଗଙ୍ଗାନଦୀରେ ବୁଡ଼ିଯାଉଥିବା ବେଳେ ଜଣେ ବ୍ୟକ୍ତିଙ୍କୁ ଉଦ୍ଧାର କରିଚନ୍ତି । ସେତେବେଳେ ସିଏ ପୋଲିସ ଆଇ.ପି. (ଇଣ୍ଡିଆନ ପୋଲିସ)

ଚାକିରି ପାଇଁ ପ୍ରାର୍ଥୀ ଥିଲେ ଓ ଏ ଗଙ୍ଗାନଦୀ ଘଟଣାଟି ତାଙ୍କର ଏ ଚାକିରିର ନିଯୁକ୍ତି ପଥକୁ ଆହୁରି ସୁଗମ କରିଦେଲା । ସେ ଭାରତୀୟ ଆଇ.ପି. ଚାକିରିରେ ଭର୍ତ୍ତି ହେଲେ । ଏ ଘଟଣାର କିଛିଦିନ ପରେ ପ୍ରଚାର ହେଲା ଯେ ଗଙ୍ଗାନଦୀର ଘଟଣାଟି ପ୍ରକୃତ ସତ୍ୟ ଘଟଣା ନୁହେଁ । ଶ୍ରୀକାନ୍ତ ବାବୁ ତାଙ୍କ ଚାକିରି ପାଇଁ ଜାଣିଶୁଣି ଗୋଟିଏ ଲୋକକୁ ବୁଡ଼ିଯିବାର ଛଳନା କରିବା ପାଇଁ ପ୍ରବର୍ତ୍ତାଇ ଥିଲେ ଓ ତାକୁ ସେଇ ଅବସ୍ଥାରେ ସେମିତି ଛଳନା କରି ଉଦ୍ଧାର କରିଥିଲେ । ଶ୍ରୀକାନ୍ତବାବୁ ଅବଶ୍ୟ ଆଇ.ପି. ସର୍ଭିସରେ ନିଯୁକ୍ତି ପାଇଲେ । ତଥାପି ମୁଁ ଏଠି କହିରଖୁଚିଯେ ଏ ବୁଡ଼ିଯିବା ଘଟଣାଟି ହେଉଚି ଏକ ସମ୍ପୂର୍ଣ୍ଣ ଶୁଣାକଥା ।...ଡାକ୍ତର ରଜନୀବାବୁ ସେଇ ବିଖ୍ୟାତ ଘୋଷ ପରିବାରର ଜଣେ ବଂଶଧର । ସେ ଡାକ୍ତରୀ ପାସ୍ କରି କୌଣସି ଚାକିରି ନ କରି ଏ ପ୍ରିୟନାଥ ଭବନରେ ଡାକ୍ତରଖାନା ଖୋଲିଲେ । ଦେଶପ୍ରେମୀ ଲୋକ, ଖଦଡ଼ ପିନ୍ଧନ୍ତି । କଂଗ୍ରେସର ନୀତିନିୟମ ମାନି ଚଳନ୍ତି । ସେଦିନ ମୁଁ ଦେଖିଲି —ତାଙ୍କ ଡାକ୍ତରଖାନା ଦ୍ୱାରରେ କିଛି ଲୋକ ଏକତ୍ରିତ ହୋଇଚନ୍ତି —ଏତିକିବେଳେ ଆମର ପ୍ରିୟ ଯୁବନେତା ରାଜକୃଷ୍ଣ ବୋଷଙ୍କୁ ପୋଲିସ ଗୋଟିଏ ଷ୍ଟ୍ରେଚରରେ ଶୁଆଇ ପୋଲିସ ଭ୍ୟାନ୍‌ରେ ନେଇ ଚାଲିଗଲେ । ମୁଁ ହଠାତ୍ କିଛି ବୁଝିପାରିଲି ନାହିଁ । ଟିକିଏ ପରେ ଜାଣିଲି ଯେ ସେଦିନ ରଜନୀବାବୁଙ୍କ ଡାକ୍ତରଖାନାରେ ଶ୍ରୀଯୁକ୍ତ ବୋଷଙ୍କ କ'ଣ ଅପରେସନ ହେଉଥିଲା— ଅପରେସନ ପରେ ପରେ ପୋଲିସ ତାଙ୍କୁ ଡାକ୍ତରଖାନା ରୋଗଶଯ୍ୟାରୁ ଗିରଫ କରି ନେଇଯାଇଚନ୍ତି । ସେତେବେଳକୁ ଶ୍ରୀଯୁକ୍ତ ବୋଷ ଆମ ଛାତ୍ରମାନଙ୍କର ଜଣେ ଅତି ପ୍ରିୟ ଓ ପୂଜ୍ୟ ଛାତ୍ର ନେତା ଭାବେ ପ୍ରତିଷ୍ଠା ପାଇଥା'ନ୍ତି । ପୋଲିସ ଅପରେସନ ଟେବୁଲରୁ ତାଙ୍କୁ ଆରେଷ୍ଟ କରି ନେଇଚି ଏକଥା ଶୁଣିବାମାତ୍ରେ ମୁଁ ଆମ ସ୍କୁଲକୁ ଦୌଡ଼ିଲି । ମାତ୍ର ଦୁଇ ତିନି ମିନିଟ୍‌ର ବାଟ । କ୍ଲାସରେ ପହଞ୍ଚି ଦେଖିଲି କ୍ଲାସ ଆରମ୍ଭ ହୋଇନି । ସେମିତି ଅଶାନ୍ତଃଶ୍ୱାସ ଅବସ୍ଥାରେ ଶ୍ରୀଯୁକ୍ତ ବୋଷଙ୍କ କଥା କ୍ଲାସରେ ଘୋଷଣା କରିଦେଲି । ସମସ୍ତେ ହତବାକ୍ । ଆମ କ୍ଲାସରେ ଆମର ନେତା ଥିଲା ବାଇଧର । ସେ ସଙ୍ଗେ ସଙ୍ଗେ ମହାତ୍ମାଗାନ୍ଧୀଙ୍କ ଜୟ ଓ ରାଜକୃଷ୍ଣ ବୋଷଙ୍କ ଜୟନାଦ ଆରମ୍ଭ କରିଦେଲା । ସବୁ ପିଲା ତା ସହିତ ମିଶି ଜୟନାଦ କଲେ । ମୁଁ ସେପର୍ଯ୍ୟନ୍ତ ହାତରେ ବହିଧରି ସେମିତି ଠିଆ ହୋଇଚି, ମୋ ସିଟ୍‌କୁ ଯାଇନି । ଏତିକିବେଳେ ଆସିଲେ ହେଡ଼ମାଷ୍ଟର ନଗେନ୍ ଚାଟାର୍ଜୀ । ସେ ରାଗରେ ଜଳୁଥା'ନ୍ତି । ପ୍ରଥମେ ମୋ'ରି ଉପରେ ତାଙ୍କର ଆଖି ପଡ଼ିଲା । ହୁଏତ ସିଏ ଧରିନେଲେ ଏ ଆନ୍ଦୋଳନର ନେତା ମୁଁ । ତା'ପରେ ସେ ଏତେ ଜୋର୍‌ରେ ମୋ ଗାଲରେ ଏକ ଚଟକଣା ମାରିଲେ, ସେ କଥା ମୋର ଏ

ବସ୍ତ୍ରପରେ ମଧ୍ୟ ମୁଁ ଭୁଲି ପାରୁନି । ସେତେବେଳେ ମୁଁ ହୁଏତ କିଛି ମୁହୂର୍ତ୍ତପାଇଁ ଚେତନାଶୂନ୍ୟ ହୋଇପଡ଼ିଥିଲି । ତା'ପରେ ସେ ଆମ କ୍ଲାସ ଅର୍ଥାତ ଅଷ୍ଟମ ଶ୍ରେଣୀ ଏ ସେକ୍‌ସନର ଆମେ ସବୁ ଛାତ୍ରଙ୍କୁ ବେଞ୍ଚ ଉପରେ ଠିଆ ହେବାର ଆଦେଶ ଶୁଣାଇ ଚାଲିଗଲେ । କ୍ଲାସ ଟିଚର ଆସିଲେ, ହାଜିରା ନେଲେ । ତା'ପରେ ପଢ଼ାପଢ଼ି ଆରମ୍ଭ ହେବା କଥା । ଆମେ କେହି ସହଯୋଗ କଲୁ ନାହିଁ । କ୍ଲାସ ଟିଚର ଅଗଣିବାବୁ ଜଣେ ଦେଶପ୍ରେମୀ ଲୋକ । ଖଦଡ଼ ପିନ୍ଧନ୍ତି । ସେ କହିଲେ ତୁମେମାନେ ବେଞ୍ଚ ଉପରେ ଚୁପ୍‌ଚାପ୍ ଛିଡ଼ାହୁଅ । ମୁଁ ମୋର ଏ ଟେବୁଲ ଉପରେ ଶୋଇବି—ସେ ଶୋଇଲେ । ଏ ଭିତରେ ଆମ କ୍ଲାସନେତା ବାଇଧର ଖଣ୍ଡେ କାଗଜରେ "ଏ ପିରିୟଡ଼ ପରେ ଆମେ ସମସ୍ତେ କ୍ଲାସ ଛାଡ଼ି ଚାଲିଯିବା" । ଏତକ ଲେଖି କ୍ଲାସ ପିଲାଙ୍କ ମଧ୍ୟରେ ବୁଲାଇ ଆଣିଲା । ପିରିୟଡ଼୍ ଶେଷ ହେଲା । ଘଣ୍ଟା ବାଜିଲା । ସେଇ ସଙ୍ଗେ ସଙ୍ଗେ ଆମେ ସମସ୍ତେ ଆମର ବହିଖାତା ଧରି କ୍ଲାସ ଓ ସ୍କୁଲ ଛାଡ଼ି ଚାଲିଗଲୁ । ହେଡମାଷ୍ଟର, ଅନ୍ୟସବୁ ଶିକ୍ଷକ ଓ ଛାତ୍ରମାନେ ନୀରବ ଦର୍ଶକ ହୋଇ ଚାହିଁରହିଥାଆନ୍ତି । କୁହାଗଲା ଏପରି ଘଟଣା ଏ ସ୍କୁଲ ପ୍ରତିଷ୍ଠା ଦିନଠାରୁ କେବେ ଘଟିନଥିଲା । ଭଦ୍ରକୋଣିଆ ସ୍କୁଲ ଅଷ୍ଟମ 'କ' ଶ୍ରେଣୀରେ କାଠଯୋଡ଼ି ହଷ୍ଟେଲର ଆମେ ଦୁଇଜଣ ଛାତ୍ର ପଢ଼ୁଥିଲୁ—ମୁଁ ଏବଂ କନିକା ଅଞ୍ଚଳର ଜଣେ ଛାତ୍ର ଶ୍ରୀ କୃଷ୍ଣଚନ୍ଦ୍ର ଦାସ । ସେଦିନ ସ୍କୁଲ ଛାଡ଼ି ଆସିବାବେଳେ ବାଇଧର ଆମକୁ ନିର୍ଦ୍ଦେଶ ଦେଇଥିଲା ଯେ ଆମେ ପରଦିନ ସ୍କୁଲକୁ ଆସି ପୁଣି ଏମିତି ପ୍ରଥମ ପିରିଅଡ୍ ପରେ କ୍ଲାସ ଛାଡ଼ି ଚାଲିଯିବା ।

## ହଷ୍ଟେଲରୁ ବହିଷ୍କୃତ

ମୁଁ ଏବଂ କୃଷ୍ଣ ହଷ୍ଟେଲକୁ ଆସିଲୁ । ହଷ୍ଟେଲରେ ପ୍ରାୟ କେହି ନାହାଁନ୍ତି । ଘର ଶୁନ୍‌ଶାନ୍ ଲାଗୁଥାଏ । ବାଇଧର କହିଚି ଆସନ୍ତା କାଲି ପୁଣି ଏମିତି ହବ । ଏଇଟା ସରକାରୀ ହଷ୍ଟେଲ । ଦୁହେଁ ମିଶି ବିଚାର କଲୁ । ଗୋଟିଏ ସରକାରୀ ହଷ୍ଟେଲରେ କେତେଦିନ ଏମିତି ଅନିଶ୍ଚିତତା ଚାଲିବ ! କିନ୍ତୁ ବେଶୀକ୍ଷଣ ଆମକୁ ଆଉ ଚିନ୍ତା କରିବାକୁ ପଡ଼ିଲାନି । ସ୍କୁଲରୁ ଚିଠି ଆସି ପହଞ୍ଚିଲା ଯେ ଦୁଷ୍ଟପ୍ରକୃତିର ଆଚରଣ ଯୋଗୁ ଅଷ୍ଟମ 'କ' ଶ୍ରେଣୀର ଗୋପାଳ ଓ କୃଷ୍ଣ ଏ ଦୁଇଜଣଙ୍କର ସ୍କୁଲ ରେଜିଷ୍ଟାର୍‌ରୁ ନାମ କାଟି ଦିଆଯାଇଚି । କାଠଯୋଡ଼ି ହଷ୍ଟେଲ ହେଉଚି ଏକ ସରକାରୀ ହଷ୍ଟେଲ । ସେଠି କେବଳ ବୋନାଫାଏଡ୍ ଛାତ୍ରମାନେ ରହି-ପାରିବେ । ଯେହେତୁ ଏ ଦୁଇଜଣ ପିଲା ବୋନାଫାଏଡ୍ ଛାତ୍ର ନୁହଁନ୍ତି, ସେମାନଙ୍କୁ ତୁରନ୍ତ ଛାତ୍ରାବାସରୁ ବହିଷ୍କାର ଆଦେଶ ଦିଆଯାଉ । ପ୍ରାୟ ପାଞ୍ଚଟା-ବେଳେ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ ଆମକୁ ହଷ୍ଟେଲ ଛାଡ଼ି ଚାଲିଯିବାପାଇଁ ଲିଖିତ

ଆଦେଶ ଜଣାଇଦେଲେ । ଆମ ଉପରେ ବଜ୍ରପାତ ହେଲା । ମୋର ଜଣେ ସ୍ଥାନୀୟ ଅଭିଭାବକ ଶ୍ରୀ ଜଲାଲ୍‌ଉଦ୍ଦୀନ ନମଚଉଡ଼ରେ ଅଛନ୍ତି । ମୋର ଯାହା କିଛି ଖର୍ଚ୍ଚ ମୁଁ ତାଙ୍କଠୁଁ ଆଣେ । ମୋ ପାଖରେ ଗୋଟିଏ ମାତ୍ର ପଇସା ନାହିଁ । ମୁଁ ଯଦି ଜଲାଲ୍‌ଭାଇଙ୍କ ପାଖକୁ ପଇସା ପାଇଁ ଯାଏ, ସେ ଏକାବେଳେକେ ପୁଲିସ୍‌ କମ୍ପେଇ ଦେବେ । କୃଷ୍ଣଙ୍କର ମଧ୍ୟ ସେଇ ଅବସ୍ଥା । ସାମାନ୍ୟ କେତେ ପଇସା ତା ପାଖରେ ଅଛି । ସେ ଯିବ କଟକ, ମୁଁ ଯିବି ଜଗତ୍‌ସିଂହପୁର । ଆମ ଦୁଇଜଣଙ୍କର ଟ୍ରଙ୍କ ଓ ବିଛଣାପତ୍ର ସବୁକୁ ନେଇ ଘୋଡ଼ାଗାଡ଼ିରେ ଷ୍ଟେସନ ପର୍ଯ୍ୟନ୍ତ ଯିବାପାଇଁ ଆମ ପାଖରେ ପଇସା ନାହିଁ । ସ୍ୱୀକାର କରୁଛି, ମୁଁ ଏକ ସ୍ୱଚ୍ଛଳ ପରିବାରର ପିଲାଥିଲି ବୋଲି ଏମିତି ଜିନିଷପତ୍ର ବୋହିନେବାର ଅଭ୍ୟାସ ମୋର ନ ଥିଲା— କିଛି ଦରକାର ବି ପଡ଼ୁନଥିଲା । କିନ୍ତୁ କୃଷ୍ଣ ଟିକେ ଭିନ୍ନ ଧରଣର ପିଲା । ଯାହାକୁ କହନ୍ତି ସ୍ଫୂର୍ତ୍ତି । ଆମକୁ ଯେ କୌଣସି ମତେ ଯିବାକୁ ହେବ । କୃଷ୍ଣ ବିନା ବାକ୍ୟ-ବ୍ୟୟରେ ଗୋଟାଏ ଟ୍ରଙ୍କ ତା ମୁଣ୍ଡ ଉପରେ ରଖିଲା । ଟ୍ରଙ୍କ ଉପରେ ରହିଲା ତା' ବିଛଣା । ବାକି ମୋ ଟ୍ରଙ୍କର ଗୋଟାଏ ପାଖ ବାଡ଼ା ମୁଁ ଧରିଲି, ଅନ୍ୟପାଖର ବାଡ଼ା ସେ ତାର ବାଁ ହାତରେ ଧରିନେଲା । ଏଇ ଟ୍ରଙ୍କ ଉପରେ ମୋ ବିଛଣା ରହିଲା । ତା'ପରେ ଆମେ ଦୁଇଜଣ ଦୁଇଟି ବାଳକ ଭୃତ୍ୟପରି ଚାଲିଲୁ । କିନ୍ତୁ ଯିବୁ କେଉଁଠିକି ? କୃଷ୍ଣ ତାର ଠିକ୍ ଚାଲିଛି—କିନ୍ତୁ ଟ୍ରଙ୍କ ବାଡ଼ାଧରି ମୋ ହାତକୁ କାଟିଲାଣି । ଆଖିରୁ ଲୁହ ବୋହି ଆସିଲାଣି । କାଠଯୋଡ଼ି ନଦୀକୂଳ ରାସ୍ତାରେ ଚାଲିଛୁ । ହଠାତ୍ ଆଖି ପଡ଼ିଗଲା ସନ୍‌ସାଇନ୍ ଫିଲ୍ଡ ପାଖ ଜଗତ୍‌ସିଂହପୁର ଖେରସ ମୌଜାର ଜମିଦାର ଓ ଓକିଲ ସ୍ୱର୍ଗତ ଶ୍ରୀ ଗୋକୁଳାନନ୍ଦ ଚୌଧୁରୀଙ୍କ ପ୍ରକାଣ୍ଡ ଦୁଇମହାଲା କୋଠା ଉପରେ । ଫାଟକରେ ଲେଖାହୋଇଛି କଂଗ୍ରେସ ଅଫିସ । ସରକାରଙ୍କ ଦୃଷ୍ଟି ଏଡ଼ାଇବା ପାଇଁ ଏଠି କିଛିଦିନପାଇଁ କଂଗ୍ରେସ ଅଫିସ ଖୋଲା ଯାଇଥିଲା । ଶ୍ରୀ ଗୋକୁଳାନନ୍ଦ ଚୌଧୁରୀ ଏକ ବଡ଼ ଜମିଦାର ବଂଶର ସନ୍ତାନ ସତ, ସେଇ ସଙ୍ଗେ ସଙ୍ଗେ ସେ ଥିଲେ କଟକର ଜଣେ ବରିଷ୍ଠ ଓକିଲ । ତାଙ୍କର ବଡ଼ ପୁତ୍ର ଗୋପବନ୍ଧୁ ଚୌଧୁରୀ ବଡ଼ ସରକାରୀ ଚାକିରି ଛାଡ଼ି କଂଗ୍ରେସରେ ଯୋଗ ଦେଇ-ଥାନ୍ତି । କନିଷ୍ଠ ପୁତ୍ର ଶ୍ରୀ ନବକୃଷ୍ଣ ଚୌଧୁରୀ ମଧ୍ୟ କଂଗ୍ରେସରେ ଯୋଗଦେଇଥା'ନ୍ତି । ସେତେବେଳେ ଜମିଦାର ବଂଶର ବଧୂମାନେ ଥିଲେ ଅସୂର୍ଯ୍ୟମ୍ପଶ୍ୟା । ସେମାନେ ସୂର୍ଯ୍ୟଙ୍କୁ ସୁଦ୍ଧା ଦେଖିପାରୁ ନ ଥିଲେ । ପୁଣି ସେତେବେଳେ ଦୁଇମହଲାର କୋଠାର ଶିଡ଼ି ସବୁ ବାହାରେ ରହୁଥିଲା । ଯଦି କେତେବେଳେ ଉପରମହଲାର ମହିଳା-ମାନେ ତଳମହଲାକୁ ଆସିବେ ତେବେ ଦୁଇଜଣ ଦାସୀ ଗୋଟିଏ ପର୍ଦ୍ଦାକୁ ଦୁଇପାଖରୁ ଭିଡ଼ି ଧରିବେ ଓ ଜମିଦାର ବଧୂମାନେ ସେଇ ପର୍ଦ୍ଦା ଉହାଳରେ ଯିବାଆସିବା କରିବେ । କିଛିକ୍ଷଣ ପରେ ଜଣେ ନେତୃସ୍ଥାନୀୟ ବ୍ୟକ୍ତି ଆସିଲେ ।

ପଚାରିଲେ—କ'ଣ ଚାହଁ ତୁମେ ? ଆମେ କହିଲୁ—ଆମେ ବାନର ସେନା ହେବୁ । ଟିକେ ହସି କହିଲେ—ବାନର ସେନା ହେବାର ବୟସ ତୁମର ହୋଇନି, ତା'ଛଡ଼ା ତୁମ ପରିବାରର ଅଭିଭାବକଙ୍କଠାରୁ ଏଥିପାଇଁ ଲିଖିତ ଅନୁମତି ଆଣିବାକୁ ପଡ଼ିବ । ପାରିବ ତୁମେ ? ଆମେ ଟିକେ ଇତସ୍ତତଃ ହେବାରୁ ସେ କହିଲେ—କଂଗ୍ରେସ ତ ଏ ପର୍ଯ୍ୟନ୍ତ ସ୍କୁଲପିଲାଙ୍କୁ ସ୍କୁଲ ଛାଡ଼ିବାକୁ ନିର୍ଦ୍ଦେଶ ଦେଇନି, ତମେ ସ୍କୁଲ ଛାଡ଼ିଲ କାହିଁକି ? ଆମେ ତୁମ ପାଇଁ କିଛି କରିପାରିବୁ ନାହିଁ, ତୁମେ ଘରକୁ ଫେରିଯାଅ ··ମୋ ପାଟି ଫିଟିଲି ନାହିଁ ।—ତା'ପରେ ସେ ଯେତେବେଳେ ଜାଣିଲେ ଯେ ଘରକୁ ଯିବାପାଇଁ ଆମ ପାଖରେ ବାଟଖର୍ଚ୍ଚ ନାହିଁ, ସେ ଆମକୁ ଅପେକ୍ଷା କରିବାକୁ କହି ଚାଲିଗଲେ । ସେଦିନ ରାତିରେ ଆମେ ସେଠି ରହିଲୁ । ରାତିରେ ଆମକୁ ରୁଟି ଡାଲ୍‌ମା ଖାଇବାକୁ ଦିଆଗଲା । ତା'ପରଦିନ କଂଗ୍ରେସ ଅଫିସରୁ ବାଟଖର୍ଚ୍ଚ ଆଣି ଆମେ ଘରକୁ ଫେରିଲୁ । ସୁସ୍ଥ ଶରୀର, ଅଥଚ ଅଦିନରେ ମୁଁ ମୋର ସମସ୍ତ ଜିନିଷ ପତ୍ର ଧରି ଘରେ ପହଞ୍ଚିବା ଦେଖି ସମସ୍ତେ ହତବାକ୍ ହୋଇଗଲେ, ବିଶେଷତଃ ବାପାଙ୍କ ଅବର୍ତ୍ତମାନରେ ପ୍ରାୟ ସତୁରୀବର୍ଷ ବୟସ୍କ ମୋର ଯେଉଁ ଅଜା (ବାପାଙ୍କର ଦାଦା) ମୁଁ ହାଇସ୍କୁଲ ପଢ଼ିବା ପାଇଁ ମତେ ନେଇ କଟକ ଯାଇଥିଲେ, ସେ କେବଳ ଅଶ୍ରୁଳ ନୟନରେ ମତେ ଚାହିଁ ରହିଲେ—ପଦେକଥା ନାହିଁ । ତା'ପରେ ମୁଁ ମୋର କାହାଣୀ ବର୍ଣ୍ଣନା କଲି । ଯେତେ-ବେଳେ ହେଡ୍‌ମାଷ୍ଟର ମତେ ଅତି ନିର୍ଦ୍ଦୟଭାବେ ମାରିବା କଥା ମୁଁ କହିଲି, ମୋର ଆଈମା ସମସ୍ତଙ୍କୁ ଚୁପ୍ କରେଇ କହିଲା—ନା, ଯେତିକି ହେଲା ସେତିକି, ଏଇଠି ତା ପାଠପଢ଼ା ବନ୍ଦ । ନାତି ମୋର ଏମିତି ମାଡ଼ ଖାଇବା ପାଇଁ କଟକ ଯିବନି । ବାପା ତାର ଯେତିକି ଛାଡ଼ିଯାଇଚି ସେତିକି ବୁଝିଲେ ତିନିପୁରୁଷ କଟିଯିବ । ଏଥିରେ ସମସ୍ତେ ନୀରବ ରହିଲେ । ରାତିରେ ଶୋଇବାବେଳେ ମନରେ ମୋର ଏଇପ୍ରଶ୍ନ ଉଦ୍ରେକ ହେଉଥିଲା, ସତରେ କ'ଣ ମୋର ପାଠପଢ଼ା ବନ୍ଦ ହୋଇଗଲା ? ଏଇ ଅଳ୍ପ କେଇଦିନ ଭିତରେ ମନଭିତରେ ମୋର କେତେ ଆଶା ଆକାଂକ୍ଷା ଜାଗ୍ରତ ହୋଇଥିଲା । ସେ ସବୁ ତା' ହେଲେ କ'ଣ ପୋଡ଼ି ପାଉଁଶ ହୋଇଯିବ ? କିଛିଦିନ ପରେ ପୋଷ୍ଟମ୍ୟାନ୍ ଆଣି ଚିଠି ଦେଇଗଲା—ନିଜେ ହେଡ୍‌ମାଷ୍ଟର ଲେଖିଚନ୍ତି—ଏ ଚିଠି ପାଇବାର ସାତଦିନ ଭିତରେ ତମ ପିଲାଙ୍କୁ ଆଣି ସ୍କୁଲରେ ନାମ ଲେଖାଅ । ସାତଦିନ ପରେ ଆଉ ତାକୁ ସ୍ଥାନ ମିଳିବନି । ସାତଦିନ କଥା କିଏ ପଚାରେ, ସାତ ମିନିଟ୍‌ରେ ଅଜା ମତେ ନେଇ କଟକ ବାହାରିଲେ । ପ୍ରାୟ ବାରଟା ଭିତରେ ଆମେ ସ୍କୁଲରେ ପହଞ୍ଚିଲୁ । ନାମ ଲେଖାହୋଇଗଲା । ଅଜା ଖଣ୍ଡେ ଚୁକ୍ତିନାମାରେ ଦସ୍ତଖତ କଲେ ଯେ ମୋ ନାତି ଆଉ ଏ ବାଟରେ ଯିବ ନାହିଁ । ତା'ପରେ ମୋର ସ୍ଥାନୀୟ ଅଭିଭାବକ ଜଲାଲ୍‌ଚାଚା

ମତେ ବହୁତ ତାଗିଦ୍ କରି କହିଲେ । ଅଜା ଗାଁକୁ ଫେରିଗଲେ । ମୁଁ ହଷ୍ଟେଲକୁ ଯିବା ରାସ୍ତାରେ ଅର୍ଥାତ୍ ପୁରୁଣା କଲେଜ ଲେନ୍ ପାଖରେ ତତ୍କାଳୀନ ରେଭେନ୍ସା କଲିଜିଏଟ୍ ସ୍କୁଲ ହତା ପରିସରରେ ଥିବା ଏକ ଦ୍ୱିତଳ ବାସ-ଭବନରେ ସେଦିନ ଏକ ମର୍ମନ୍ତୁଦ ଘଟଣା ଘଟିଯାଇ ଥାଏ ।

**W. W. Handerson**

ଏହା ତ ଊଣେଇଶିଶହ ବିଂଶ ମସିହାର କଥା । ଯେତେବେଳେ ଏହି ଭବନଟିର ଉପର ମହଲାରେ ରହୁଥିଲେ ବି. ଏ. ବି. ଟି. କଲେଜର ଅଧ୍ୟକ୍ଷ ଜଣେ ଶ୍ୱେତାଙ୍ଗ ଭଦ୍ରଲୋକ ଶ୍ରୀଯୁକ୍ତ W.W. Handerson ଓ ତଳ ମହଲାରେ ବି.ଏ.ବି.ଟି. କଲେଜର କ୍ଲାସ ଅନୁଷ୍ଠିତ ହେଉଥିଲା । ଶ୍ରୀଯୁକ୍ତ ହଣ୍ଡରସନ୍ ଜଣେ ଦକ୍ଷ ଶିକ୍ଷକ ହେବା ସଙ୍ଗେ ସଙ୍ଗେ ଅନ୍ୟ କେତେକ କ୍ଷେତ୍ରରେ ନିଜର ଯୋଗ୍ୟତା ପ୍ରତିପାଦିତ କରିଥିଲେ । ଓଡ଼ିଆ ଭାଷାରେ ମଧ୍ୟ ସେ ବେଶ୍ ପାରଙ୍ଗମ ହେବା ସହିତ ଇଂରାଜୀରୁ ଓଡ଼ିଆ, ଓଡ଼ିଆରୁ ଇଂରାଜୀ ଦୁଇଖଣ୍ଡି ଚମତ୍କାର ପୁସ୍ତକ ରଚନା କରିଥିଲେ ଓ ଏହା ସର୍ବତ୍ର ଆଦୃତ ହୋଇଥିଲା । ସେ ଥିଲେ ଆୟାର୍ଲାଣ୍ଡର ଲୋକ । ଓଡ଼ିଶାରେ ବହୁଦିନ ଧରି ରହିଆସିଥିଲେ ମଧ୍ୟ ସେ ଏଠି ଏକାକୀ ରହୁଥିଲେ ଓ ତାଙ୍କ ପରିବାର ରହୁଥିଲେ ଆୟାର୍ଲାଣ୍ଡରେ । ଏହାର ଅବଶ୍ୟ ଯଥାଯଥ କାରଣ ଥିଲା । ସେତେବେଳେ ସ୍କଟ୍ଲାଣ୍ଡ ଓ ଆୟାର୍ଲାଣ୍ଡ ବ୍ରିଟିଶ୍ ଦ୍ୱୀପପୁଞ୍ଜର ଶାସନ ଅଧୀନରେ ଥିଲା । କିନ୍ତୁ ଆୟାର୍ଲାଣ୍ଡର ପୂଜ୍ୟ ନେତା ଡି. ଭାଲେରାଙ୍କ ନେତୃତ୍ୱରେ ଆୟର୍ଲାଣ୍ଡ ସ୍ୱାଧୀନ ହୋଇଯିବା ପାଇଁ ସଂଗ୍ରାମ ଆରମ୍ଭ ହୋଇଗଲା । ଏଇ ସନ୍ଧି ମୁହୂର୍ତ୍ତରେ ଶ୍ରୀଯୁକ୍ତ ହଣ୍ଡରସନ୍ ଇଂଲଣ୍ଡ ଶାସନାଧୀନରେ ଭାରତରେ ରହିବାକୁ ଚାହିଁଲେ ଓ ନିଜର ପରିବାର ବର୍ଗ ଭାରତ ଚାଲିଆସିବା ପାଇଁ ନିର୍ଦ୍ଦେଶ ଦେଲେ । ମାତ୍ର ସେମାନେ ହଣ୍ଡରସନ୍ଙ୍କ ନିର୍ଦ୍ଦେଶକୁ ତ ମାନିଲେ ନାହିଁ, ଉପରନ୍ତୁ ଇଂଲଣ୍ଡ ଶାସନ ବିରୋଧରେ ପ୍ରତ୍ୟକ୍ଷ ଆନ୍ଦୋଳନରେ ଯୋଗଦେଲେ । ଏ ଘଟଣାରେ ଏଠି ଅନେକେ ଆଶା କରିଥିଲେ ଯେ ହଣ୍ଡ୍ରସନ୍ ସାହେବ ନିଶ୍ଚୟ ଭାରତ ଛାଡ଼ି ଆୟାର୍ଲାଣ୍ଡ ଚାଲିଯିବେ । କିନ୍ତୁ ତାହା ହେଲାନାହିଁ । ସେ ଭାରତରେ ବ୍ରିଟିଶ୍ ଚାକିରିର ମୋହ ଛାଡ଼ି ପାରିଲେ ନାହିଁ ।···ହଁ ସେଦିନ ମୁଁ ଯେଉଁ କଥାଟି ଲେଖିବାକୁ ଯାଉଥିଲି ତା' ହେଲା ସେଦିନ ହଣ୍ଡରସନ୍ ସାହେବ ପ୍ରାତଃ କର୍ମ ଶେଷ କରି ଗୋଟିଏ ଅତି ଚମତ୍କାର ନୂଆ ସୁଟ୍ ପିନ୍ଧିଲେ ଓ ଅନ୍ୟମାନଙ୍କୁ ଚାଲିଯିବାକୁ ନିର୍ଦ୍ଦେଶ ଦେଇ ଦରଜା ବନ୍ଦ କରିଦେଲେ । ତା'ପରେ ଦେହରେ ପେଟ୍ରୋଲ ଢାଳି ନିଆଁ ଲଗେଇଦେଲେ । ଯେତେବେଳେ ଘର ଭିତରୁ ଧୂଆଁ, ପେଟ୍ରୋଲ ଗନ୍ଧ ଓ ଅସ୍ପଷ୍ଟ ଯନ୍ତ୍ରଣାର ଶବ୍ଦ ଶୁଣାଗଲା,

ସେତେବେଳେ କବାଟ ଭଙ୍ଗାଯାଇ ଦେଖାଗଲା ଯେ ହ୍ୟଣ୍ଡରସନ୍ ସାହେବ ଜ୍ୱଳନ୍ତ ଅଗ୍ନି ଦାହରେ ଛଟପଟ ହେଉଚନ୍ତି । ମୃତ୍ୟୁପୂର୍ବରୁ ତାଙ୍କର ଶେଷ କେଇପଦ କଥା ସେ କହିଗଲେ ଯେ ତାଙ୍କ ପରିବାର ତାଙ୍କ ଇଚ୍ଛା ବିରୋଧରେ ଆୟାର୍‌ଲାଣ୍ଡର ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇଥିବାରୁ ସେ ଆତ୍ମହତ୍ୟା କରିଚନ୍ତି । ଏ ଦୃଶ୍ୟଟି ମୁଁ ନିଜେ ଦେଖିଥିଲି ।…ଏହାପରେ ଯଥା ସମୟରେ ଆୟାର୍‌ଲାଣ୍ଡ ସ୍ୱାଧୀନ ହେଲା ଓ ଡ. ଭାଲେରା ଆୟାର୍‌ଲାଣ୍ଡର ପ୍ରଥମ ସର୍ବୋଚ୍ଚ ଶାସନ କର୍ତ୍ତାରୂପେ ଅଧିଷ୍ଠିତ ହେଲେ । ଏଇତ ସେଦିନ ଉଣେଇଶିଶହ ଚଉରାନବେ ବିଶ୍ୱ ଫୁଟ୍‌ବଲ ପ୍ରତିଯୋଗିତାରେ ଇଂଲଣ୍ଡ ବିରୋଧରେ ସ୍ୱାଧୀନ ଆୟାର୍‌ଲାଣ୍ଡ ଗୋଟିଏ ଖେଳରେ ଜୟଲାଭ କରିଛି । ହ୍ୟଣ୍ଡରସନ୍ ସାହେବ ଏତେଦିନ ଧରି ଓଡ଼ିଶାରେ ରହିବା ଫଳରେ ସତେଯେପରି ସେ ଜଣେ ଓଡ଼ିଆ ହେଇଯାଇଥିଲେ । ସେ ଓଡ଼ିଆରେ ବେଶ୍ କଥାବାର୍ତ୍ତା କରିପାରୁଥିଲେ ଓ ସେହିପରି ହଷ୍ଟେଲର କୌଣସି ଛାତ୍ର ଅସୁସ୍ଥ ହେଇ ପଡ଼ିଲେ ସେ ମଧ୍ୟରାତ୍ରିରେ ବି ତାର ଚିକିତ୍ସାର ବ୍ୟବସ୍ଥା କରୁଥିଲେ । ପୁଣି ଯଦି କେହି ଅନ୍ତେବାସୀ ରାତ୍ରିର ନିଷିଦ୍ଧ ପ୍ରହରରେ ହଷ୍ଟେଲ ବାହାରକୁ ଚାଲିଯାଉଥିଲା, ଶ୍ରୀଯୁକ୍ତ ହ୍ୟଣ୍ଡରସନ୍ ତାଙ୍କ ନିଜ ପ୍ରଚେଷ୍ଟାରେ ତାକୁ ଧରି ଶୃଙ୍ଖଳାଗତ ଦଣ୍ଡ ବିଧାନ କରି ତାକୁ ବାଟକୁ ଆଣୁଥିଲେ । ସେ ଓଡ଼ିଶାରେ ଚିରସ୍ମରଣୀୟ ହେଇ ରହିଯାଇଚନ୍ତି ।

## ମତେ ସ୍କୁଲରେ ଦଣ୍ଡବିଧାନ ଓ ଶ୍ରୀକଣ୍ଠ ଶାସ୍ତ୍ରୀ

ତା'ପରଦିନଠାରୁ ମତେ ସ୍କୁଲରେ ସାତଦିନ ପାଇଁ ଦଣ୍ଡ ମିଳିଲା । ଦଣ୍ଡ ହେଲା—ସାତଦିନ ପର୍ଯ୍ୟନ୍ତ ଦଶଟାରୁ ଚାରିଟାଯାଏ ମୋ ଆଣ୍ଠୁରୁ ଲୁଗାଟେକି (ସେତେବେଳେ ପ୍ୟାଣ୍ଟର ପ୍ରଚଳନ ହେଇ ନଥାଏ) ନିଲ୍‌ଡାଉନ୍ ବା ଆଣ୍ଠୁମାଡ଼ି ବସିବି—ପୁଣି ସିମେଣ୍ଟ ଚଟାଣ ଉପରେ ନୁହେଁ ଖଦଖଦଡ଼ିଆ ପଥର ବିଛା ଚଟାଣ ଉପରେ । ବସିଲି—ମୋ ପୂର୍ବରୁ ଅନ୍ୟ ପିଲାମାନଙ୍କର ନାମ ଲେଖା ଶେଷ ହେଇଯାଇଚି । ବାସ୍ତବରେ ଭାରି କଷ୍ଟ ହେଉଥାଏ । ବେଳେ ବେଳେ ଆଖି ଛଳ ଛଳ ହେଇଯାଉଥାଏ । ଏତିକବେଳେ ତୃତୀୟ ପିରିୟଡ୍ ଶେଷ ହେଇ ଚତୁର୍ଥ ପିରିୟଡ୍ ଆରମ୍ଭ ହେଲା—ସଂସ୍କୃତ ପିରିୟଡ୍ । ଶିକ୍ଷକ ହେଡ୍‌ପଣ୍ଡିତ—ଶ୍ରୀ କଣ୍ଠ ଶାସ୍ତ୍ରୀ—ଯୁଲଳିତ ଉଚ୍ଚ ଉଦାର କଣ୍ଠ ସ୍ୱର । ସେ ଆସି ମୋର ଦୁରବସ୍ଥା ଦେଖି ମତେ କହିଲେ—ତୁ ମୋ ପିରିୟଡ୍‌ରେ ଆଣ୍ଠୁମାଡ଼ି ନ ବସି ସେଇଠି ଚେକା ପକେଇ ବସ । ମୁଁ ଡରି ଡରି କହିଲି—ମତେ ହେଡ୍‌ମାଷ୍ଟର ଏମିତି ବସିବା ପାଇଁ କହିଚନ୍ତି । ବେଶ୍ ଉଚ୍ଚ କଣ୍ଠରେ ସେ କହିଲେ—ଶ୍ରୀଯୁକ୍ତ ନଗେନ୍ ଚାଟାର୍ଜୀ ଏ ସ୍କୁଲର ହେଡ୍‌ମାଷ୍ଟର ହେଲେ ମୁଁ ଶ୍ରୀକଣ୍ଠ ଶାସ୍ତ୍ରୀ ଏ ବିଦ୍ୟାଳୟର ହେଡପଣ୍ଡିତ ।

ମୁଁ ଆଦେଶ ଦଉଚ—ତୁ ଡେକାପକେଇ ବସ । ମୁଁ ବସିଲି । ଏ ପ୍ରଶ୍ନ ଆଉ କେହି ଉଠାଇ ନାହାଁନ୍ତି ।

## ଶିକ୍ଷକ ଶ୍ରୀକଣ୍ଠ ଶାସ୍ତ୍ରୀ ଓ ଦେବେନ୍ ବାବୁ

ଏଇ ଶ୍ରୀକଣ୍ଠ ଶାସ୍ତ୍ରୀ, ବନାରସରୁ ଅତି ସମ୍ମାନର ସହିତ ଫସ୍ଟ୍ ହୋଇ ଶାସ୍ତ୍ରୀ ଉପାଧି ପାଇଥିଲେ—କଲେଜରେ ଯାଇ ଅଧ୍ୟାପକ ହବାର କଥା, କିନ୍ତୁ ଚାକିରି ମିଳିନଥାଏ ବୋଲି ଭିକ୍ଟୋରିଆ ସ୍କୁଲରେ ଆସି ହେଡ୍ ପଣ୍ଡିତ ହୋଇଥିଲେ । ମୁଁ ଏଇ ବିଦ୍ୟାଳୟର ଦଶମ ଶ୍ରେଣୀରେ ଅଧ୍ୟୟନ କଲାବେଳେ ଏମିତି ଗୋଟିଏ ନାଟକର ସୂତ୍ରପାତ ହେଉଥିଲା, ଯାହାର ସମାଧାନ ଶାସ୍ତ୍ରୀ ମହାଶୟ କରିଥିଲେ । ପାଟନା ୟୁନିଭର୍ସିଟିର ମ୍ୟାଟ୍ରିକୁଲେସନ୍ ପାଠ୍ୟକ୍ରମ ଅନୁସାରେ ଦଶମ ଶ୍ରେଣୀରେ ଅଧ୍ୟୟନ ଥିଲା ସବୁଠୁ କଷ୍ଟସାଧ୍ୟ । ଯିଏ ଦଶମ ଶ୍ରେଣୀରେ ଭଲ ମାର୍କ ରଖିବ ସିଏ ବିଶ୍ୱବିଦ୍ୟାଳୟ ମ୍ୟାଟ୍ରିକ୍ ପରୀକ୍ଷାରେ ସସମ୍ମାନରେ ଉତ୍ତୀର୍ଣ୍ଣ ହୋଇପାରିବ ବୋଲି କୁହାଯାଏ । ମୋର ଦୁର୍ଭାଗ୍ୟ, ମୋର ଗୋଟିଏ ଭଉଣୀର ବିବାହ କାର୍ଯ୍ୟ ଓ ତତ୍କାଳୀନ ସେଟେଲ୍‌ମେଣ୍ଟ ଅପରେସନ୍ ଚାଲିଥିବା ଯୋଗୁ ମୋର ପିତୃବିୟୋଗ ଜନିତ ବନ୍ଦୋବସ୍ତ କର୍ମରେ ମତେ ବହୁଦିନ ଧରି ଯୋଗ ଦେବାକୁ ପଡ଼ିଥିଲା । ଏ ଅବସ୍ଥାରେ ମୁଁ ସେ ବର୍ଷ ଜାନୁଆରୀ ମାସଠୁ ଅକ୍ଟୋବର ଶେଷ ପର୍ଯ୍ୟନ୍ତ ଦଶମାସ ଭିତରେ ମାତ୍ର ଷାଠିଏ ଦିନ ସ୍କୁଲରେ ଉପସ୍ଥିତ ଥିଲି । ଦଶହରା ଛୁଟି ପରେ ଯେତେବେଳେ ମୁଁ ସ୍କୁଲକୁ ଆସିଲି ମତେ ଦେଖି କେତେକ ଛାତ୍ର ହସିଲେ ଓ ଅନ୍ୟ କେତେକ ଛାତ୍ର ଓ ଶିକ୍ଷକ ମୋତେ ସେ ବର୍ଷ ବାର୍ଷିକ ପରୀକ୍ଷା ନ ଦେବା ପାଇଁ ଉପଦେଶ ଦେଲେ । ମାତ୍ର ମୋର କେତେଜଣ ହିତୈଷୀ ବନ୍ଧୁଙ୍କ ପରାମର୍ଶକ୍ରମେ ମୁଁ ପରୀକ୍ଷା ଦେବାପାଇଁ ପ୍ରସ୍ତୁତି ଆରମ୍ଭ କରିଦେଲି । ମଝିରେ ମାତ୍ର ଦିନ କେତୋଟି—ପ୍ରଥମ ଦିନ ପରୀକ୍ଷା ଶେଷ ହେଲା । ଏଲ୍. କେ. ମୁଖାର୍ଜୀଙ୍କ ଇଂଲିଶ ଟେଷ୍ଟ ମିନିଙ୍ଗ୍ ବହି ଅଧ୍ୟୟନ କରି ମୁଁ ନିଜକୁ ପ୍ରସ୍ତୁତ କଲି । ପ୍ରଥମ ଦିନ ପରୀକ୍ଷା ଇଂଲିଶ (ପ୍ରଥମ ଓ ଦ୍ୱିତୀୟ ପତ୍ର) ଭଲ ହୋଇଚି ବୋଲି ମୋ ଅପେକ୍ଷା ଭଲଛାତ୍ରମାନେ ଅଭିମତ ଦେଇଥିଲେ । ଦ୍ୱିତୀୟ ଦିନ—ଅଙ୍କ ଓ ଓଡ଼ିଆ ସାହିତ୍ୟ । ଅଙ୍କରେ ମୁଁ ଚିରଦିନ ଦୁର୍ବଳ । କିନ୍ତୁ ସାହିତ୍ୟରେ ତାର ବିପରୀତ । ପରୀକ୍ଷା ହଲ୍‌ରେ ମୋର ସମ୍ମୁଖରେ ଯେଉଁ ଛାତ୍ରଟି ବସିଥିଲା, ମତେ ଦେଖି ସେ ଏକାବେଳେକେ ଆନନ୍ଦରେ ବିହ୍ୱଳିତ ହୋଇଉଠିଲା । ତାର କାରଣ ମାଇନର କ୍ଲାସରୁ ଏ ପର୍ଯ୍ୟନ୍ତ ସେ ଯେତେ ପରୀକ୍ଷା ଦେଇ ଆସିଚି, ଓଡ଼ିଆ ସାହିତ୍ୟରେ କେବେହେଲେ ସତର ଅଠରରୁ ବେଶୀ ନମ୍ବର ପାଇପାରି ନାହିଁ । ବର୍ତ୍ତମାନ

ତାର ଦୃଢ଼ ଧାରଣା ହେଲା—ଯେହେତୁ ମୁଁ ତା ପଛ ସିଟ୍‌ରେ ବସିଚି, ମୋ'ଠୁ ସାହାଯ୍ୟ ପାଇ ସେ ଏଥର ନିଶ୍ଚୟ ଓଡ଼ିଆରେ ଛତିଶରୁ ଅଧିକା ମାର୍କ ରଖିବ । (ସେତେବେଳେ ଓଡ଼ିଆରେ ପାସ୍ ମାର୍କ ଥିଲା ଛତିଶ) ସେଦିନ ପରୀକ୍ଷା ଆରମ୍ଭ ମୁହୂର୍ତ୍ତରୁ ସେ ମୋ ପଛରେ ଲାଗିଲା । ପ୍ରଶ୍ନପତ୍ରର ପ୍ରାୟ ସବୁପ୍ରଶ୍ନ ମତେ ପଚାରିଲା । ମୁଁ ତାକୁ ବୁଝାଇ କହିଲି—ଦେଖ୍ ପ୍ରଭାକର, ମୁଁ ଏ ବର୍ଷ ମୋଟେ ଷାଠିଏ ଦିନ କ୍ଲାସରେ ଉପସ୍ଥିତ ରହିଚି । ତୁ ମତେ ଏତେ ପଚରାପଚରି ନକରି ତୋର ଯାହା ଦରକାର ମତେ ଖଣ୍ଡେ କାଗଜରେ ଲେଖିଦେଇ ଦେ' । ମୁଁ ଉତ୍ତର ଲେଖି ତତେ ଜଣାଇଦେବି ।···ସେତେବେଳେ ପରୀକ୍ଷା ହଲ୍‌ରେ ଯେଉଁ ଶିକ୍ଷକମାନେ ଗାର୍ଡ଼ ରହୁଥାନ୍ତି, ସେମାନେ ପାଦରେ କ୍ରେପ୍‌ସୋଲ୍ ଜୋତା ପିନ୍ଧନ୍ତି, ଯେପରିକି ସେମାନେ ଚାଲିଲେ କୌଣସି ଶବ୍ଦ ହେବନି—ତା ଅର୍ଥ ଏଇ ଶିକ୍ଷକ ବା ଗାର୍ଡ଼ ପଛପଟୁ ଆସିଲେ ପିଲାମାନେ କିଛି ଜାଣିପାରିବେନି । ସେଦିନ ପ୍ରଭାକର ତା'ର କାଗଜଖଣ୍ଡିକ ମୋ ହାତକୁ ବଢ଼ାଇଦେଲା—ମୁଁ ଲେଖୁଥିବା ଅବସ୍ଥାରେ କିଛି ନ ଜାଣିଲା ପରି ତା ହାତରୁ କାଗଜ ଖଣ୍ଡିକ ନେବା ମାତ୍ରେ ମୋର ପଛପଟୁ ଆମର ଭୂଗୋଳ ଶିକ୍ଷକ ଦେବେନ୍ ବାବୁ କ୍ରେପ୍‌ସୋଲ୍ ଜୋତାପିନ୍ଧି ନିଃଶବ୍ଦରେ ଆସି ମୋ ହାତରୁ କାଗଜ ଖଣ୍ଡିକ ଜବତ୍ କରିନେଲେ । ସେ ପ୍ରବାସୀ ବଙ୍ଗାଳୀ ଆଦୌ ଓଡ଼ିଆ କହି ଜାଣନ୍ତିନି କି ପଢ଼ି ଜାଣନ୍ତିନି । ବଙ୍ଗଳାରେ ମୋତେ କହିଲେ—ଓ କପି ହଚ୍ଛେ ନା ? ତା' ପରେ ମତେ କିଛି କହିବାର ସୁଯୋଗ ନ ଦେଇ ଓ କାଗଜରେ କ'ଣ ଲେଖା ଅଛି ସେକଥା ନ ଜାଣି ନ ବୁଝି ମୋ ଖାତା ଉପରେ ଲେଖିଦେଲେ—"କପି କରୁଥିବା ଯୋଗୁ ଦଶନମ୍ବର କାଟିଦିଅ ।" ହାତରେ କାଗଜ ଖଣ୍ଡିକ ନେଇ ଚାଲିଗଲେ । ପ୍ରଭାକର କାନ୍ଦ କାନ୍ଦ ହେଇଗଲାଣି, ଅନ୍ୟ ପିଲାମାନେ ଚାହିଁ ରହିଛନ୍ତି, ମୁଁ ଓଡ଼ିଆରେ କପି କରିବି ଏକଥା କେହି ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହନ୍ତି । ଅତି ବିନୟ ସହକାରେ ମୁଁ ଏଠି କହୁଚି ଯେ, ମୁଁ ଓଡ଼ିଆ ସାହିତ୍ୟରେ ଏପର୍ଯ୍ୟନ୍ତ ଭଲ ନମ୍ବର ରଖି-ଆସିଚି । ଏବର୍ଷ ସ୍କୁଲରେ ମୋଟେ ଷାଠିଏ ଦିନ ଉପସ୍ଥିତ ଥିଲିବୋଲି ସବୁ ସବ୍‌ଜେକ୍ଟରେ କିପରି ପାସ୍ ନମ୍ବର ରଖିବି, ସେଇଥିପାଇଁ ମୋର ଚେଷ୍ଟାର ଅନ୍ତ ନ ଥିଲା—ଅଥଚ ଇଏ ପ୍ରକୃତ ତଥ୍ୟ କ'ଣ ନ ବୁଝି ମୋ ଖାତାରୁ ଏକାବେଳେକେ ଦଶନମ୍ବର କାଟିଦେଲେ । ମୋର ସେ ପରିସ୍ଥିତିରେ ଦଶନମ୍ବର କିଛି କମ୍ ନୁହେଁ । ସେଦିନ ପରୀକ୍ଷା ଶେଷ ହେଲା । ତା'ପରଦିନ ଇତିହାସ ଓ ସଂସ୍କୃତ । ଗତ ଦୁଇବର୍ଷ ମୁଁ ସଂସ୍କୃତରେ ଜଣେ କୃତୀ ଛାତ୍ର ବୋଲି ଶିକ୍ଷକ ଶ୍ରୀଯୁକ୍ତ ଶ୍ରୀକଣ୍ଠ ଶାସ୍ତ୍ରୀ ଓ ମୋର ସହପାଠୀମାନେ ଜାଣିଥିଲେ । କିନ୍ତୁ ଏ ବର୍ଷ ମୁଁ ସଂସ୍କୃତ ଆଦୌ ପଢ଼ି ନାହିଁ କହିଲେ ଚଳେ ।

ପରୀକ୍ଷା ହଲ୍‌ରେ ସଂସ୍କୃତ ପ୍ରଶ୍ନ ପତ୍ରଟି ହାତରେ ଧରି ଆଖି ବୁଲାଇ ଆଣିବା ପରେ ମୁଁ ଜାଣିପାରିଲି ଯେ, ଯେହେତୁ ଏ ବର୍ଷ ମୁଁ ସଂସ୍କୃତ ପ୍ରାୟ ପଢ଼ି ନାହିଁ, ଏ ପରୀକ୍ଷାରେ ମୁଁ ଅତି ନିମ୍ନ ମାନର ନମ୍ବର ପାଇବି। ପୁଣି ଏ ବର୍ଷ ଷଣ୍ମାସିକ ପରୀକ୍ଷା ମୁଁ ଦେଇନି। ଗତବର୍ଷ ବାର୍ଷିକ ପରୀକ୍ଷାରେ ଖୁବ୍ ଭଲ ନମ୍ବର ରଖିଥିଲି। ସେଇ ପିଲା ମୁଁ, ଏ ବର୍ଷ ହୁଏତ ତିରିଶି ପଇଁତିରିଶିରୁ ବେଶୀ ମାର୍କ ପାଇବିନି। ଆଖିରେ ଲୁହ ଜମି ଆସିଲା। ଏତିକିବେଳେ ଆମର ଆଉ ଜଣେ ଶିକ୍ଷକ ଶ୍ରୀ ଲମ୍ବୋଦର କର ଡାକି ଡାକି ଆସିଲେ—"Oriya in lieu of Sanskrit" ଅର୍ଥାତ୍ ସଂସ୍କୃତ ପରିବର୍ତ୍ତେ ଓଡ଼ିଆ ! ତା' ଅର୍ଥ ଯେଉଁ ଛାତ୍ରଟି ସଂସ୍କୃତ ପଢ଼ିବାକୁ ନ ଚାହିଁବ ସିଏ ଗୋଟିଏ ଓଡ଼ିଆପତ୍ର ନେଇପାରିବ। ଏହା କେବଳ ଦଶମ ଓ ଏକାଦଶ ଶ୍ରେଣୀ ପାଇଁ ପ୍ରଯୁଜ୍ୟ। ପ୍ରତିବର୍ଷ ପ୍ରାୟ ପନ୍ଦର କୋଡ଼ିଏ ଜଣ ଛାତ୍ର ଏମିତି ସଂସ୍କୃତ ପରିବର୍ତ୍ତେ ଓଡ଼ିଆ ନେଇଥା'ନ୍ତି। ଶ୍ରୀଯୁକ୍ତ ଲମ୍ବୋଦର କର ଡାକି ଡାକି ଆସିବାବେଳେ ମୁଁ ମୋର ସଂସ୍କୃତ ପତ୍ରଟି ଲୁଚାଇରଖି ତାଙ୍କ ଆଡ଼କୁ ହାତ ବଢ଼ାଇ ଦେଲି। ସେ ପ୍ରଶ୍ନ ପତ୍ରଟି ଦେବା ସମୟରେ ମତେ ଦେଖି କହିଲେ—କି ହୋ ତମକୁ ତ ମୁଁ କେବେ ମୋ' କ୍ଲାସ୍‌ରେ ଦେଖିନି।···ମୁଁ କହିଲି—ନାଇଁ ସାର୍ ମୁଁ ଆଜି, ଏଇଠି ସଂସ୍କୃତ ପରିବର୍ତ୍ତେ ଓଡ଼ିଆ ନେଉଛି। ···ପଣ୍ଡିତ ଶ୍ରୀ କର ବିରକ୍ତ ହୋଇ ମୋ' ହାତକୁ ପ୍ରଶ୍ନ ପତ୍ରଟି ବଢ଼ାଇ ଦେଇ କହିଲେ —"କର, ଯାହା ତମର ଇଚ୍ଛା ! ସିଏ ଜାଣିଶୁଣି ଫେଲ୍‌ହେବ, ତାକୁ କିଏ କ'ଣ କରିବ ?" ଏତିକି କହି ସେ ଚାଲିଗଲେ। ପ୍ରଶ୍ନ ପତ୍ରଟି ପଢ଼ି ମୁଁ ଜାଣିଲି ଯେ, ରାଧାନାଥ, ଶଶିଭୂଷଣ ରାୟ ଓ ନନ୍ଦକିଶୋର ବଳ ପ୍ରଭୃତିଙ୍କ ପୁସ୍ତକମାନଙ୍କରୁ ବହୁ ପ୍ରଶ୍ନ ଆସିଛି ଓ ଏ ସମସ୍ତ ରଚନା ମୁଁ ପୂର୍ବରୁ ପଢ଼ିଛି। ମନରେ ଆଉ କିଛି ଗ୍ଲାନି ରହିଲା ନାହିଁ। ଶାନ୍ତ ମନରେ ବସି ଉତ୍ତର ସବୁ ଲେଖୁଛି, ଟିକିଏ ପଛକୁ ଫେରିଚାହିଁ ଦେଖିଲି, ନିଜେ ଶାସ୍ତ୍ରୀ ମହାଶୟ ନୀରବରେ ମୋ' ପଛପଟେ ଠିଆହୋଇ ମୋର ଉତ୍ତର ସବୁ ପଢ଼ୁଛନ୍ତି। କହି ପାରୁନାହିଁ ସେଦିନ ତାଙ୍କୁ ଦେଖି ମୁଁ ଡରିଗଲି କି ବ୍ୟସ୍ତ ବିଚଳିତ ହେଇପଡ଼ିଲି। ମତେ ଆଉ ଭାବିବାର ସମୟ ନ ଦେଇ ସେ ସଙ୍ଗେ ସଙ୍ଗେ ସସ୍ନେହରେ ମୋର ପିଠି ଆପୁଡ଼େଇ ଚାଲିଗଲେ। ମୁଁ ଜାଣିପାରିଲି ମୁଁ ତାଙ୍କର ସବ୍‌ଜେକ୍ଟ ସଂସ୍କୃତ ଛାଡ଼ି ଓଡ଼ିଆ ନେଇଥିବାରୁ ସେ ମୋ ଉପରେ ବିରକ୍ତ ହୋଇନାହାନ୍ତି। ପରୀକ୍ଷା ସମୟ ଶେଷ ହୋଇ ଆସୁଛି, ମୋର ଲେଖା ମଧ୍ୟ ଶେଷ ହୋଇ ଯାଇଛି, କେବଳ ଗୋଟିଏ ପ୍ରଶ୍ନ—"ମାଟିରେ ଯାହା ତିଆରି" ଏହାକୁ ଗୋଟିଏ ଶବ୍ଦରେ ପରିଣତ କର।" ଏହାର ଉତ୍ତର ହୁଏତ ମୁଁ ଜାଣିଥିବି, କିନ୍ତୁ ସେତେବେଳେ ମୋର କିଛି ମନେ ପଡ଼ୁନାହିଁ, ପ୍ରଶ୍ନଟିରେ

ନାଲଗାର ଭୁଲେଇ ବସିଚ । ଏଉକବେଳେ ମୋ' କାନରେ କଏ ଅତି ନମ୍ର ସ୍ୱରରେ "ମୁଣ୍ଡସ୍ୱ" କହିଦେଇ ଚାଲିଯାଉଚନ୍ତି । ଦେଖିଲି ଆଉ କେହି ନୁହଁନ୍ତି, ସ୍ୱୟଂ ପଣ୍ଡିତ ଶ୍ରୀକଣ୍ଠ ଶାସ୍ତ୍ରୀ । ମନହେଲା ସେଇ ମୁହୂର୍ତ୍ତରେ ଉଠିଯାଇ ତାଙ୍କ ପାଦଧରି ପଡ଼ିଯାଇଥା'ନ୍ତି । ସେଦିନ ସନ୍ଧ୍ୟାରେ ମୁଁ ତାଙ୍କ ବାସଭବନକୁ ଗଲି । ଲୁହଭରା ଆଖିରେ ତାଙ୍କୁ ପ୍ରଣିପାତ ଜଣାଇଲି । ତାଙ୍କଠାରୁ ଆଶ୍ୱାସନା ଓ ଆଶୀର୍ବାଦ ପାଇଲି । ପ୍ରଭାକର ହାତରୁ ମୁଁ କପି କାଗଜ ନେଇଥିବା ଅପରାଧରେ ମୋର ଯେଉଁ ଦଶମାର୍କ କଟିଯାଇଥିଲା, ସେ ପ୍ରସଙ୍ଗ ବିଷୟରେ ଆଲୋଚନା ପରେ ମୁଁ ଦୋଷମୁକ୍ତ ହୋଇ ମୋର ଦଶମାର୍କ ଫେରପାଇଲି ।

## ରମାଦେବୀ

ପୂର୍ବରୁ ତ କଂଗ୍ରେସ ଅଫିସ୍‌ରୁ ଶୁଣିଥିଲୁ ଯେ, ସ୍ୱାଧୀନତା ଆନ୍ଦୋଳନ ପାଇଁ ସ୍କୁଲ ଛାତ୍ରମାନଙ୍କୁ କଂଗ୍ରେସ୍ ତରଫରୁ ନିର୍ଦ୍ଦେଶ ବା ଆହ୍ୱାନ ଦିଆଯାଇ-ନାହିଁ । କିଛିଦିନ ପରେ ଏଭଳି ନିର୍ଦ୍ଦେଶ ଛାତ୍ରମାନଙ୍କ ପାଇଁ ଆସିଲା । ପ୍ରଥମେ କୁହାଗଲା ଯେ, ହାଇସ୍କୁଲ ମାନଙ୍କରେ ପିକେଟିଂ କରି ଛାତ୍ରମାନେ ଯେପରି ସ୍ୱେଚ୍ଛାକୃତ ଭାବେ ସ୍କୁଲ୍ ଶିକ୍ଷାଛାଡ଼ି ବାନରସେନା ହେବେ ବା ଅନ୍ୟ ଭାବରେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବେ, ସେ ବ୍ୟବସ୍ଥା କରାଯାଉ । ସେତେବେଳେ କଟକ ସହରରେ ମୋଟ ପାଞ୍ଚଟି ହାଇସ୍କୁଲ ଥିଲା । କଟକ ସହରର ଚାଳିଶହଜାର ଲୋକସଂଖ୍ୟା ପାଇଁ ପାଞ୍ଚଗୋଟି ହାଇସ୍କୁଲ ବୋଧହୁଏ ଯଥେଷ୍ଟ । ସ୍କୁଲ ଗୁଡ଼ିକ ହେଲା, ରେଭେନ୍‌ସା କଲିଜିଏଟ୍ ସ୍କୁଲ, ପ୍ୟାରୀମୋହନ ଏକାଡେମୀ, ଟାଉନ୍ ଭିକ୍ଟୋରିଆ ହାଇସ୍କୁଲ (ବର୍ତ୍ତମାନର ଭକ୍ତମଧୁ ବିଦ୍ୟାପୀଠ) ମିଶନ୍ ହାଇସ୍କୁଲ ଓ ପ୍ରସ୍ୱିଦ୍ ସେମିନାରୀ । ରେଭେନ୍‌ସା ଗାର୍ଲସ ସ୍କୁଲକୁ ଏଥିରୁ ବାଦ୍-ଦିଆଯାଇଥିଲା । ସେଦିନ ଆମେ ସ୍କୁଲରେ ପହଞ୍ଚିଲାବେଳକୁ ଦେଖିଲୁ କେତେଜଣ ସତ୍ୟାଗ୍ରହୀ ଭିକ୍ଟୋରିଆ ସ୍କୁଲ୍ ଫାଟକ ସମ୍ମୁଖରେ ଶୋଇଯାଇ ସତ୍ୟାଗ୍ରହ କରୁଚନ୍ତି । ସଞ୍ଚାଳକମାନଙ୍କ ମଧ୍ୟରେ ଅଛନ୍ତି, ସ୍ୱୟଂ ରମାଦେବୀ । ସେତେବେଳକୁ ତାଙ୍କର ବୋହୂପଣିଆ ମଉଳଣ ପଡ଼ି ନାହିଁ । ନାକପୁଡ଼ାର ଚିହ୍ନ କହିଦେଉଚି ହୁଏତ ସେଦିନ ସକାଳେ ହିଁ ନାକପୁଡ଼ାରୁ ହୀରାଖଚିତ ଫୁଲ କାଢ଼ି ନିଆଯାଇଚି । ମାତ୍ର ଗୋଟିଏ ଦିନ ପୂର୍ବରୁ ଯାହାଙ୍କର ନିତିପିନ୍ଧା ସୁନା ଅଳଙ୍କାରର ଓଜନ ପ୍ରାୟ ପନ୍ଦର କୋଡ଼ିଏ ଭରି କମ୍ବା ତତୋଧିକ ଥିଲା, ସେଦିନ ମୁଁ ଦେଖୁଚି, ତାଙ୍କର ପାଣିକାଚ ସହ ଦୁଇହାତରେ ଦୁଇପଟି ସୁନାଚୁଡ଼ି ଓ ବେକରେ ଗୋଟିଏ ସରୁ ସୁନାଚେନ୍—ଦେହରେ ମୋଟା ଖଦଡ଼ର ଶାଢ଼ୀ । ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ପରିବାରର ଝିଅ ସେ । ବିବାହ କରିଚନ୍ତି ତତ୍‌କାଳୀନ ବରିଷ୍ଠ ଓକିଲ ଓ

ଜମିଦାର ଶ୍ରୀଯୁକ୍ତ ଗୋକୁଳାନନ୍ଦ ଚୌଧୁରୀଙ୍କ ଜ୍ୟେଷ୍ଠପୁତ୍ର କଂଗ୍ରେସ ନେତା ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କୁ । ଏହି ଚୌଧୁରୀ ପରିବାରଙ୍କ ପୈତୃକ ବାସସ୍ଥାନ ହେଉଛି, ଜଗତ୍‌ସିଂହପୁର୍ ଅଞ୍ଚଳର ଖେରସ ଗ୍ରାମରେ । ଖେରସରୁ ଆମ ଗାଁର ଚଢ଼େଇଉଡ଼ା ଦୂରତ୍ୱ, ପ୍ରାୟ ଦେଢ଼ମାଇଲରୁ ବେଶୀ ନୁହଁ । ସେଇ ଦୃଷ୍ଟିରୁ ମୁଁ ଯଦି ସେଦିନର ରମାଦେବୀଙ୍କୁ ଆମ ଗାଁ'ର ବୋହୂବୋଲି କୁହେ, ତେବେ ତାଙ୍କୁ ଓ ତାଙ୍କ ପରିବାରକୁ ଅପମାନିତ କରିବାରେ ମୁଁ ଦୋଷୀ ବୋଲି ମତେ କେହି କହିବେ ନାହିଁ । କିନ୍ତୁ ତାଙ୍କୁ ଆଜି ମୁଁ, କି ବେଶରେ ଦେଖୁଚି ! ଏଥିରେ ମୋ' ଆଖି ଲୁହ ଛଳ ଛଳ ହେଇଯିବ, ନା ତାଙ୍କର ଏ ଦେଶସେବା ପାଇଁ ଆନନ୍ଦରେ ମୁଁ ଉଲ୍ଲସି ଉଠିବ !! ଇଏ କ'ଣ ଚୌଧୁରୀବଂଶର ସେଇ ବୋହୂ, ଯାହାଙ୍କ ଉପରେ ଭୁଲ୍‌ରେ ଟିକେ ଆଖି ପଡ଼ିଯାଇଥିଲା ବୋଲି ତାଙ୍କ ଶ୍ୱଶୁର ଘରର ଏକ ସମ୍ପର୍କୀୟ ପରିବାରର ଜଣେ ଗୁମାସ୍ତା ପ୍ରାଣ ବିକଳରେ କଟକ ସହରରୁ ପ୍ରାୟ ଚାଳିଶ ମାଇଲ୍ ବାଟ କେବଳ ଦୌଡ଼ି ଦୌଡ଼ି ପଳାଇ ଯାଇଥିଲା ! ···ଅବଶ୍ୟ ମୋର ସେଇ କିଶୋର ଅବସ୍ଥାରେ କଂଗ୍ରେସ ପ୍ରତି ମୋର ସମର୍ଥନ ଥିଲା । ଛାତ୍ରାବସ୍ଥାରେ ଗୋଟିଏ ଦିନ ପୋଲିସ୍ ଥାନାରେ ମତେ ଅଟକାଇ ରଖାଯାଇଥିଲା । ତେବେ ବି ସେଦିନର ଚୌଧୁରୀ ବଂଶର ବଧୂ ଓ ଆଜିର ପରଲୋକଗତା ମା' ରମାଦେବୀଙ୍କୁ ମୁଁ ସେଦିନ ଆମ କଟକ ଟାଉନ୍ ଭିକ୍ଟୋରିଆ ହାଇସ୍କୁଲ ଫାଟକ ସମ୍ମୁଖରେ ସେ ବେଶରେ ଦେଖି ତାଙ୍କୁ ନିନ୍ଦା କରିବି କି ତାଙ୍କ ପାଦତଳେ ପଡ଼ିଯାଇ ତାଙ୍କ ପାଦସ୍ପର୍ଶ କରିବି କିଛି ସ୍ଥିର କରିପାରୁ ନ ଥାଏ । ··· ଅଭିଜାତ ପରିବାରର କୁଳବଂଶର ସୁଶ୍ରୀ, ସୌମ୍ୟା ରମାଦେବୀଙ୍କୁ ସେଦିନ ସେ ପର୍ଯ୍ୟନ୍ତ ମୁଁ କେବଳ ଥରେ ଅଧେ ଦେଖିଥିଲି -ତାଙ୍କର କଣ୍ଠସ୍ୱର ପଦେ ଶୁଣି ନ ଥିଲି । ପିଲମାନେ ଆସି ଜମାହେଇ ଗଲେଣି, ଏତିକିବେଳେ ସେ କଥା କହିଲେ । କହିଲେ—ଶୁଣ ପିଲମାନେ, ତୁମ ପାଠପଢ଼ା ବନ୍ଦ ହେବ ନାହିଁ । ପିଲଙ୍କଠୁ ବୟସ୍କଯାଏ ଆମ ଦେଶର ଚାଳିଶ୍ କୋଟି ଲୋକ ଯଦି ଆଜି ଏକ ସ୍ୱରରେ ଇଂରେଜମାନଙ୍କୁ କହିଉଠନ୍ତି—ଏ ଦେଶ ଆମର, ତୁମେ ଆଜି ଏ ଦେଶଛାଡ଼ି ଚାଲିଯାଅ, ତେବେ ସେମାନେ ଗୋଟିଏ ଦିନରେ ଏ ଦେଶଛାଡ଼ି ଚାଲିଯିବେ । ତା'ପରେ ତୁମେ ସ୍ୱାଧୀନ ଭାରତର ଛାତ୍ର ହୋଇ ପୁଣି ପଢ଼ାପଢ଼ି କରିବ । ତା' ନ ହେଲେ ତୁମେ ଯେତେ ଆଲ୍‌ଜେବ୍‌ରା କି ଆରିଥମେଟିକ୍ ପଢ଼ିଲେ ତୁମେ ସେଇ ଇଂରେଜମାନଙ୍କର ଗୋଲାମ ହେଇ ରହିବ । ପିଲମାନେ ଫାଟକ ଏ ପାଖରେ । ଫାଟକ ସେ ପାଖରେ ସ୍କୁଲ୍ ପ୍ରାଙ୍ଗଣରେ ହେଡ଼ମାଷ୍ଟର ଓ ଅନ୍ୟ ଶିକ୍ଷକମାନେ ପିଲମାନଙ୍କୁ ସ୍କୁଲ୍ ଯିବାପାଇଁ ନିର୍ଦ୍ଦେଶ ଦେଉଚନ୍ତି । ହୁଏତ କେତେକ ପିଲ ଯିବାକୁ

ଇଚ୍ଛୁକ । ସ୍କୁଲ୍ ଫାଟକ ଏ ପାଖରେ ପ୍ରାୟ ଆଠ/ଦଶ ଜଣ ସତ୍ୟାଗ୍ରହୀ ଗେଟ୍ ସମ୍ମୁଖରେ ଶୋଇପଡ଼ି ଭିତରକୁ ଯିବାର ପଥ ସମ୍ପୂର୍ଣ୍ଣ ଅବରୋଧ କରିଦେଇଚନ୍ତି । ହେଡ୍‌ମାଷ୍ଟର ଛାତ୍ରମାନଙ୍କୁ ନିର୍ଦ୍ଦେଶ ଦେଉଚନ୍ତି—ତୁମେମାନେ ସତ୍ୟାଗ୍ରହୀମାନଙ୍କୁ ଡେଇଁପଡ଼ି ସ୍କୁଲକୁ ଆସ । କିନ୍ତୁ ଛାତ୍ରମାନଙ୍କର ବିବେକ ଓ ସଂସ୍କାର ତାଙ୍କୁ ବାଧା ଦେଉଚି । ସେମାନେ ଡେଇଁଯାଇ ପାରୁ ନାହାଁନ୍ତି । ଅବଶେଷରେ ଜଗତ୍‌ସିଂହପୁର ଝୋରସ୍ ଗ୍ରାମର କୁଳବଧୂ ଶ୍ରୀମତୀ ରମାଦେବୀ ତାଙ୍କ ସ୍ୱାଧୀନତା ସଂଗ୍ରାମର ପ୍ରଥମ ଅଭିଯାନରେ ବିଜୟିନୀ ହେଲେ । ଗୋଟିଏ ବି ଛାତ୍ର ସ୍କୁଲକୁ ଯାଇ ନ ପାରି ଘରକୁ ଫେରିଗଲେ । ଅନ୍ୟ ଗୃହଗୋଟି ହାଇସ୍କୁଲ୍‌ରେ ମଧ୍ୟ ସତ୍ୟାଗ୍ରହ ହୋଇଥିଲା । କିନ୍ତୁ ଭିକ୍ଟୋରିଆ ସ୍କୁଲ୍‌ପରି ଅନ୍ୟ କୌଣସି ସ୍କୁଲରେ ସତ୍ୟାଗ୍ରହ ଏଭଳି ସମ୍ପୂର୍ଣ୍ଣ ରୂପେ ସାଫଲ୍ୟ ଲାଭ କରିପାରି ନ ଥିଲା ।

## ଉତ୍କଳ ଗୌରବ ମି. ଦାସ

ମୁଁ ପ୍ରାୟ କଟକରେ ଦୁଇବର୍ଷରୁ ଊର୍ଦ୍ଧ୍ୱ ସମୟ ପଢ଼ିଲି ପରେ ମୋ' ଜୀବନରେ ଏକ ସ୍ୱପ୍ନ ସାର୍ଥକ ହେଲା । ମୁଁ ପଢ଼ିବା ପାଇଁ କଟକ ଆସିବା ପରେ ଦୁଇ ବର୍ଷ ରହି ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ମାହାତ୍ମ୍ୟ ସମ୍ପର୍କରେ ଅନେକ କଥା ଶୁଣିଥିଲି—କିନ୍ତୁ ସ୍ୱଚକ୍ଷୁରେ ତାଙ୍କୁ କେବେ ଦେଖିବାର ସୌଭାଗ୍ୟ ମୋର ହୋଇପାରି ନ ଥିଲା । ଏତିକିବେଳେ ସେ ସୁଯୋଗ ମତେ ମିଳିଲା । ମୁଁ ତ ରହୁଥିଲି କାଠଯୋଡ଼ି ହଷ୍ଟେଲ୍‌ରେ । ଶୀତଦିନ ଓ ଖରାଦିନ ବିଳମ୍ବିତ ଅପରାହ୍ନରେ କଟକ ସହରର ବହୁଲୋକ କାଠଯୋଡ଼ି ନଦୀବନ୍ଧ ଅଞ୍ଚଳକୁ ଭ୍ରମଣ ପାଇଁ ଆସନ୍ତି । ଆମେ ହଷ୍ଟେଲ୍‌ର ଛାତ୍ରମାନେ ମଧ୍ୟ ପ୍ରାୟ ନଦୀବନ୍ଧକୁ ଆସୁ । ମଧୁବାବୁ ··ନା, ଆଉ କିଛି ଲେଖିବା ପୂର୍ବରୁ ଏଇଠି କହିରଖେ ଯେ, ମଧୁବାବୁ ଓଡ଼ିଶାରେ ତିନୋଟି ନାମରେ ପରିଚିତ ଥିଲେ । ଯଥା– ସହରର ଶିକ୍ଷିତ ମହଲରେ ସେ ଥିଲେ ମିଷ୍ଟର୍ ଦାସ, ମଫସଲ ଅଞ୍ଚଳରେ ଥିଲେ ମଧୁବାରିଷ୍ଟର ଆଉ ସାଧାରଣରେ ମଧୁବାବୁ···ମି. ଦାସ ରହୁଥିଲେ ବର୍ତ୍ତମାନର ଶୈଳବାଳା ମହାବିଦ୍ୟାଳୟ ଓ ତତ୍‌ସଂଲଗ୍ନ ବିସ୍ତୃତ ବାସଭବନରେ । ସେଦିନ ଏକ ଶୀତଳ ଅପରାହ୍ନରେ ଆମେମାନେ କାଠଯୋଡ଼ି କୂଳରେ ବୁଲାଚଲା କରୁଚୁ, ଏତିକିବେଳେ ଗୋଟିଏ ଫୋର୍ଡ଼ ହୁଡ୍‌ବାଲା ଗାଡ଼ି ଆସି କଟକ କଲେକ୍ଟରେଟ୍ ହତା ନଦୀ କୂଳରେ ଯେଉଁଠି ଶେଷ ହୋଇଚି, ସେଇ ସ୍ଥାନରେ ଅଟକିଲା । ଡ୍ରାଇଭର୍ ଦରଜା ଖୋଲିଦେଲା, ଗାଡ଼ିରୁ ମି. ଦାସ ଓ ଆଉ ଜଣେ ଭଦ୍ରଲୋକ ଓହ୍ଲାଇଲେ ଓ ନଦୀବନ୍ଧ ତଳକୁ ଲାଗି ସଡ଼କରେ ନ ଯାଇ ନଦୀବନ୍ଧ ଉପରକୁ ଉଠିଲେ । ମି. ଦାସ

ଆସିଚନ୍ତି, ଏ ଗୁଞ୍ଜରଣ ସଙ୍ଗେ ସଙ୍ଗେ ନଦୀ ବନ୍ଧରେ ଖେଳିଗଲା । ହାତରେ ଦାମିକା ବାଡ଼ି, ଦେହରେ ସେମିତି ସୁଟ୍ ଓ ଟାଇ, ମଥାରେ ତାଙ୍କର ଚିରପରିଚିତ ସେଇ ଶୁକ୍ଳ ବସ୍ତ୍ରର ପଗଡ଼ି । ନଦୀବନ୍ଧରେ ଆମେ ପ୍ରାୟ ସମସ୍ତେ ତାଙ୍କୁ ସସମ୍ମାନ ପ୍ରଣାମ ଜଣାଇଲୁ । ସିଏ ନଦୀବନ୍ଧରେ ଚାଲି ଚାଲି ଯାଉଥା'ନ୍ତି –ତଳ ରାସ୍ତାରେ ତାଙ୍କ ଫୋର୍ଡ଼ ଗାଡ଼ିଟି ଖାଲି ଖାଲି ଯାଉଥାଏ । ବହୁଲୋକ ତାଙ୍କୁ ଅନୁସରଣ କରୁଥାନ୍ତି, ମୁଁ ମଧ୍ୟ ସେଦିନ ତାଙ୍କ ପଛେ ପଛେ କାଠଯୋଡ଼ିର ସେଇ ବିଖ୍ୟାତ ବୁରୁଜ ପର୍ଯ୍ୟନ୍ତ ଗଲି । ଏଠି ଉଲ୍ଲେଖଯୋଗ୍ୟ ଯେ ସେତେବେଳେ ଅର୍ଥାତ୍ ବ୍ରିଟିଶ୍-ଶାସନବେଳେ କାଠଯୋଡ଼ି ନଦୀବନ୍ଧ ସଂଲଗ୍ନ ମାଙ୍କଡ଼ା ପଥରର ଲମ୍ବା ଲମ୍ବା ପାହାଚ ଓ ତତ୍ ସଂଲଗ୍ନ ନଈବାଲିର ଏକ ବିସ୍ତୃତ ଅଂଶ ଖୁବ୍ ପରିଷ୍କାର ପରିଚ୍ଛନ୍ନ ରହୁଥିଲା । ପୋଲିସ୍ କନେଷ୍ଟବଲ୍ ପହରାରେ ରହୁଥିଲେ । ଯଦି କେହି କୌଣସି ସ୍ଥାନରେ କିଛି ଅପରିଷ୍କାର କର୍ମ କଲା, ତେବେ ମ୍ୟୁନିସିପାଲିଟିର ପାଞ୍ଚ ଆଇନ୍ ଧାରା ଅନୁସାରେ ସିଏ ଦଣ୍ଡଭୋଗ କରୁଥିଲା । ଏଇ ବ୍ୟବସ୍ଥା ଯୋଗୁ ସେତେବେଳେ ନଦୀବନ୍ଧରେ ଭ୍ରମଣ କଲାବେଳେ ମୁକ୍ତ ନିର୍ମଳବାୟୁ ସେବନ କରିବାକୁ ମିଳୁଥିଲା । ମୋର ଧାରଣା ଜନ୍ମିଥିଲା—ମି. ଦାସ ସେଦିନଟି ପାଇଁ କାଠଯୋଡ଼ି କୂଳକୁ ବୁଲି ଆସିଥିଲେ । କାରଣ ଏହା ପୂର୍ବରୁ ସେ ଏ ଅଞ୍ଚଳକୁ ବୁଲିଆସିବା କେବେ ମୋ' ଦୃଷ୍ଟିରେ ପଡ଼ି ନ ଥିଲା । କିନ୍ତୁ ତା' ପରଦିନ ସେ ଠିକ୍ ସେଇ ସମୟ ସେଇ ବେଶ ପୋଷାକ ଓ ସେଇ ଗାଡ଼ିରେ ଆସି ସେଇ ସ୍ଥାନରୁ ଗାଡ଼ିରୁ ଓହ୍ଲାଇ ନଦୀବନ୍ଧରେ ଚାଲିଲେ । ମୁଁ ପ୍ରାୟ ବହୁଦିନ ଧରି ତାଙ୍କ ପଛେ ପଛେ ଯାଇଥିଲି । ମତେ ସବୁଠୁ ଭଲ ଲାଗୁଥିଲା ତାଙ୍କ ମଥାର ସେଇ ଶ୍ୱେତପଗଡ଼ିଟି । କେବେ ତାଙ୍କୁ ମଥାରେ ଅନ୍ୟ କିଛି ଟୋପି ବା ହ୍ୟାଟ୍ ବ୍ୟବହାର କରିବା ମୁଁ ଦେଖିନାହିଁ ।

ମଧୁବାବୁ—ମିଷ୍ଟର ଦାସ ! ସେ ଥିଲେ ଜଣେ ଅତି—ଅତି ବିଖ୍ୟାତ ବିଚକ୍ଷଣ ଆଇନଜ୍ଞ । ପରେ ବିହାର ଓଡ଼ିଶା କାଉନ୍‌ସିଲରେ ସେ ମନ୍ତ୍ରୀପଦ ଅଳଂକୃତ କରିଥିଲେ । ଆଇନ୍ ଅଦାଲତରେ ବହୁ ମକଦ୍ଦମାରେ ସେ ବିଜୟଲାଭ କରିଥିବାର ସମସ୍ତେ ଜାଣନ୍ତି । ···ମୁଁ ଜାଣିଥିବା ଗୋଟିଏ ବିଚିତ୍ର ଘଟଣାର ଉଲ୍ଲେଖ ମୁଁ ଏଠି କରୁଚି । ···ତାଙ୍କ ନିକଟକୁ ଗୋଟିଏ କେଶ୍ ଆସିଲା, ହତ୍ୟା ଅପରାଧରେ ଆସାମୀକୁ ଜଜ୍‌କୋର୍ଟରେ ଫାଶୀଦଣ୍ଡରେ ଦଣ୍ଡିତ କରାଯାଇଚି । ଏ ରାୟ ବିରୋଧରେ ଆସାମୀ ତରଫରୁ ହାଇକୋର୍ଟରେ ଅପିଲ୍ ହେଲା ଓ ଏ ଅପିଲ୍ କେଶ୍‌ଟି ମଧୁବାବୁଙ୍କ ହାତକୁ ଆସିଲା । ଶୁଣାଣି ଦିନ ମି. ଦାସ ନିଜର ବକ୍ତବ୍ୟରେ କହିଲେ—ଏ ମକଦ୍ଦମାର ଆସାମୀ ସମ୍ପୂର୍ଣ୍ଣ ରୂପେ ନିର୍ଦ୍ଦୋଷ । ସେ ନିର୍ଦ୍ଦୋଷରେ ଖଲାସ ହେଇଯିବା କଥା । ଏଥିରେ ସରକାରୀ ଓକିଲ ସଙ୍ଗେ ସଙ୍ଗେ ଜବାବ୍ ଦେଲେ

ଯେ ପ୍ରକାର ଦିବାଲୋକରେ ତିନିଜଣ ସାକ୍ଷୀଙ୍କ ଉପସ୍ଥିତିରେ ଏ ହତ୍ୟାକାଣ୍ଡ ଘଟିଛି । ତିନିଜଣଯାକ ସାକ୍ଷୀ ସମସ୍ୱରରେ କହିଛନ୍ତି— ସେମାନେ ସ୍ୱଚକ୍ଷୁରେ ଏ ଜଘନ୍ୟ ହତ୍ୟାକାଣ୍ଡ ଦେଖିଚନ୍ତି, ଅତଏବ ଆସାମୀ ପକ୍ଷର ମାନନୀୟ ଓକିଲ ଆସାମୀ ନିର୍ଦ୍ଦୋଷ ବୋଲି କହୁଚନ୍ତି କିପରି ? ଏହାର ଉତ୍ତରରେ ମି. ଦାସ କହିଲେ—ସାକ୍ଷୀମାନେ ସବୁ କିଛି କହିପାରନ୍ତି । ମୁଁ ଶ୍ରୀଯୁକ୍ତ ସରକାରୀ ଓକିଲଙ୍କୁ ନିବେଦନ କରୁଚି, ସେ କୁହନ୍ତୁ—ଆସାମୀ ବାଇଧର ବାରିକର ଅପରାଧ କ'ଣ ? ଉତ୍ତରରେ ସରକାରୀ ଓକିଲ ଟିକେ ହସି କହିଲେ—ଏ ମକଦ୍ଦମା ଆସି ଯେଉଁ ସ୍ତରରେ ପହଞ୍ଚିଲଣି, ସେଥିରେ ପୁଣି ମତେ ଏଭଳି ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିବ ? ଅଦାଲତ ଭିତରେ ଟିକେ ହସର ଲହରୀ ଖେଳିଗଲା । ସରକାରୀ ଓକିଲ କହି ଗ୍ଲଲଚନ୍ତି—ଠିକ୍ ଅଛି, ମୁଁ ମି. ଦାସଙ୍କ ପ୍ରଶ୍ନର ଉତ୍ତର ଦେଉଚି—ଆସାମୀ ବାଇଧର ବାରିକ ରାମଚନ୍ଦ୍ର ଲେଙ୍କାଙ୍କୁ ଗୋଟିଏ ଖଜୁରୀ ଗଛ ଉପରେ ପକାଇ ଗୋଟିଏ ଦାଢ଼ୁଆ କଟୁରୀରେ ହତ୍ୟା କରିଚି । ଏ ଦୃଶ୍ୟ ଦିନ ଏଗାରଟାରେ ଘଟିଚି ଓ ସାକ୍ଷୀମାନେ···ବାଧାଦେଇ ମି. ଦାସ କହିଲେ—ବାସ୍ ବାସ୍, ଏ ସବୁ ବର୍ଣ୍ଣନା କରିବାର ପ୍ରୟୋଜନ କିଛି ନାହିଁ । ଏ କେଶ୍ ପ୍ରସିକ୍ୟୁସନ ହାତକୁ ଯିବା-ପରଠୁ ଏ ପର୍ଯ୍ୟନ୍ତ ଏଇ ତଥାକଥିତ ମୃତ୍ୟୁ ବିବରଣୀର ତଥ୍ୟ ମକଦ୍ଦମା ରେକର୍ଡରେ ଯାହା ଉଲ୍ଲେଖ ଅଛି, ସେତିକ ମାତ୍ର ସରକାରୀ ଓକିଲ ଦୟାକରି ଅଦାଲତରେ ପଢ଼ି ଶୁଣାନ୍ତୁ । ଏଥିରେ ଅଦାଲତରେ ଟିକେ ଗୁଞ୍ଜନ ଖେଳିଗଲା । ତେବେ ସରକାରୀ ଓକିଲ ବେଶ୍ ଦମ୍ଭ ଓ ଦୃଢ଼ତାର ସହ ଅଦାଲତକୁ ସମ୍ବୋଧନ କରି କହିଲେ—My Lord, on the date of occurance, the accused Baidhar Barik murdedred Ramchandra Lenka on a date—palm tree with a sharp weapon···ମି. ଦାସ ସଙ୍ଗେ ସଙ୍ଗେ ଉଠିପଡ଼ି କହିଲେ—Thank you thank you my friend ମୁଁ ମାତ୍ର ଏତିକ ଜାଣିବାକୁ ଗ୍ଲହୁଁଥିଲି । ଏଥିରେ ସମସ୍ତ ବିଚାରାଳୟ କିଛିକ୍ଷଣ ପାଇଁ ସ୍ତବ୍ଧ ହୋଇଗଲା । ହାଇକୋର୍ଟ ଜଜ୍ ମି. ଦାସଙ୍କୁ କହିଲେ—Would you please elaborate Mr. Das ? ···ମି. ଦାସ ଉତ୍ତର ଦେଲେ—Certainly your Lordship । ପ୍ରସିକ୍ୟୁସନ କହୁଚନ୍ତି ଯେ, ବାଇଧର ବାରିକ ରାମଚନ୍ଦ୍ର ଲେଙ୍କାଙ୍କୁ ଗୋଟାଏ ଖଜୁରୀ ଗଛ ଉପରେ ପକାଇ ଗୋଟାଏ କଟୁରୀରେ ହାଣି ହାଣି ମାରିଚନ୍ତି । ଏଇଠି ମୁଁ ଜାଣିବାକୁ ଗ୍ଲହେଁ ଯେ, ଛପନ ବର୍ଷ ବୟସର ଦୁର୍ବଳ ବାଇଧର ବାରିକ କେମିତି କିପରି ଭାବେ ବତିଶବର୍ଷ ବୟସର ଯୁବକ ରାମଚନ୍ଦ୍ର ଲେଙ୍କାଙ୍କୁ ଗୋଟାଏ ଖଜୁରୀ-ଗଛ ଉପରେ ପକାଇ ହାଣିଲା ? ଏଥିରେ ସରକାରୀ ଓକିଲଙ୍କ ସହ ତାଙ୍କ ପକ୍ଷର ଅନ୍ୟମାନେ ହସି ଉଠିଲେ । ଏପରିକି ସ୍ୱୟଂ ହାଇକୋର୍ଟ ବିଚାରପତିଙ୍କ ମୁହଁରେ

ଟିକେ ହସରଧାର ଖେଳିଗଲା । ସରକାରୀ ଓକିଲ କହୁଚନ୍ତି—କ୍ଷମା କରିବେ ମି. ଦାସ, ଖଜୁରୀ ଗଛ ତ ଖଜୁରୀ ଗଛ ! ତା' ଉପରେ ଜଣେ ଲୋକକୁ ପକାଇ ଆଉ ଜଣେ ଲୋକ କଟୁରୀରେ ହାଣିଲା ! ଏଥିରେ ବୁଝିବାର ଆଉ କ'ଣ ଅଛି ? ଉତ୍ତରରେ ମି. ଦାସ କହିଲେ—କପରି ଭାବେ ଜଣେ ବୟସ୍କଲୋକ ତା'ଠାରୁ ବଳବାନ ଓ ସବଳ ଲୋକକୁ ପ୍ରାୟ ଦଶ ବାର ଫୁଟ ଉଚ୍ଚର ଖଜୁରୀଗଛ ଉପରକୁ ଟେକି ନେଇ ମାରିଲା, ଏଇ କଥାଟି ମୁଁ ବୁଝିପାରୁନାହିଁ । ଏଥିରେ ଅଦାଲତ କକ୍ଷରେ ବିଶେଷତଃ ସରକାରୀ ଓକିଲଙ୍କ ଦଳ ଭିତରେ ହସର ଲହରୀ ଖେଳିଗଲା । ଆଶଙ୍କା ହେଉଥିଲା, ଏପରି ହସରେ ହୁଏତ ମି. ଦାସ ଅପମାନିତ ବୋଧ କରିବେ । କିନ୍ତୁ ନା, ଦେଖାଗଲା ମି. ଦାସ ଆମୋଦ ଅନୁଭବ କରୁଚନ୍ତି । ସରକାରୀ ଓକିଲ ମି. ଦାସଙ୍କୁ କହିଲେ—କ୍ଷମା କରିବେ ସାର୍, ଆପଣଙ୍କ ହାତରେ କେଶ୍ ରେକର୍ଡ ! ଆପଣ କ'ଣ ବୁଝିପାରୁ ନାହାଁନ୍ତି ଯେ, ଏ ଖଜୁରୀ ଗଛଟା ଗୋଟାଏ ଜୀଅନ୍ତା ଗଛ ନୁହେଁ—ଏ ଗଛଟା ଗୋଟାଏ କଟା ଖଜୁରୀଗଛ । ଏଇଟା ଭୂମି ଉପରେ ଲମ୍ବହୋଇ ପଡ଼ିଥିଲା । ତା'ରି ଉପରେ ଲୋକଟାକୁ ପକେଇ ଦେଇ ଆସାମୀ ତାକୁ ହତ୍ୟା କରିଥିଲା । ···ଏଥିରେ ମି. ଦାସ ଟିକେ ବି ବିଚଳିତ ନ ହୋଇ ଧୀର ଶାନ୍ତ ଗଳାରେ କହିଲେ—କାହିଁ ? ଏ ସତପଠି ପୃଷ୍ଠା କେଶରେକର୍ଡରେ କୌଣସି ଜାଗାରେ ଏକଥା ଉଲ୍ଲେଖ ନାହିଁ । ନା ପୋଲିସ୍, ନା ପ୍ରସିକ୍ୟୁସନ ନା ନିମ୍ନକୋର୍ଟ, କେହି କୌଣସି ସ୍ଥାନରେ ଉଲ୍ଲେଖ କରିନାହାଁନ୍ତି ଯେ, ଭୂଇଁ ଉପରେ ଲମ୍ବ ହୋଇ ପଡ଼ିଥିବା ଗୋଟାଏ କଟା ଖଜୁରୀ ଗଛ ଉପରେ ଏ ହତ୍ୟାକାଣ୍ଡ ଘଟିଚି । ସବୁଠି ଉଲ୍ଲେଖ ରହିଚି, ଅନ୍ ଏଡ଼େଟ୍ ପାମ୍ ଟ୍ରି ! ଲୋକାରଣ୍ୟ ବିଚାରାଳୟର ସମସ୍ତେ ସ୍ତମ୍ଭୀଭୂତ ହୋଇପଡ଼ିଲେ । ସରକାରୀ ଓକିଲଙ୍କୁ ଦେଖିଲେ ଜଣାଯାଏ, ସେ ଯେପରି ଗୋଟାଏ ସ୍ଥାନରେ ସ୍ଥିରହୋଇ ଠିଆହୋଇ ରହିପାରୁ ନାହାଁନ୍ତି, ଥରଥର କଣ୍ଠରେ ସେ କେବଳ ଏତିକି କହିଲେ—ଖଜୁରୀ ଗଛଟା ଜୀଅନ୍ତା ନୁହେଁ—ଗୋଟାଏ କଟା ଖଜୁରୀ ଗଛ, ଏ କଥାଟା କ'ଣ କେଶ୍‌ରେକର୍ଡରେ ଉଲ୍ଲେଖ ରହିବା ପ୍ରୟୋଜନ ? ଜଜ୍‌ଙ୍କୁ ଚାହିଁ ମି. ଦାସ କେବଳ ଏତିକି କହିଲେ—ଏ ପ୍ରଶ୍ନର ବିଚାର ମୁଁ ମହାମାନ୍ୟ କୋର୍ଟଙ୍କଠାରୁ ପ୍ରାର୍ଥନା କରେ । ମାନ୍ୟବର ହାଇକୋର୍ଟ ଜଜ୍ ମି. ଦାସଙ୍କୁ ଚାହିଁ କହିଲେ—ହଁ ପ୍ରୟୋଜନ ଅଛି । ଗଛଟା ଜୀଅନ୍ତା ନୁହେଁ, ଗୋଟାଏ ମଲାଗଛ—ଏ କଥାଟା ସରକାରୀ ଓକିଲଙ୍କର ଗୋଟିଏ ପ୍ରିଜମ୍ପସନ୍ ମାତ୍ର ! କୋର୍ଟ ଏହାକୁ ଗ୍ରହଣ କରିପାରିବେ ନାହିଁ । ଦି କେଶ୍ ଇଜ୍ ଆଡ଼ଜର୍ନଡ଼ ! ···ପରବର୍ତ୍ତୀ ତାରିଖରେ ଆସାମୀ ନିର୍ଦ୍ଦୋଷରେ ଖଲାସ ହେଲା ବୋଲି ମାନ୍ୟବର ଜଜ୍ ଘୋଷଣା କଲେ ।

ମି. ଦାସ ତ ଦୀର୍ଘକାଳ ଧରି ବିହାର—ଓଡ଼ିଶା କାଉନ୍‌ସିଲର ମନ୍ତ୍ରୀ ଥିଲେ । ମନ୍ତ୍ରୀ ପଦରେ ଥାଇ ସେ ଏ ଦୁଇଟି ପ୍ରଦେଶ ପାଇଁ ଏକ କୀର୍ତ୍ତି ସ୍ଥାପନ କରିଯାଇଚନ୍ତି । ସେତେବେଳେ ପ୍ରଦେଶମାନଙ୍କର ବହୁ ସଂଖ୍ୟାରେ ସ୍ୱାୟତ୍ତଶାସନ ଅନୁଷ୍ଠାନମାନ ସ୍ଥାପିତ ହେଉଥିଲା, ସେଇପରି ଜିଲ୍ଲାବୋର୍ଡ ଓ ମ୍ୟୁନିସିପାଲିଟି ସ୍ୱାୟତ୍ତଶାସନ ସଂସ୍ଥାମାନଙ୍କ ଉପରେ ବହୁ ଦାୟିତ୍ୱସମ୍ପନ୍ନ କର୍ମ ନ୍ୟସ୍ତ ରହୁଥିଲା । ଓଡ଼ିଶାରେ କଟକ ଜିଲ୍ଲାବୋର୍ଡ ଅଧୀନରେ ବାରଶହ-ମାଇଲ ରାସ୍ତା, ତିରିଶିଟି ହସ୍‌ପିଟାଲ ଓ ବହୁ ସଂଖ୍ୟାରେ ସ୍କୁଲ ଓ ଡାକବଙ୍ଗଳା ପ୍ରଭୃତିର ପରିଚାଳନା ନିମନ୍ତେ ବିଧିବଦ୍ଧ ଭାବେ କୌଣସି ଆଇନ୍ ପୁସ୍ତକ ପ୍ରଣୟନ କରାହୋଇ ନ ଥିଲା । ଏହା ହେଉଚି ଏଇ ଶତାବ୍ଦୀର ଦ୍ୱିତୀୟ ବା ତୃତୀୟ ଦଶକର କଥା । ଏଇ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ମି. ଦାସଙ୍କ ଉପରେ ଅର୍ପିତ ହେଲା ଓ ଯଥା କାଳରେ ପୁସ୍ତକ ପ୍ରଣୟନ କର୍ମଟି ସମାପ୍ତ ହେଲା । ପୁସ୍ତକଟିର ନାମ ରହିଲା—"ବିହାର ଆଣ୍ଡ ଓଡ଼ିଶା ଏଲ୍. ଏସ୍ ଜି. ଆକ୍ଟ୍" ବାଇ ଏମ୍. ଏସ୍‌ସି ଦାସ । ଯେ କୌଣସି ଆଇନ୍ କାନୁନ୍ ଜଡ଼ିତ କର୍ମ ଏକ ଜଟିଳତାପୂର୍ଣ୍ଣ ବିଷୟ । କିନ୍ତୁ ମି. ଦାସ ଏଇ ବିରାଟ ଆଇନ୍ ପୁସ୍ତକକୁ ଏପରି ସରଳ ଓ ସହଜ ପ୍ରଣାଳୀରେ ପ୍ରଣୟନ କରିଥିଲେ ଯେ, ସ୍ୱାୟତ୍ତଶାସନ ଅଫିସ୍‌ମାନଙ୍କର ଜଣେ ସାଧାରଣ କିରାଣୀ ମଧ୍ୟ ଏହାକୁ ଅତି ନିର୍ଭୁଲ୍‌ଭାବେ ବ୍ୟବହାର କରିପାରୁଥିଲେ । କଟକ ଜିଲ୍ଲାବୋର୍ଡର ବାରିକ ମିସ୍ତ୍ରୀ ବିଭାଗରେ କିଛି କାଳ କାର୍ଯ୍ୟ କରି ମୋର ଏଇ ସ୍ମରଣୀୟ ଅନୁଭୂତି ରହିଚି ।

**ମଧୁବାବୁଙ୍କ ଧଳାପଗଡ଼ି**—ଏଇ ପ୍ରସଙ୍ଗଟି ଲେଖା ଚାଲିଥିବା-ବେଳେ ମୋ' ପାଇଁ ଗୋଟିଏ ସମ୍ମାନପ୍ରଦ ତଥା ମଧୁମୟ ଘଟଣା ଘଟିଥିଲା । କଟକ ପୌରସଭାର ଚେୟାରମ୍ୟାନ ଶ୍ରୀଯୁକ୍ତ ବିଲୋଚନ କାନୁନ୍‌ଗୋଙ୍କ ଠାରୁ ଗୋଟିଏ ନିମନ୍ତ୍ରଣ ପତ୍ର ପାଇଲି । ସେଥିରେ ଉଲ୍ଲେଖ ଥିଲା ଯେ, କଟକ ସହରରେ ବାସ କରୁଥିବା ବିଭିନ୍ନ କ୍ଷେତ୍ରର ପ୍ରତିଷ୍ଠିତ ବୟସ୍କ ବ୍ୟକ୍ତିମାନଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯିବା ପାଇଁ ଏକ ସମ୍ମିଳନୀର ଆୟୋଜନ କରାଯାଇଚି । ସେଥିପାଇଁ ମୋ' ନିକଟକୁ ଏ ନିମନ୍ତ୍ରଣ ପତ୍ର । ଆଉ କିଛି ନ ହେଉ, ଏକ ଆନନ୍ଦ-ଦାୟକ କୌତୂହଳ ମେଣ୍ଟାଇବା ପାଇଁ ମୁଁ ସଭାରେ ଯୋଗଦେଲି । ଷାଠିଏରୁ ପ୍ରାୟ ଅଶୀ ବର୍ଷ ବୟସର ଶତାଧିକ ଶୁକ୍ଳକେଶ ବୟସ୍କ ବ୍ୟକ୍ତିମାନଙ୍କର ଏକ ସମାବେଶ, ଯାହା ହୁଏତ ଏହା ପୂର୍ବରୁ କେବେ କଟକ ସହରରେ ଅନୁଷ୍ଠିତ ହୋଇ ନ ଥିଲା । ଯଥାଯଥ ସମ୍ବର୍ଦ୍ଧନାର ଅବସରରେ ଉତ୍କଳଗୌରବ ମଧୁସୂଦନଙ୍କ ସେଇ ଶୁକ୍ଳ ବସ୍ତ୍ରର ପଗଡ଼ି ଆମ ପ୍ରତ୍ୟେକଙ୍କୁ ମଥାରେ ପିନ୍ଧାଇଦେଇ ସମ୍ବର୍ଦ୍ଧନା ଜ୍ଞାପନ କରାଗଲା । ନିଶ୍ଚିତଭାବେ ଏହା ମୋ' ପାଇଁ ଏକ ରୋମାଞ୍ଚକର ଅନୁଭୂତି ।

ଯେଉଁ ପଗଡ଼ିଟି ସେଦିନ ନଦୀକୂଳରେ ମି· ଦାସଙ୍କ ମଥାରେ ଦେଖି ମୋ' ନିଜକୁ ମୁଁ ଧନ୍ୟ ମନେ କରିଥିଲି, ସେଦିନ ମ୍ୟୁନିସିପାଲିଟି ହତା ଶହୀଦ୍ ଭବନରେ ସେଇପଗଡ଼ି ମୁଁ ମଥାରେ ପରିଧାନ କରି ସତେ ଯେପରି ବୀର ଦର୍ପରେ ବାହାରି ଆସିଥିଲି ।

**୧୯୩୧ ମସିହାରେ କଟକରେ ଉଡ଼ାଜାହାଜ**—ସେଇ କଟକ ସହର । ସେଇ ଭିକ୍ଟୋରିଆ ସ୍କୁଲ । ସେଇ କାଠଯୋଡ଼ି ହଷ୍ଟେଲ । ସେଦିନ ସ୍କୁଲର ଖେଳଛୁଟି ବେଳ—ଏତିକିବେଳେ ଆକାଶରେ ଘୁଁ ଘୁଁ ଶବ୍ଦ ଶୁଣାଗଲା । ହଠାତ୍ କେହି କିଛି ବୁଝିପାରିଲେ ନାହିଁ । ଏଣିକି ତେଣିକି ଚାହିଁଲେ । ଆମେ ସବୁ ସ୍କୁଲ୍ ବାହାର ପଡ଼ିଆରେ ଥାଉ । ଜଣେ ଶିକ୍ଷକ ବି ସେଠି ଥା'ନ୍ତି, କିନ୍ତୁ କେହି କିଛି ବୁଝିପାରୁ ନ ଥାଉ । ଏତିକିବେଳେ ଗୋଟିଏ ପିଲା ପାଟିକରି ଉଠି କହିଲା—ଆରେ ତେଣିକି କ'ଣ ଚାହିଁଚ ? ଉପରକୁ ଚାହିଁ, ଆମେ ସବୁ ଉପରକୁ ଚାହିଁଲୁ—କିଛି ଦେଖିପାରୁ ନ ଥାଉ । ଏତିକିବେଳେ ସେ ଯେଉଁ ପିଲାଟା ଆମକୁ ଉପରକୁ ଚାହିଁ ଦେଖିବା କଥା କହିଥିଲା, ସେ କହିଲା—ହଁ ସାର୍ ମୁଁ ଦେଖିଚି—ଦି'ଟା ବଡ଼ ବଡ଼ ହଂସ ଭଳିଆ ଏକଦମ୍ ଧଳା—ସଫା—ବଡ଼ ବଡ଼ ଡେଣା—ଦେଖିବାକୁ ହଂସ ଭଳି ଆକାଶରେ ଉଡ଼ି ଚାଲିଗଲେ । ସାର୍ କହିଲେ—ନାଇଁ ହଂସ ନୁହେଁ ସେ ଦି'ଟା ଉଡ଼ାଜାହାଜ । ···ଉଡ଼ାଜାହାଜ ! ସେତେବେଳେ କଟକ ସହରର ଲୋକସଂଖ୍ୟା ପ୍ରାୟ ଚାଳିଶ ହଜାର—ସେଥିରୁ ମାତ୍ର ଦୁଇ ତିନିଶ' ଲୋକ କେଜାଣି ଅବା ଉଡ଼ାଜାହାଜ ନାଁ ଶୁଣିଥିବେ, ଜଣେ ଅଧେ କେହି ଦେଖିଥିବେ କି ନା ସନ୍ଦେହ । ଅଥଚ ସେଦିନ ସେଇ କଟକ ସହରର ଆକାଶରେ ଦୁଇଦୁଇଟା ଉଡ଼ାଜାହାଜ ଆସି ଉଡ଼ିଲେ ? ସାର୍ ପଡ଼ିଆର ଏ କଣ ସେ କଣ ଚାହିଁ ଖୋଜି ହଉଥା'ନ୍ତି—ଉଡ଼ାଜାହାଜ ଦି'ଟା ଗଲେ କୁଆଡ଼େ ? ଗୋଟିଏ ଘଟଣା ଏତେ ଚଞ୍ଚଳ ଯେ, ଲୋକମୁଖରେ ବ୍ୟାପିପାରେ—ସେଇ ରୁଣ୍ଡବାଇଦ ସହସ୍ରକୋଶ କଥାଟା ମୁଁ କେବଳ କାନରେ ଶୁଣିଥିଲି । କିନ୍ତୁ ସେଦିନ ମାତ୍ର କେଇ ମୁହୂର୍ତ୍ତ ଭିତରେ ଉଡ଼ାଜାହାଜ ଦି'ଟା କଟକ ଆକାଶକୁ ଆସି କିଲ୍ଲା ପଡ଼ିଆରେ ଓହ୍ଲାଇଚନ୍ତି, ଲୋକମୁଖରେ ଏକଥା ବ୍ୟାପିଯିବାର ମୁଁ ନିଜେ ଉପଲବ୍ଧି କଲି । ସଙ୍ଗେ ସଙ୍ଗେ ସ୍କୁଲ୍ କଲେଜ ଅଫିସ୍ ସବୁ ଛୁଟି ହୋଇଗଲା—ଉଡ଼ାଜାହାଜ ଦେଖିବାକୁ ସମସ୍ତେ ଧାଇଁଲେ । ସହରର ଦୋକାନ ବଜାର ବନ୍ଦ ହୋଇଗଲା । କିନ୍ତୁ ତେଣେ କିଲ୍ଲାପଡ଼ିଆରେ ଅଦିନିଆ ବାଲିଯାତ୍ରା ପରି ଉଡ଼ାଜାହାଜ ଓହ୍ଲାଇଥିବା ପଡ଼ିଆରେ ଅସୁମାରି ଦୋକାନ ବଜାର ଖୋଲିଗଲା । ସତେ ଯେମିତି କଟକ ସହରଟା ବାଲିଯାତ୍ରା ପଡ଼ିଆକୁ ଉଠିଆସିଚି ।

ମୁଁ ଯାଇ ଦେଖିଲି, ଉଡ଼ାଜାହାଜ ଦୁଇଟି କିଛି ସ୍ଥାନ ବ୍ୟବଧାନରେ କ୍ୟାଣ୍ଟନମେଣ୍ଟ ରୋଡକୁ ଲାଗି, ବର୍ତ୍ତମାନ ଯେଉଁସ୍ଥାନରେ ଆର୍ମି ରିକ୍ରୁଇଟ୍‌ମେଣ୍ଟ ବୋର୍ଡ଼ ଅଫିସ୍ ରହିଛି, ସେଇ ସ୍ଥାନରେ ଓହ୍ଲାଇଛନ୍ତି । ଦୁଇ ତିନିଜଣ ଶ୍ୱେତାଙ୍ଗ ପୁରୁଷ ସେଠି ବୁଲାଚଲା କରୁଛନ୍ତି । ଦର୍ଶକମାନେ କିଛି ଦୂରରେ ଥାଇ ଦେଖୁଥା'ନ୍ତି । ମୁଁ ଦେଖିଲି, ଦୁଇଟିଯାକ ପ୍ଲେନ୍ ଆକାର ଓ ପ୍ରକାରରେ ପ୍ରାୟ ସମାନ । ଏବେ ଠିକ୍ ସ୍ମରଣ ନ ହେଲେ ବି, ମୋର ଅନୁମାନ ଲମ୍ବ ତିରିଶ ଚାଳିଶ ଫୁଟରୁ ବେଶି ହେବ ନାହିଁ । ଦୁଇପାଖରେ ଡେଇଙ୍ଗ୍ ଅଛି । ଇଞ୍ଜିନ ସମ୍ମୁଖରେ ବାହାରପଟେ ଚାରିଗୋଟି ବେଶ୍ ବଡ଼ ବଡ଼ ବ୍ଲେଡ୍ ଥିବା ଗୋଟିଏ ପଙ୍ଖା ଖଞ୍ଜା ହୋଇଛି । ମୋ ପାଖରେ ଜଣେ ଇଂରେଜ ପାଦ୍ରୀ ଠିଆ ହୋଇଥିଲେ, କଟକ ସହରରେ ସେ ଅନେକ ଦିନ ରହିଲେଣି । ତାଙ୍କୁ ଏ ପ୍ଲେନ୍ କଥା ପଚାରିଲି—ସେ କହିଲେ—ଏ ଦୁଇଟି ତ ଛୋଟ ପ୍ଲେନ୍ । ଇଂଲଣ୍ଡରେ ମୁଁ ଆହୁରି ବଡ଼ ବଡ଼ ପ୍ଲେନ୍ ଦେଖିଛି । ବିଗତ ଉଣେଇଶିଶହ ଚଉଦ ମସିହା ପ୍ରଥମ ମହା ଯୁଦ୍ଧରେ ପ୍ଲେନ୍‌ରୁ ବୋମା ପଡ଼ିଥିବା କଥା ତୁମେମାନେ ତ ପଢ଼ିଥିବ । ତେବେ ଏ ପ୍ଲେନ୍ ଯୁଦ୍ଧ ପ୍ଲେନ୍ ନୁହେଁ । ଛୋଟ ପ୍ଲେନ୍, ଗୋଟିକରେ ଦୁଇ ତିନିଜଣ ବସିବେ । ପ୍ଲେନ୍ ଦୁଇଟି କେଉଁଠୁ ଆସିଛି ଓ କେଉଁଠିକି ଯିବ ସେକଥା ମଧ୍ୟ ସେ କିଛି ଜାଣନ୍ତି ନାହିଁ ବୋଲି କହିଲେ । ଦର୍ଶକମାନଙ୍କୁ ଦେଖି ଜଣାଯାଉଥାଏ ସତେ ଯେମିତି ଗୋଟିଏ ଆନନ୍ଦମେଳା ସେଠି ଚାଲିଛି । ଏତିକିବେଳେ ଦେଖାଗଲା ଦୁଇ ତିନୋଟି ବଳଦଗାଡ଼ି ଏ ଆଡ଼କୁ ଆସୁଛି । ବିସ୍ମୟକର ଘଟଣା । ଯେଉଁଠି ପ୍ଲେନ୍ ସେଠିକି ବଳଦଗାଡ଼ି ଆସୁଛି କାହିଁକି ? ଜଣେ କିଏ ପାଟିକରି ଉଠିଲେ—ଏଠି କ'ଣ ପ୍ଲେନ୍ ଆଉ ବଳଦଗାଡ଼ିର ଦୌଡ଼ 'ପ୍ରତିଯୋଗିତା ହବ ?···କିନ୍ତୁ ନା, ପ୍ରତିଯୋଗିତା ନୁହେଁ, ପ୍ରତିଯୋଗିତାଠୁ ଆହୁରି ଅଧିକା କିଛି । ବଳଦଗାଡ଼ି ନ ଆସିଲେ ଏ ପ୍ଲେନ୍ ଦୁଇଟି ଏଇ କାଳିପଡ଼ିଆରେ ସେମିତି ପଡ଼ିରହିବେ । ଏଠୁ ଉଡ଼ି ଯାଇପାରିବନି ।···କାରଣ ବଳଦଗାଡ଼ିରେ ପେଟ୍ରୋଲଟିଣ ଆସିଛି । ପେଟ୍ରୋଲ ଭର୍ତ୍ତି ନ ହେଲେ ଉଡ଼ାଜାହାଜ ଉଡ଼ିବ କେମିତି ? ସେତେବେଳେ ତ ବର୍ତ୍ତମାନ ପରି ପେଟ୍ରୋଲପମ୍ପ ସବୁ ରାସ୍ତାଘାଟରେ ନ ଥିଲା, ଟାଙ୍କିରୁ ଟିଣରେ ଭର୍ତ୍ତିକରି ଲୋକେ ସେମାନଙ୍କ ଗାଡ଼ି ପାଇଁ ପେଟ୍ରୋଲ ନେଉଥିଲେ ! ଏଇ ଉଡ଼ାଜାହାଜ ଦୁଇଟି କେବଳ ପ୍ଲେନ୍‌ରେ ପେଟ୍ରୋଲ ଲୋଡ୍ କରିବା ପାଇଁ କଟକରେ ଓହ୍ଲାଇଛନ୍ତି । ବାଲ୍‌ମୋରିଆ ଦୋକାନରୁ ଟିଣରେ ଭର୍ତ୍ତିହୋଇ ପେଟ୍ରୋଲଗାଡ଼ି ପ୍ଲେନ୍ ପାଖକୁ ଆସିଲା । ସେମାନେ ତାଙ୍କ ସହିତ ଗୋଟିଏ ଆଲୁମିନିୟମ୍ ସିଡ଼ି ଆଣିଥିଲେ । ସିଡ଼ିଟି ପ୍ଲେନ୍ ଇଞ୍ଜିନରେ ଡେରି ଦିଆହୋଇ ରଖାଗଲା । ତାଙ୍କ ଭିତରୁ ଜଣେ ସିଡ଼ି ଉପରକୁ ଉଠିଲେ । ତଳୁ ତାଙ୍କ ହାତକୁ ଗୋଟିଏ ଗୋଟିଏ ପେଟ୍ରୋଲ ଟିଣ ବଢ଼େଇ

ଦିଆଯାଉଥାଏ ଓ ସେ ଇଞ୍ଜିନ ଟାଙ୍କିରେ ଗୋଟିଏ ବିରାଟ କାହାଳୀ ଖଞ୍ଜି ଟାଙ୍କିରେ ପେଟ୍ରୋଲ ଭର୍ତ୍ତି କରୁଥା'ନ୍ତି । ଏ ପେଟ୍ରୋଲ ଭର୍ତ୍ତିକରିବା ପ୍ରକ୍ରିୟା ପାଇଁ ପ୍ରାୟ ଦୁଇଘଣ୍ଟା ସମୟ ଲାଗିଲା । ସେତେବେଳକୁ ଅପରାହ୍ଣ ସୂର୍ଯ୍ୟକିରଣ ପ୍ଲେନ୍ ଉପରେ ପଡ଼ିଲାଣି । ସେମାନେ ଚାହିଁଲେ ପ୍ଲେନ୍ ଦୁଇଟିକୁ ଗୋଟିଏ ଛାୟା ଶୀତଳ ସ୍ଥାନରେ ରଖିବେ । ଗୋଟିଏ ଉଚ୍ଚ ଷ୍ଟୁଲ ଆସିଲା । ସେ ଷ୍ଟୁଲ୍ ଉପରେ ଜଣେ ଚାଳକ ଠିଆ ହୋଇ ଇଞ୍ଜିନ ବାହାରେ ଲାଗିଥିବା ପଙ୍ଖାଟିକୁ ଦୁଇହାତରେ ଧରି ଘୁରାଇଲା । (ଯେମିତି ପୂର୍ବେ ମଟର ଗାଡ଼ିକୁ ଷ୍ଟାର୍ଟ କରାଯାଉଥିଲା) ପଙ୍ଖାର ବ୍ଲେଡ଼କୁ ତିନି ଚାରିଥର ଖୁବ୍ ଜୋର୍‌ରେ ଘୁରାଇଲା ପରେ ପଙ୍ଖାଟି ସେମିତି ଖୁବ୍ ଜୋର୍‌ରେ ଶବ୍ଦ କରି ଘୁରିବାକୁ ଲାଗିଲା । ତା'ପରେ ପାଇଲଟ ଇଞ୍ଜିନ ଷ୍ଟାର୍ଟ କରି ପ୍ଲେନ୍‌ଟିକୁ ଟ୍ୟାକ୍‌ସିଂ ବା ମୋଟର କାର୍ ଚଳାଇଲା ପରି ସେଇ ଅସମତଳ ବୁଦା ବୁଦା ଘାସ ଭର୍ତ୍ତି ପଡ଼ିଆରେ କିଛି ଦୂର ଆଗେଇନେଇ ରଖିଲେ । ଅନ୍ୟ ପ୍ଲେନ୍‌ଟିକୁ ଠିକ୍ ଏହି ପ୍ରକ୍ରିୟାରେ ନେଇ ଅନ୍ୟ ଏକ ସ୍ଥାନରେ ରଖାଗଲା ।...ଜଣାଗଲା ଯେ ପ୍ଲେନ୍ ଦୁଇଟି ସେଦିନ ରାତିରେ କଟକରେ ରହିବେ ଓ ତା ପରଦିନ ସେମାନଙ୍କ ଯାତ୍ରାପଥରେ ଗତି କରିବେ । ..ତା'ପରଦିନ ସକାଳ ଆଠଟା ପୂର୍ବରୁ ପୁଣି ଆସି ଆମେମାନେ ପହଞ୍ଚିଗଲୁ । ଜନଗହଳିରେ ପୁଣି ପଡ଼ିଆଟି ଉଚ୍ଛୁଳି ଉଠିଲା । ସମସ୍ତ ସକାଳ ଆଠଟା—ପାଇଲଟ ପ୍ଲେନ୍ ଉପରକୁ ଉଠିଲେ—ପ୍ଲେନ୍‌ଟି ଯେଉଁ ସ୍ଥାନରେ ଠିଆହୋଇଥିଲା ଠିକ୍ ସେଇସ୍ଥାନରୁ ସିଧା ଉପରକୁ ଉଠି ଉଡ଼ିବାକୁ ଆରମ୍ଭ କଲା । ଅନ୍ୟ ପ୍ଲେନ୍‌ଟି ମଧ୍ୟ ଠିକ୍ ସେଇପରି ତା'ର ସାଥୀ ପ୍ଲେନ୍‌ଟିକୁ ଅନୁସରଣ କଲା । ଉପରକୁ ଉଠି ପ୍ଲେନ୍ ଦୁଇଟି କଟକ ସହର ଉପରେ ଗୋଟିଏ ବେଢ଼ ଖାଇ ଆକାଶରେ ମିଳେଇଗଲେ ।...ଯେତେବେଳେ ମୁଁ ପରିଣତ ବୟସରେ ବିମାନ-ଘାଟୀ ରନ୍‌ୱେରେ ଗୋଟିଏ ବିମାନ ବେଶ୍ କିଛି ଦୂର ଟ୍ୟାକ୍‌ସିଂ କରି କ୍ରମ ଅନୁପାତରେ ଆକାଶକୁ ଉଠିବାର ଦେଖିଲି, ସେତେବେଳେ ଉଣେଇଶିଶହ ଏକତିରିଶ ମସିହାରେ ମୁଁ ସେଦିନ କିଲ୍ଲାପଡ଼ିଆରେ ଦେଖିଥିବା ସେଇ ଦୁଇଟି ପ୍ଲେନ୍ କଥା ମୋର ମନେ ପଡ଼ିଗଲା । ଆଜିକାଲିର ବିମାନଘାଟୀରେ ତ ସିମେଣ୍ଟ କଙ୍କ୍ରିଟ ମସଲା ସବୁରେ ତିଆରି ମସୃଣ ରନ୍‌ୱେରେ ପ୍ଲେନ୍ ଯଦି କେବେ ଏପାଖ ସେପାଖ ହୋଇଯାଏ, ତେବେ ହୁଏତ ପୂରା ପ୍ଲେନ୍‌ଟା ଓଲଟି ପଡ଼ିବ । କିନ୍ତୁ ସେଦିନ ସେଇ ଅସମତଳ ଖାଲ ଢିପ ଓ ଘାସବୁଦା ଭର୍ତ୍ତି ପଡ଼ିଆରେ କିପରି ଯେ ସେ ପ୍ଲେନ୍ ଦୁଇଟି ସିଧା ଉପରକୁ ଉଠି ଉଡ଼ି ଚାଲିଗଲେ ସେକଥା ମୁଁ ଆଜି ବି କଳ୍ପନା କରିପାରୁନାହିଁ । ଏଇଠି ଆଉ ଗୋଟିଏ ଏହିପରି ଘଟଣା ମୁଁ ଉଲ୍ଲେଖ କରୁଚି । ଜାମସେଦପୁର ଟାଟା ଆଇରନ୍ ଆଣ୍ଡ ଷ୍ଟିଲ୍ କମ୍ପାନୀରେ ଜଣେ

ଜର୍ମାନ ଇଞ୍ଜିନିୟର ନିଯୁକ୍ତ ଥିଲେ । ଯେମିତି ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇଗଲା, ସେତେବେଳେ ଭାରତରେ ଥିବା ଜର୍ମାନମାନେ ଯେ କୌଣସି ଉପାୟରେ ଭାରତ ଛାଡ଼ି ଚାଲିଗଲେ । କେହି କେହି ହୁଏତ ବ୍ରିଟିଶ ସରକାରଙ୍କ ଦ୍ୱାରା ବନ୍ଦୀ ହୋଇ ରହିଲେ । କିନ୍ତୁ ଟିସ୍କୋର ଜେନେରାଲ ମ୍ୟାନେଜର ସେ ଜର୍ମାନ ଇଞ୍ଜିନିୟରଙ୍କୁ ଯେପରିଭାବେ ଜାମସେଦପୁରରୁ ଉଦ୍ଧାର କରିଗଲା ତାହା ଏକ ଆରବ୍ୟ ଉପନ୍ୟାସର କାହାଣୀ । ଶୁଣାଯାଏ, ଟାଟା ନଗରୀର ଏକ କୋଠାର ଛାତ ଉପରେ ଦିନେ ରାତିରେ ଗୋଟିଏ ଜର୍ମାନ ପ୍ଲେନ୍ ଆସି ଓହ୍ଲାଇଲା ଓ ସେଇ ପ୍ଲେନ୍‌ରେ ଟିସ୍କୋର ଜର୍ମାନ ଇଞ୍ଜିନିୟର ବ୍ରିଟିଶ ଭାରତର ସବୁ ସତର୍କତାକୁ ଏଡ଼ାଇଦେଇ ତାଙ୍କର ଜନ୍ମଭୂମି ଜର୍ମାନକୁ ନିରାପଦରେ ଫେରିଗଲେ ।...ମୁଁ ପୁଣିଥରେ କହୁଚି—ଏହା ମୋର ଏକ ଶୁଣା କାହାଣୀ । ଏଇ ଘଟଣା ଘଟିବାର ମାତ୍ର କିଛିଦିନ ପରେ ମୁଁ ଜାମସେଦପୁର ଯାଇ କିଛିଦିନ ରହିଥିଲି ଓ ସେଠି ଏଇ କଥାଟା ଶୁଣିଥିଲି ।)

## ସ୍ୱରାଜ ଆଶ୍ରମ ଏସ୍.ପି. ଲେନ୍ ସାହେବ ଓ ଛାତ୍ର ବିଜୁ ପଟ୍ଟନାୟକ

ଓଡ଼ିଶାରେ କଟକ ସହରବାସୀ ସର୍ବପ୍ରଥମେ ଏରୋପ୍ଲେନ୍‌କୁ ଅତି ନିକଟରେ ଦେଖିବାର ଏକ ଆନନ୍ଦଦାୟକ ଘଟଣାର ଅଳ୍ପଦିନ ପରେ ସେଇ କଟକ ସହରରେ ଏକ ହୃଦୟବିଦାରକ ଦୃଶ୍ୟ ଘଟିଗଲା—ଘଟଣାଟି ଘଟିଲା ପୁଣି ଆମ କାଠଯୋଡ଼ି ହଷ୍ଟେଲର ପଡ଼ିଶାଘର କଟକ ସ୍ୱରାଜ ଆଶ୍ରମ ପରିସର ଭିତରେ । ସେତେବେଳେତ ସ୍ୱାଧୀନତା ଆନ୍ଦୋଳନର ସମୟ । କେଉଁ ଘଟଣାରୁ କେଜାଣି ବ୍ରିଟିଶ ସରକାର ସ୍ୱରାଜ ଆଶ୍ରମକୁ ବେଆଇନ୍ ଘୋଷଣା କରି ଆଶ୍ରମବାସୀଙ୍କୁ ସେଇ ଆଇନବଳରେ ଆଶ୍ରମରୁ ବାହାର କରିଦେଇ ଆଶ୍ରମରେ ତାଲାପକେଇ ଦେଲେ । ଆଶ୍ରମ କିଛିଦିନ ବନ୍ଦ ହେଲା । ତା'ପରେ ସେଦିନ ଆମେ ଶୁଣିଲୁ ଯେ କଂଗ୍ରେସ ପକ୍ଷରୁ ଏଭଳି ଏକ କଳା ଆଇନ୍‌କୁ ଅମାନ୍ୟ କରି ସତ୍ୟାଗ୍ରହୀମାନେ ସେଦିନ ଅପରାହ୍ଣରେ ଆଶ୍ରମ ଦଖଲ କରିବେ । ସ୍କୁଲ ଛୁଟି ପରେ ହଷ୍ଟେଲକୁ ଆସି ଆମେ ଦେଖିଲୁ ଆଶ୍ରମ ସମ୍ମୁଖ ରାସ୍ତାରେ ଜନସମାଗମ ଆରମ୍ଭ ହୋଇଗଲାଣି । ସେଦିନ ମୁଁ ଓ ଆମ ହଷ୍ଟେଲର ଆଉ କେତେଜଣ ଛାତ୍ର ରାସ୍ତାକୁ ବାହାରି ଆସି ଆଶ୍ରମ ଫାଟକ ସମ୍ମୁଖସ୍ଥ ରାଧାନାଥ ଟ୍ରେନିଂ କଲେଜ ସମ୍ମୁଖ ରାସ୍ତା ଉପରେ ରୁଣ୍ଡ ହେଲୁ । କିଛି ସମୟ ପରେ ଦେଖାଗଲା ପ୍ରାୟ ପନ୍ଦରଜଣ କଂଗ୍ରେସ ସତ୍ୟାଗ୍ରହୀ ହାତରେ କଂଗ୍ରେସ ପତାକା ଧରି ଓ କଂଗ୍ରେସର ଜୟନାଦ କରି ଆଶ୍ରମ ଦଖଲ କରିବା ପାଇଁ ଆସିଲେ । ସେ ପର୍ଯ୍ୟନ୍ତ ପୋଲିସ୍ ପକ୍ଷରୁ କେହି ଉପସ୍ଥିତ ନ ଥା'ନ୍ତି ।

ଏତିକିବେଳେ ହୁଇସିଲ୍ ଶବ୍ଦ ଶୁଣାଗଲା ଓ ସେଇ ସଙ୍ଗେ ସଙ୍ଗେ ଅଦୂରସ୍ଥ ପୋଲିସ ଅଫିସ୍ ପାଖରୁ ପୋଲିସ ଫୌଜ ଆସି ପହଞ୍ଚିଲେ । ପୋଲିସ ଦଳରେ ଥା'ନ୍ତି କେତେଜଣ ଲାଠିଧାରୀ କନେଷ୍ଟବଲ, ଜଣେ ସବ୍‌ଇନ୍‌ସ୍‌ପେକ୍ଟର ଓ ନିଜେ ଏସ୍.ପି. ଲେନ୍ ସାହେବ । କୁହାଯାଏ ଏ ଲେନ୍ ଜଣେ ଦୁର୍ଦ୍ଦାନ୍ତ ଓ ଉଦ୍ଧତ ଅଫିସର ଥିଲେ । ସେତେବେଳକୁ ସତ୍ୟାଗ୍ରହୀମାନେ ଆଶ୍ରମର ଉପର ମହାଲା ବାରଣ୍ଡାକୁ ଯାଇ କଂଗ୍ରେସର ଜୟଧ୍ୱନି କରୁଥା'ନ୍ତି । ଏସ୍.ପି ଙ୍କ ନିର୍ଦ୍ଦେଶ ପାଇ ଲାଠିଧାରୀ ପୋଲିସ ଦଳ ଦୌଡ଼ି ଦୌଡ଼ି ଉପର ମହାଲା ବାରଣ୍ଡାକୁ ଯାଇ ନିରସ୍ତ୍ର ସତ୍ୟାଗ୍ରହୀମାନଙ୍କୁ ଅତି ନିର୍ମମ ଭାବେ ପ୍ରହାର କରିବାକୁ ଲାଗିଲେ । ସେମାନଙ୍କର ଜୟଧ୍ୱନି ଚାଲିଥାଏ । ପୋଲିସର ଲାଠି ପ୍ରହାର ସେମିତି ବଢ଼ି ଚାଲିଥାଏ । ସ୍ଥାନ ଅସ୍ଥାନରେ ଲାଠି ବାଜି କେତେଜଣଙ୍କ ଦେହରୁ ରକ୍ତ ଝରିଲାଣି କିନ୍ତୁ ସେମାନଙ୍କର ଜୟଧ୍ୱନି ନିସ୍ତେଜ ନ ହୋଇ ଆହୁରି ତୀବ୍ର ହୋଇଉଠୁଥାଏ । ଏତିକିବେଳେ ଲାଠିମାଡ଼ରେ ଜଣେ ସତ୍ୟାଗ୍ରହୀର ମୁଣ୍ଡ ଫାଟିଗଲା ଓ ସେ ସେଇଠି ଅଚେତ ହୋଇ ପଡ଼ିଗଲା । ପୋଲିସ ସତ୍ୟାଗ୍ରହୀମାନଙ୍କୁ ଲାଠିରେ ପିଟି ପିଟି ରାସ୍ତା ଉପରକୁ ଆଣୁଥାଏ । ଯେଉଁ ଜଣେ ଦୁଇଜଣ ଅଚେତ ହୋଇ ପଡ଼ିଥିଲେ ସେମାନଙ୍କ ଗୋଡ଼ଧରି ଘୋଷାରି ଘୋଷାରି ଅଣାଯାଉଥାଏ । ଏହାପୂର୍ବରୁ ଖୁବ୍ ବର୍ଷା ହୋଇଯାଇଥିଲା । ଆଶ୍ରମ ପାଚେରୀ ପାଖ ଡ୍ରେନ୍‌ରେ ପାଣିର ସୁଅ ଛୁଟୁଥାଏ । ଜଣେ ଅଚେତ ସତ୍ୟାଗ୍ରହୀକୁ ଘୋଷାରି ଘୋଷାରି ଆଣି ପୋଲିସ ରାସ୍ତା ଧାରରେ ଏମିତି ଭାବରେ ପକାଇଦେଲା ଯେ ସେ ଗଡ଼ି ଗଡ଼ି ଯାଇ ଡ୍ରେନ୍ ଭିତରେ ପଡ଼ିଗଲା । ସେ ଡ୍ରେନ୍ ଭିତରେ ପଡ଼ିଛି—ତା ଉପରେ ଡ୍ରେନ୍ ପାଣି ଛୁଟିଚାଲିଛି, ହୁଏତ ମରିଯାଇଥା'ନ୍ତା । ଏତିକିବେଳେ ଜଣେ କନେଷ୍ଟବଲ ତାକୁ ଡ୍ରେନ୍ ଭିତରୁ ଘୋଷାରି ଘୋଷାରି ଆଣି ରାସ୍ତା ଉପରେ ପକେଇଦେଲା । ଦର୍ଶକ ଭର୍ତ୍ତିହୋଇ-ଗଲେଣି । ପୋଲିସ ଅତ୍ୟାଚାରର ଏ ଦୃଶ୍ୟରେ ସମସ୍ତେ ଆତଙ୍କିତ ହୋଇପଡ଼ୁଥା'ନ୍ତି । ଏଇ ଅସହଯୋଗ ଆନ୍ଦୋଳନ ବେଳେ କଟକ ସହରରେ ଅଧିକାଂଶ ସମୟରେ ୧୪୪ ଧାରା ଲାଗିରହୁଥାଏ । କିନ୍ତୁ କାଠଯୋଡ଼ି ନଈବାଲିର ମଧ୍ୟ ଅଞ୍ଚଳଟା କଟକ ସହରରେ ଅନ୍ତର୍ଭୁକ୍ତ ନୁହେଁ ବୋଲି ସେଠି ବହୁସମୟରେ କଂଗ୍ରେସର ସଭାସମିତି ହେଉଥାଏ । ମୁଁ ପ୍ରାୟ ପ୍ରତ୍ୟେକ କଂଗ୍ରେସ ସଭାକୁ ଯାଇଛି । ସଭା ହୁଏ—ବକ୍ତାମାନେ ବକ୍ତୃତା ଦିଅନ୍ତି, ଦର୍ଶକମାନେ ଉପସ୍ଥିତ ଥା'ନ୍ତି । କିନ୍ତୁ ପୋଲିସ ସଭା ଭଙ୍ଗ କରିବାକୁ ଚାହିଲେ, ଲାଠି ଉଠେଇ ଲୋକଙ୍କୁ ଘଉଡ଼ାନ୍ତି । ଲୋକେ ହସି ହସି ଏଣେ ତେଣେ ଦୌଡ଼ି ପଳାନ୍ତି । କିନ୍ତୁ ନିରୀହ ନିର୍ଦ୍ଦୋଷ ଲୋକମାନଙ୍କ ଉପରେ ସ୍ୱୟଂ ଏସ୍.ପି. ସାହେବଙ୍କ ଉପସ୍ଥିତିରେ ଏମିତି ରକ୍ତ

ବୃହା ପ୍ରହାର କେବେ ମୁଁ ଦେଖି ନ ଥିଲି । ପୋଲିସ ଅପେକ୍ଷା କରିଥାଏ—ଗାଡ଼ି ଆସିଲେ ସତ୍ୟାଗ୍ରହୀମାନେ ବୃହାହୋଇ ଯିବେ । ଏତିକବେଳେ ଆଉ ଏକ ଚମକପ୍ରଦ ଘଟଣା ଘଟିଗଲି । କଟକ ଗ୍ରେଭରସ୍ପ୍ରୀଟ ଅଞ୍ଚଳରେ ଜଣେ ଲୋକ ଥାଏ । ତାର ବ୍ୟବସାୟ ହେଲି ଅମୃତବଜାର ପତ୍ରିକାପକ୍ଷରୁ ସାଇକେଲରେ ବୁଲି ବୁଲି ଗ୍ରାହକମାନଙ୍କୁ ପତ୍ରିକା ଯୋଗାଇଦେବା । ଟିକେ ଖନେଇ ଖନେଇ କଥା କୁହେ । ଫୁଟ୍‌ବଲ ଖେଳ ଷ୍ଟେଣ୍ଡ ଲଢ଼େଇଠୁଁ ଆରମ୍ଭ କରି ସବୁ ସଭାସମିତିରେ ସେ ଉପସ୍ଥିତ ଥାଏ । ସେଦିନ ବି ସେଠି ସେ ଅଛି । ତାକୁ ଲୋକେ ଆଡ଼ବାଯ୍ୟା ପୁନା ବୋଲି ଡାକନ୍ତି । ଏଇ ପୁନାର ଗୋଟାଏ ଗୁଣ ଥିଲି, ହାତରେ ଢେଳା ଫିଙ୍ଗି ଖୁବ୍ ଉଚ୍ଚ ନଡ଼ିଆ ଗଛରୁ ଗୋଟିଏ ନିର୍ଦ୍ଦିଷ୍ଟ ନଡ଼ିଆ ସେ ଝଡ଼େଇଦେଇ ପାରିବ । ରାସ୍ତା ଉପରେ ଲୋକଗହଳି ଭିଡ଼ିପଡ଼ିଥିବା ବେଳେ ମୁଁ ଦେଖିଲି ରାଧାନାଥ ଟ୍ରେନିଂ କଲେଜ ଫାଟକ ସଂଲଗ୍ନ ଅନୁଚ୍ଚ ପାଚେରି ସେପଟେ ପୁନା ଏକାକୀ ଠିଆ ହୋଇଚି । ରାଗରେ ତା ଆଖି ଦ'ଟା ଯେମିତି ଜଳୁଥାଏ । ମୁଁ ଦେଖୁଚି, ପୁନା ତଳକୁ ନଇଁପଡ଼ି ଢେଳା ବା ଗୋଡ଼ି ଜାତୀୟ କିଛି ଗୋଟିଏ ଜିନିଷ ହାତରେ ଉଠାଇଆଣି ଏସ୍.ପି. ଲେନ୍ ସାହେବଙ୍କ ମୁଣ୍ଡ ଉପରେ ଥିବା ଟୋପିକୁ ଏମିତି ଲକ୍ଷ୍ୟକରି ଫିଙ୍ଗିଲି ଯେ ଟୋପିଟି ତାଙ୍କ ମୁଣ୍ଡରୁ ତଳକୁ ଖସିପଡ଼ିଲି । ଉପସ୍ଥିତ ପୋଲିସ ଅଫିସର ଓ ପୋଲିସ ଫୌଜ ବିବ୍ରତ ହୋଇପଡ଼ିଲେ । ଢେଳା କିଏ ମାରିଚି ଖୋଜା ଚାଲିଲି । କିନ୍ତୁ ଧରିବେ କାହାକୁ ? ପୁନା ତ ଲେନ୍ ସାହେବଙ୍କ ମଥା ଉପରୁ ଟୋପି ଖସାଇ ଦେଇ ସେଇ ମୁହୂର୍ତ୍ତରେ କୁଆଡ଼େ ଅନ୍ତର୍ହିତ ହୋଇ-ଗଲିଣି । ଦୋଷୀକୁ ଧରିପାରିଲେ ନାହିଁ ବୋଲି ଏସ୍.ପି. ଙ୍କ ଆଦେଶରେ ଉପସ୍ଥିତ ଜନତା ଉପରେ ପୋଲିସର ଅଂଖିବୁଜା ପ୍ରହାର ଚାଲିଲି । ପୋଲିସ ଯାହାକୁ ହାତପାଖରେ ପାଇଚି ତାକୁ ପିଟିଚି । ଜଣେ ପ୍ରତିଷ୍ଠିତ କଂଗ୍ରେସ ନେତା ଶ୍ରୀ ଭାଗବତୀ ପତି ପୋଲିସ ମାଡ଼ରେ ଅତି ଗମ୍ଭୀର ଭାବରେ ଆହତ ହୋଇ-ପଡ଼ିଥିଲେ । ସେ ରାସ୍ତାଧାରରେ ଗୋଟିଏ ଗୁଡ଼ିଆ ଦୋକାନ ଥିଲି । ସେଠି ଗଣ୍ଡଗୋଳ ଲାଗିବାରୁ ଦୋକାନୀ ଦୋକାନ ବନ୍ଦ କରି ଦୋକାନ ସାମନାରେ ତାଟି ଝୁଲେଇ ଦେଇଚି । ପୋଲିସ ମାଡ଼ରୁ ରକ୍ଷା ପାଇବା ପାଇଁ ଆମେ ଦୁଇ ତିନିଜଣ ଗ୍ଭଳି ସେଇ ତାଟି ଭିତରେ ଆଶ୍ରୟ ନେଲୁ । କିନ୍ତୁ ସେଠି ବି ପୋଲିସର ଦୃଷ୍ଟି ପଡ଼ିଲି ଓ ତାଟି ଉପରେ ଲାଠି ପ୍ରହାର ଚାଲିଲି । କ'ଣ କରିବୁ ଆମେ ? ତାଟିରୁ ଗୋଟିଏ ପାଖ ଧୀରେ ଟେକି ସେପଟେ ଖସି ପଳାଇଗଲାବେଳେ ଗୋଟିଏ ଭଦ୍ର ପୋଲିସ କନେଷ୍ଟବଲର ମଧୁର ଲାଠିପ୍ରହାର ମୋର ଡାହାଣଗୋଡ଼ ବଳାଗଣ୍ଠିକୁ ଚୁମ୍ବନ କଲି । (ମଧୁର ଓ ଚୁମ୍ବନ ଶବ୍ଦ ମୁଁ ଜାଣିଶୁଣି ବ୍ୟବହାର କରିଛି, ଯେହେତୁ ସେ କନେଷ୍ଟବଲଟି ଯେ କୌଣସି କାରଣରୁ ହେଉ ମୋ

ବଲାଗଣ୍ଠିକୁ ଟିକେ ଠୁକେଇ ଦେଇଥିଲି ମାତ୍ର) ପ୍ରହାର ଯେତେ ମଧୁର ହେଲେ ବି ମୋ ପାଦ ଗଣ୍ଠିଟା ଚନ୍ ଚନ୍ ହୋଇ ଉଠୁଥାଏ । ହଷ୍ଟେଲକୁ ଯାଇ ଆମେ ସବୁ ଆମ ଡାଇନିଂହଲ୍ (ଖାଇବା ଘର) ଝରକା ପାଖରେ ଆସି ଠିଆ ହେଲୁ । ଝରକା ପାଖରୁ ରାସ୍ତା ଉପର ଘଟଣା ସ୍ଥଳର ଦୂରତ୍ୱ ହେଉଛି ମାତ୍ର ଆଠ ଦଶ ଫୁଟ । ରାସ୍ତା ଜନଶୂନ୍ୟ, କେବଳ ସତ୍ୟାଗ୍ରହୀମାନେ—ଜଣେ ତ ଅଚେତ ହୋଇ ପଡ଼ିଛି—ଅନ୍ୟମାନେ ପ୍ରାୟ ଅର୍ଦ୍ଧଚେତନ ଅବସ୍ଥାରେ ଏଠି ସେଠି ପଡ଼ିରହିଚନ୍ତି । ଆଉ ଆସନ୍ନ ମୃତ ମଡ଼ାକୁ ଶାଗୁଣାମାନେ ଜଗିରହିଲାଭଳି ପୋଲିସ-ଫୌଜ ସେମାନଙ୍କୁ ଘେରିଯାଇଚନ୍ତି । ଏସ୍.ପି. ଲେନ୍ ସାହେବ ଖୁବ୍ ଫୁର୍ତ୍ତିରେ ସେଠି ପଇଁତରା ମାରୁଚନ୍ତି । ତାଙ୍କ ନିଜ ଜନ୍ମଭୂମି ଆୟାରଲ୍ୟାଣ୍ଡ ବୋଲି କଥା କଥାକେ ସେ ନିଜକୁ ଆଇରିସ ଗୁଣ୍ଡା ବୋଲି ଗର୍ବ କରିଥା'ନ୍ତି । ଏଥିକବେଳେ ଦେଖାଗଲା ବିଜୁ ସେ ଆଡ଼କୁ ଆସୁଚି । କିଛି ବୁଝିହେଲାନି । କଲିଜିଏଟ୍ ସ୍କୁଲ—ଏକାଦଶ ଶ୍ରେଣୀର ଛାତ୍ର, ଆମ ଛାତ୍ର ସମାଜର ପ୍ରିୟ ନେତା । ଭଲ ଛାତ୍ର । ଚମ୍ପାଫୁଲ ପରି ଦେହର ରଙ୍ଗ, ସୁନ୍ଦର ଚେହେରା । ଏକନମ୍ବର ସ୍ପୋର୍ଟସ୍‌ମ୍ୟାନ୍ । ସେତେବେଳେ ତ ଛାତ୍ରମହଲରେ ପ୍ୟାଣ୍ଟର ପ୍ରଚଳନ ହୋଇନି । ସମସ୍ତେ ଧୋତି ପିନ୍ଧନ୍ତି । ପିନ୍ ପିନ୍ ଫାଇନ୍ ଧୋତି, ସିଲ୍‌କ ପଞ୍ଜାବୀ, ସାମାନ୍ୟ ବର୍ଷାର ଝିପିଟି ପଡ଼ୁଚି ବୋଲି ଦେହରେ ଚମତ୍କାର ଡକ୍‌ବ୍ୟାକ ବର୍ଷାତି, ଗ୍ରୀବା ଖୋଲା, ବର୍ଷାତିର ଦୁଇ ପକେଟ୍‌ରେ ଖୁବ୍ ଷ୍ଟାଇଲ୍‌ରେ ହାତପାପୁଲି ରଖି ବିଜୁ ଆସି ଏସ୍.ପି.ଙ୍କର ମାତ୍ର ଦୁଇ ତିନି ଫୁଟ ଅନ୍ତରରେ ସେଠି ଠିଆହୋଇ ସ୍ଥିରଆଡ଼କୁ ଟିକେ ଦୃଷ୍ଟିପାତ କରି କହିଉଠିଲା—ହ୍ୱାଟ୍ ଇଜ୍ ଗୋଇଙ୍ଗ୍ ଅନ୍ ହିଅର ?···ଏଇ ବିଜୁ ! ଦୁଃସାହସୀ ବୋଲି ଜଣାଅଛି । ଚଲନ୍ତା ଟ୍ରେନ୍‌ର ପଛ ଡବାରେ ଚଢ଼ି ଟ୍ରେନ୍ ବାହାରେ ବାହାରେ ବାଡ଼ା ଧରି ଧରି ଚାଲି ଚାଲି ଯାଇ ଇଞ୍ଜିନ୍ ପାଖ ଡବାରେ ପହଞ୍ଚିବ । ଗୋଟିଏ ପୁରୁଣା ସାଇକେଲରେ କଟକରୁ ଆଫ୍‌ଗାନିସ୍ତାନ ଯାଇ କଟକ ଫେରି ଆସିଛି । ଏଠି ଯେ ରକ୍ତମୁଖା ଏସ୍.ପି. ଲେନ୍ ସାହେବଙ୍କୁ ଏମିତି ପ୍ରଶ୍ନ ପଚାରିଲା···ମୋ କଥା ମୋ ମନରେ ଅଛି, ବିଜୁର ପ୍ରଶ୍ନର ଉତ୍ତରରେ ଲେନ୍ ସାହେବ ରାଗରେ ଜଳିଯାଇ ତା ହାତରେ ଧରିଥିବା ଓଜନିଆ ବି.ପି. ଛଡ଼ିରେ ବିଜୁକୁ ମାରିବା ପାଇଁ ଉଦ୍ୟତ ହେଲାବେଳକୁ ମୋ ଆଖି ବୁଜିହୋଇଗଲା । ଭଗବାନଙ୍କୁ ସ୍ମରଣ କରି ଆଖି ଖୋଲିଲା ବେଳକୁ ଦେଖିଲି, ବିଜୁର କପାଳରୁ ରକ୍ତଝରି ତାର ଧୋତି ପଞ୍ଜାବୀ ସବୁ ରକ୍ତରେ ଭିଜି ଗଲାଣି । ବିଜୁ ଯେଉଁ ଜାଗାରେ ଯାଇ ଠିଆ ହୋଇଥିଲା, ଠିକ୍ ସେଇଠି ଠିଆ ହୋଇ ଲେନ୍ ସାହେବଙ୍କୁ ଧମକେଇ କହୁଚି—ଅଲ୍‌ରାଇଟ, ଆଇ ସାଲ୍ ସି ୟୁ ! ··ଏସ୍.ପି.ଙ୍କୁ ଦେଖାଗଲା କାଳିଭଳି

ସେଠୁ କ୍ଷିପ୍ର ଗତିରେ ଚାଲି ଆସିଲା । ଆମେ ସବୁ ରାସ୍ତା ଉପରକୁ ବାହାରିଗଲୁ । ହଷ୍ଟେଲ ଭିତରକୁ ଆଣି ତା' ଚିକିତ୍ସା ପାଇଁ ଆୟୋଜନ କଲାବେଳକୁ ଆମକୁ ଆଡ଼େଇଦେଇ କହିଲା—ମୋର କିଛି ହୋଇନି । ଗୋଟିଏ ଓଦା ରୁମାଲରେ ମୁହଁ ପୋଛି କହୁଥାଏ, ଯେମିତି ଭାବରେ ମତେ ମାରିବା ପାଇଁ ତା ଛଡ଼ି ଉଠେଇଥିଲା, ମୋ ମୁଣ୍ଡ ହୁଏତ ଫାଟିଯାଇ ଥା'ନ୍ତା । କିନ୍ତୁ ସେ ଛଡ଼ି ଉଠେଇବା ମାତ୍ରେ ମୁଁ ମୋ ମଥାକୁ ଲୁଚେଇ ନେଲି । ଏଇ ଦେଖ, ମୋ କପାଳରେ ତା' ଛଡ଼ିଟା ଖାଲି ଘସିହୋଇଯାଇ ଚମ ଟିକେ ଫାଟି ଯାଇଚି । ଆଉଥରେ ରୁମାଲରେ ମୁହଁ ପୋଛି ସାଇକେଲରେ ବସି ଚାଲିଗଲା । ··ବନ୍ଧୁ ଚାଲିଗଲା । କିନ୍ତୁ ଆମେ ସବୁ ତାର ଭକ୍ତବୃନ୍ଦ, ଆମକୁ ସବୁ ଉତ୍କଣ୍ଠାରେ ବୁଡ଼େଇଦେଇ ଗଲା । ତାର ପ୍ରକୃତରେ ଯେ କି ଅବସ୍ଥା ହେବ ! ତା' ପରଦିନ ଅପରାହ୍ନରେ ପୁଣି ସତ୍ୟାଗ୍ରହୀମାନେ ହାତରେ ତିରଙ୍ଗା ପତାକା ଧରି ଗାନ୍ଧୀଙ୍କ ଜୟନାଦ କରି ଆଶ୍ରମ ଦଖଲ କରିବା ପାଇଁ ଉପରମହଲାକୁ ଉଠିଲେ । ଆମେ ହଷ୍ଟେଲରେ ଥାଇ ଦେଖିଲୁ ରାସ୍ତା ଉପରେ ମାତ୍ର ତିନି ଚାରିଜଣ ପୋଲିସ କନେଷ୍ଟବଲ ଅଛନ୍ତି । ଆ୍ମମାନେ ସାହସ କରି ରାସ୍ତା ଉପରକୁ ଆସିଲୁ, ଟିକିଏ ପରେ ଗୋଟିଏ କାର୍ ଆସି ଅଟକିଲା । କାର୍‌ରୁ କଟକର କଲେକ୍ଟର (ବୋଧହୁଏ ମି. ଓ୍ୱାର୍ଡ) ଓ ତାଙ୍କ ସହିତ ଜଣେ ଦୁଇଜଣ ଅଫିସର ଓହ୍ଲାଇଲେ । ଆମେ ଟିକିଏ ସାହସ ସଞ୍ଚୟନ କରି ଗାଡ଼ି ଭିତରକୁ ଚାହିଁ ଦେଖିଲୁ, ଗାଡ଼ି ଭିତରେ ଏସ୍.ପି. ମି. ଲେନ୍ ମୂଷାଟି ପରି ଜାକି ଜୁକି ହୋଇ ମୁହଁ ତଳକୁ କରି ବସିଚନ୍ତି—ତା ଅର୍ଥ କଲେକ୍ଟର ଏସ୍.ପି.ଙ୍କୁ ଗାଡ଼ିରୁ ଓହ୍ଲେଇବା ପାଇଁ ଅନୁମତି ଦେଇ ନାହାନ୍ତି । କିଛି ଦେଖଣାହାରୀ ଆସି ପହଞ୍ଚି ଗଲେଣି । କଲେକ୍ଟର ସେମାନଙ୍କ ଭିତରୁ କେତେଜଣଙ୍କ ସହିତ ହସି ହସି କଥାବାର୍ତ୍ତା କରୁଥା'ନ୍ତି । ଯେଉଁ ପୋଲିସ କେତେଜଣ ଆସିଥିଲେ ସେମାନେ ଆଶ୍ରମ ଉପରକୁ ଯାଇ ସତ୍ୟାଗ୍ରହୀମାନଙ୍କୁ ଭଲରେ ଭଲରେ ବନ୍ଦୀ କରି ନେଇ-ଗଲେ । ଗତକାଲିର ଘଟଣାରେ କଟକ ସହରରେ ଆତଙ୍କ ଖେଳିଯାଇଥିଲା । କଂଗ୍ରେସ ତରଫରୁ ଏକ ପ୍ରତିବାଦ ସଭା ଅନୁଷ୍ଠିତ ହେଲା ।

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଓଡ଼ିଶାକୁ କଂଗ୍ରେସ ଆଣିବା ଦିନଠୁଁ ଯେତେବେଳେ କଟକରେ କଂଗ୍ରେସ ସଭାଟିଏ ହୋଇଚି, ସେତେବେଳେ ମନ୍ଦିରର ନିତିନୟମ ପରି ଜାତୀୟ କବି ବୀରକିଶୋର ଦାସ ନୂଆ ଜାତୀୟ ସଙ୍ଗୀତଟିଏ ଲେଖିଥାଆନ୍ତି ଓ ସଭା ଆରମ୍ଭ ପୂର୍ବରୁ ସୁଗାୟକ ଶ୍ରୀଯୁକ୍ତ ଅଦ୍ୱୈତବଲ୍ଲଭ ରାୟ ସଭା ଆରମ୍ଭରେ ସେଇ ଗୀତଟି ଗାଇଥା'ନ୍ତି । ଯେଉଁଦିନ ସଭା, ସେଇଦିନ ଗୀତଟିର ରଚନା, ସ୍ୱରସଂଯୋଜନା ଓ ସନ୍ଧ୍ୟାବେଳେ ସଭାରେ ସଙ୍ଗୀତଟିର ପରିବେଷଣ ।

ଊଣେଇଶିଶହ ତିରିଶି ମସିହାରୁ ସ୍ୱାଧୀନତା ଲାଭ ପର୍ଯ୍ୟନ୍ତ ମୁଁ ପ୍ରାୟ ପ୍ରତ୍ୟେକ କଂଗ୍ରେସ ସଭାକୁ ଯାଇଚି, ମାତ୍ର ଏଥିରେ ବ୍ୟତିକ୍ରମ ଘଟିବାର କେବେ ମୁଁ ଲକ୍ଷ୍ୟ କରିନାହିଁ ।...ସେଦିନର ପ୍ରତିବାଦ ସଭା ପାଇଁ ମଧ୍ୟ ଜାତୀୟ କବି ଗୀତଟିଏ ଲେଖିଲେ ଓ ଅଦ୍ୱୈତ ବାବୁ ଗୀତଟିକୁ ସଭା ପୂର୍ବରୁ ପରିବେଷଣ କଲେ । ଗୀତଟିର ପ୍ରଥମ ପଦଟି ବୋଧହୁଏ ଏହିପରି ଥିଲା—

"ଚଳିବନି ଆଉ ଚଳିବନି ?

ଆମେ କେଇଜଣ ପରିଣ ନ ଦେଲେ

ଗୋରା ସିଂହାସନ ଟଳିବନି ?

ସାଧାରଣତଃ ଦେଖାଯାଏ ଦେଶାତ୍ମବୋଧ ସଙ୍ଗୀତ ରଚନାରେ ଅତି-ମାତ୍ରାରେ ଆଳଙ୍କାରିକ ଶବ୍ଦ ବ୍ୟବହାର ହୋଇଥାଏ, ଯେପରି "ତୁଙ୍ଗ ଶିଖରୀଚଳ କୁଞ୍ଜ କାନନମାଳ" ଇତ୍ୟାଦି । କିନ୍ତୁ ଜାତୀୟ କବି ବୀରକିଶୋରଙ୍କ ଦେଶାତ୍ମ-ବୋଧ ସଙ୍ଗୀତ ରଚନାରେ ଏଭଳି ଶବ୍ଦ ଏକାବେଳେକେ ବିରଳ । ସେ କେବଳ ଅତି ସରଳ ତରଳ ସହଜ ଭାଷାରେ ହିଁ ଗଭୀର ଦେଶାତ୍ମବୋଧ ଭାବ ଉଦ୍ଦୀପକ ସଙ୍ଗୀତ ବହୁସଂଖ୍ୟାରେ ରଚନା କରିଯାଇଚନ୍ତି, ଓ ଏଥିପାଇଁ ଚିରଦିନ ଲାଗି ସେ ଜାତୀୟ କବି ସମ୍ମାନରେ ମଣ୍ଡିତ ହୋଇ ରହିଚନ୍ତି । ·ସେଦିନର ସଭା ଅତି ଉଦ୍ଦାମ ଉତ୍ସାହର ସହିତ ଶେଷ ହେଲା । ମୋ' ମନରେ ସେଇ ଗୋଟିଏ କଥା ଖେଳୁଥାଏ । ଏସ୍ ପି. ଲେନ୍ ସାହେବଙ୍କୁ ବିଜୁ କାହିଁକି କହିଲା ଯେ, "ଆଇ ଉଇଲ୍ ସି ୟୁ" ! କ'ଣ ସେ ଦେଖିବ ! କିନ୍ତୁ ନା, ମତେ ଆଉ ବେଶୀ ସମୟ ଚିନ୍ତା କରିବାକୁ ପଡ଼ିଲାନି । ଘଟଣା ଘଟିବାର ଦ୍ୱିତୀୟ ଦିନ କଲେକ୍ଟର ଏଇ ଏସ୍. ପି. ଙ୍କୁ ଗାଡ଼ିରୁ ତଳକୁ ଓହ୍ଲାଇଦେଲେ ନାହିଁ ଆଉ ତୃତୀୟ ଦିନ ତାଙ୍କୁ ଅନ୍ୟ ଏକ ଜିଲ୍ଲାକୁ ବଦଳି କରିଦିଆଗଲା । ହଁ, ଏକଥା ନୁହେଁ ଯେ, ଲେନ୍‌ସାହେବ କେବଳ ବିଜୁକୁ ମାରିଲା ବୋଲି ତାକୁ ଏପରି ଦଣ୍ଡ ଦିଆଗଲା । ଅବଶ୍ୟ ବିଜୁ କଟକ ସହରର ଏକ ଅତି ବିଶିଷ୍ଟ ପରିବାରର ଅତି ପ୍ରତିଷ୍ଠିତ ଓ ସେକାଳର ଉଦାରପନ୍ଥୀ ନେତା ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ପଟ୍ଟନାୟକ, କାଇଜାର୍-ଇ-ହିନ୍ଦ୍‌ଙ୍କ ପୁତ୍ର । ସମସ୍ତ କଟକ ସହର ବାସୀଙ୍କର ସେ ଅତି ପ୍ରିୟ ଓ ଆପଣାର । କିନ୍ତୁ ସେ ଏଥି ପ୍ରତି ଧ୍ୟାନ ନ ଦେଇ ସେଦିନ ଲେନ୍‌ସାହେବ ଅତି ନିରୀହ ନିରସ୍ତ୍ର ସତ୍ୟାଗ୍ରହୀମାନଙ୍କ ବିନା ପ୍ରରୋଚନାରେ ନିର୍ମମ ପ୍ରହାର କରି ଯେଉଁ ହୃଦୟ ବିଦାରକ ଦୃଶ୍ୟ ଘଟାଇଦେଲା, ସେଥିପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ସ୍ୱୟଂ ବିଜୁର ମଧ୍ୟ ନିଜସ୍ୱ ପ୍ରଚେଷ୍ଟା ରହିଥିଲା ।

ଏଇ ଦୁଃସାହସୀ ବିଜୁ ! ପରବର୍ତ୍ତୀ କାଳରେ ରେଭେନ୍‌ସା କଲେଜ ଫୁଟ୍‌ବଲ୍‌ଟିମ୍‌ର ଇତିହାସ ସୃଷ୍ଟିକାରୀ ସେଣ୍ଟରହାଫ୍, ପାଟନା ବିଶ୍ୱବିଦ୍ୟାଳୟ ଫୁଟବଲଟିମ୍‌ର ପ୍ରଥମ ଓଡ଼ିଆ ଖେଳାଳୀ, କଲେଜରେ ପଢୁଥିବାବେଳେ କିଙ୍ଗସ୍ କମିଶନ ପାଇ ଭାରତୀୟ ରୟାଲ ଏୟାର୍‌ଫୋର୍ସରେ ପ୍ରଥମ ଓଡ଼ିଆ ପାଇଲଟ୍, ଭାଇସ୍‌ରୟ ଲର୍ଡ ଓ୍ୱାଭେଲଙ୍କ ବ୍ୟକ୍ତିଗତ ବିମାନ ଚାଳକ, ଓ ସେଇ ଓ୍ୱେଭେଲ୍‌ଙ୍କ ଜାମାନ୍ ଅପହରଣ କରିନେବା ଅଭିଯୋଗ ? ରେ ଅନ୍ତରୀଣ ବନ୍ଦୀ ଓ ପରେ ବହୁକାଳ ଅଣ୍ଡରଗ୍ରାଉଣ୍ଡରେ ରହିବା ପରେ ମୁକ୍ତ, ଓ ସେଇ ସମୟରେ ଇଣ୍ଡୋନେସିଆରେ ଜଳ, ସ୍ଥଳ, ଆକାଶ ସବୁ ପ୍ରତିରକ୍ଷା ବ୍ୟବସ୍ଥାକୁ ଫାଙ୍କିଦେଇ ନେହେରୁଙ୍କ ଉପଦେଶ କ୍ରମେ ଇଣ୍ଡୋନେସିଆର ପ୍ରେସିଡେଣ୍ଟ ସୁକର୍ଣ୍ଣୋଙ୍କୁ ବିମାନଯୋଗେ ଭାରତକୁ ଆନୟନ ଓ ଏହିପରି ବହୁ ବହୁ ଦୁଃସାହସିକ ତଥା ଗୁରୁତ୍ୱପୂର୍ଣ୍ଣ କାହାଣୀ ଓ କୀର୍ତ୍ତିର ଅଧିକାରୀ, ସେଦିନର ଆମ ଛାତ୍ର ସମାଜର ପ୍ରିୟତମ "ବିଜୁ" ଆଉ କେହି ନୁହଁନ୍ତି, ବର୍ତ୍ତମାନର ଦୁଇ ଦୁଇଥର ନିର୍ବାଚନରେ ଜୟଲାଭ କରିଥିବା ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ । (ଲର୍ଡ ଓ୍ୱାଭେଲ୍‌ଙ୍କ ସମ୍ପର୍କୀୟ ଘଟଣାଟି କେବଳ ଲୋକମୁଖରୁ ସଂଗୃହୀତ) ।

## ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ସମ୍ମାନାର୍ଥେ ବିରାଟ ପ୍ରଦର୍ଶନୀ ଓ ଶିଳ୍ପୀ ଶ୍ରୀ ବିମ୍ବାଧର ବର୍ମା

ସମସ୍ତ ବିବାଦ ଯାଇଛି । ଏଇ ସମୟରେ ବ୍ରିଟିଶ୍ ପାର୍ଲାମେଣ୍ଟରେ ୧୯୩୫ ମସିହା ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ ନାମରେ ଗୋଟିଏ ବିଲ୍ ଗୃହୀତ ହେଲା ଓ ଏଇ ବିଲ୍ ଦ୍ୱାରା ଭାରତରେ ଓଡ଼ିଶା ଓ ସିନ୍ଧୁ—ଏ ଦୁଇଟି ନୂତନ ପ୍ରଦେଶ ଗଠିତ ହେଲା । ଏହା ସହିତ ଭାରତରେ ସର୍ବପ୍ରଥମ ଗଣତାନ୍ତ୍ରିକ ଭିତ୍ତିରେ ନିର୍ବାଚନ କରାଯିବାର ବ୍ୟବସ୍ଥା ମଧ୍ୟ ବିଲ୍‌ରେ ରହିଲା । କିନ୍ତୁ ଏଇ ନିର୍ବାଚନ ଜେନେରାଲ୍ ଫ୍ରାଞ୍ଚାଇଜ୍ ପଦ୍ଧତିରେ ନ ହୋଇ ଲିମିଟେଡ୍ ଫ୍ରାଞ୍ଚାଇଜ୍ ବା ସୀମିତ ଫ୍ରାଞ୍ଚାଇଜ୍ ପଦ୍ଧତିରେ ହେବାର ବ୍ୟବସ୍ଥା ବିଲ୍‌ରେ ଥିଲା । ଏଇ ସୀମିତ ପଦ୍ଧତିର ମର୍ମ ହେଲା—ଜଣେ ଭୋଟଦାତାଙ୍କ ବୟସ ଏକୋଇଶ ବର୍ଷ ହୋଇଥିବ ଓ ତାଙ୍କ ଶିକ୍ଷାଗତ ଯୋଗ୍ୟତା ସର୍ବନିମ୍ନ ମେଟ୍ରିକ୍ ପାଶ୍ ହୋଇଥିବ । ଶିକ୍ଷାଗତ ଯୋଗ୍ୟତା ନ ଥିଲେ ସେ ଏକ ନିର୍ଦ୍ଦିଷ୍ଟ ସୀମାର ଆୟକରଦାତା ଓ ଗ୍ରାମାଞ୍ଚଳ ବାସୀନ୍ଦା ହୋଇଥିଲେ ସେଇପରି ଏକ ନିର୍ଦ୍ଦିଷ୍ଟ ସୀମାର ଚୌକିଦାରୀ ଟିକସଦାତା ହୋଇଥିବେ । ଉଣେଇଶିଶହ' ଛତିଶ ମସିହା ଏପ୍ରିଲ୍ ପହିଲାଦିନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବାର କଥା । ସେଇ

ଅନୁସାରେ ବ୍ୟବସ୍ଥା ସବୁ ଚାଲିଥାଏ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଶୁଭକାମନା କରି ମ୍ୟୁନିସିପାଲିଟି ପଡ଼ିଆରେ ମ୍ୟୁନିସପାଲିଟି ଅଫିସ ପଛପଟରୁ ଟାଉନହଲ୍ ସେପଟ ଶ୍ରୀରାମଚନ୍ଦ୍ରଭବନ ପର୍ଯ୍ୟନ୍ତ ବ୍ୟାପ୍ତ ଏକ ସୁଶୋଭିତ ସୁପରିକଳ୍ପିତ ସୁନ୍ଦର ସର୍ବଭାରତୀୟ ପ୍ରଦର୍ଶନୀ ବେଶ୍ ଜାକଜମକ ଧରି ଚାଲିଥିଲା । ମୋର ଜୀବନକାଳ ଭିତରେ ଏପରି ଏକ ଚିତ୍ତାକର୍ଷକ ପ୍ରଦର୍ଶନୀ କଟକ ସହରରେ ମୁଁ ଆଉ କେବେ ଦେଖିନି । ଏଇ ପ୍ରଦର୍ଶନୀ ମ୍ୟୁନିସିପାଲିଟି ଏକ୍‌ଜକ୍ୟୁଟିଭ ଅଫିସର ଶ୍ରୀ ସୋମନାଥ ଦାସଙ୍କ ସୁପରିଚାଳନାରେ ମ୍ୟୁନିସିପାଲିଟି ପରିସରର ରୂପରେଖ ସବୁ ବଦଳିଗଲା । ସମ୍ରାଟ୍ ପଞ୍ଚମଜର୍ଜଙ୍କ ରାଜତ୍ୱର ପଚିଶ ବର୍ଷ ପୂର୍ତ୍ତି ଉପଲକ୍ଷେ ଜୁବିଲି ଉତ୍ସବ ପାଳନ କରାଯାଇ ମ୍ୟୁନିସିପାଲିଟିର ମୁଖ୍ୟ ପ୍ରବେଶ ଦ୍ୱାର ସଂଲଗ୍ନ ସ୍ଥାନରେ ଜୁବିଲି ମାର୍କେଟ ସ୍ଥାପିତ ହେଲା ଓ ପରିତ୍ୟକ୍ତ କର୍ଦ୍ଦମାକ୍ତ ଅସୁନ୍ଦର ମ୍ୟୁନିସିପାଲିଟି ପୁଷ୍କରିଣୀର ସମ୍ପୂର୍ଣ୍ଣ ସଂସ୍କାର କରାଯାଇ ଏହାକୁ ଏକ ଶୋଭନୀୟ ସମ୍ଭ୍ରାନ୍ତ ପୁଷ୍କରିଣୀର ମର୍ଯ୍ୟାଦା ଦିଆଗଲା । ପ୍ରଦର୍ଶନୀ ସମୟରେ ଏହାର ଚତୁଃପାର୍ଶ୍ୱକୁ ରଙ୍ଗୀନ୍ ଆଲୋକମାଳାରେ ସୁଶୋଭିତ କରି ପୁଷ୍କରିଣୀର ପରିଷ୍କୃତ ଜଳ ଉପରେ ନୌକା ବିହାରର ବ୍ୟବସ୍ଥା କରାଯାଇଥିଲା । କଲିକତାର ଘୂର୍ଣ୍ଣାୟମାନ ରଙ୍ଗମଞ୍ଚ ରଙ୍ଗମହଲରେ ମଧ୍ୟ ପ୍ରଦର୍ଶନୀ ପ୍ରାଙ୍ଗଣରେ ଚାରିଦିନ ଧରି ବଙ୍ଗଳା ନାଟକ ଅଭିନୀତ ହୋଇଥିଲା । ସେଥିରୁ ଗୋଟିଏ ନାଟକ "ବାଙ୍ଗଲାର ମେୟେ" ମୁଁ ଦେଖିଥିଲି ଓ ପଦ୍ମାଦେବୀ, ଅଙ୍ଗୁର୍‌ବାଲା, ରାଣୀବାଲା, ଭୂମେନ୍ ରାୟ, ଯୋଗେଶ ଚୌଧୁରୀ, ଜହର ଗାଙ୍ଗୁଲି ପ୍ରଭୃତି ସେ ସମୟର କଲିକତାର ସୁ ପ୍ରସିଦ୍ଧ ନଟନଟୀମାନଙ୍କୁ ଦେଖିବାର ସୁଯୋଗ ପାଇଥିଲି । ପ୍ରବାସୀ ବାଙ୍ଗ୍‌ଲା ସାହିତ୍ୟ ପରିଷଦ ପାଠାଗାରର ମେମ୍ବର ହୋଇ ବହୁ ସଂଖ୍ୟାରେ ବଙ୍ଗଳା ବହି ମୁଁ ପଢ଼ୁଥାଏ, କିନ୍ତୁ ଏଇ ପ୍ରଥମ ଏକ ବଙ୍ଗଳା ନାଟକ ଏଇ ଏକ୍‌ଜିଭିସନ୍‌ରେ ଦେଖିଲି ।

## ଶିଳ୍ପୀ ବି. ବର୍ମା

...ହଁ, ବି. ବର୍ମା—ବିମ୍ବାଧର ବର୍ମା—ଚିତ୍ରଶିଳ୍ପୀ, ଚିତ୍ରାଙ୍କନ କ୍ଷେତ୍ରରେ ଓଡ଼ିଶାର ବରପୁତ୍ର । ତାଙ୍କ ନାଁ ମୁଁ ଶୁଣିଛି, କିନ୍ତୁ କେବେ ତାଙ୍କୁ ଦେଖି ନ ଥିଲି । ଏଇ ଏକ୍‌ଜିଭିସନ୍‌ରେ ତାଙ୍କର ଅମର ଚିତ୍ରକଳା "ପଲ୍ଲୀବଧୂ" ଦେଖିଲି, ସେଇ ସଙ୍ଗେ ସଙ୍ଗେ ପଲ୍ଲୀବଧୂର ସ୍ରଷ୍ଟା ଶିଳ୍ପୀଶିରୋମଣି ବର୍ମାଙ୍କୁ ମଧ୍ୟ ସେଠି ଦେଖିଲି—ମଧ୍ୟମ ଗଢ଼ଣ, ହସ ହସ ମୁଖଶ୍ରୀ ଆଖିରେ ସୁନା-ଫ୍ରେମର ଚଷମା । ଆଜି ତାଙ୍କ ରୂପ ସ୍ମରଣ କଲେ ମନେ ହୁଏ, ସତେ ଯେମିତି ସେ ରୂପ ଓ ଗୁଣ ଉଭୟ ବିଭବ ଘେନି ଶିଳ୍ପୀ ହେବାପାଇଁ ଜନ୍ମ ନେଇଥିଲେ । ମୁଁ ପଲ୍ଲୀବଧୂ ଛବିଟିକୁ ଦେଖୁଥାଏ, ସମଗ୍ର ପ୍ରଦର୍ଶନୀରେ ଏଇ ପଲ୍ଲୀବଧୂ ଚିତ୍ରଟି

ଥିଲା ସବୁଠୁ ବଡ଼ ଆକର୍ଷଣ । ଏତେ ସୁନ୍ଦର ଗୋଟିଏ ଚିତ୍ର ମୁଁ ପୂର୍ବରୁ କେବେ ଦେଖି ନ ଥିଲି । ଆଜି ମୋର ମନେ ପଡ଼ୁଚି, ପ୍ରଦର୍ଶନୀର ଶେଷ ଦିବସରେ (ଯେତେବେଳେ ସୁନାଭରି ଥିଲା ଚଉଦ, ପନ୍ଦର ଟଙ୍କା) କନିକାର ଟିକାୟତ ସାହେବ ଶ୍ରୀ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ ପଲ୍ଲୀବଧୂ ଛବିଟିକୁ ସାତହଜାର ଟଙ୍କା ଦେଇ ବର୍ମାଙ୍କଠାରୁ କିଣିନେଇଥିଲେ । ···ଶ୍ରୀଯୁକ୍ତ ବର୍ମା ସେତେବେଳେ ଗୁନ୍ଦିମାଚୌକ ଅଞ୍ଚଳରେ ରହୁଥିଲେ । ସେ ପର୍ଯ୍ୟନ୍ତ ତାଙ୍କ ସହିତ ମୋର କୌଣସି ସାକ୍ଷାତ ହୋଇ ନ ଥିଲା । ପ୍ରଦର୍ଶନୀ ଘଟଣା ପରେ ମୁଁ ସାହସ କରି ତାଙ୍କ ନିକଟକୁ ଗଲି । ତାଙ୍କ ସହିତ ଥରେ ଦେଖା କରିବା ପାଇଁ ମୋ' ଯିବାର ଉଦ୍ଦେଶ୍ୟ ବୋଲି ତାଙ୍କୁ ଜଣାଇଲି । ତାଙ୍କ ମୁହଁରେ ଟିକେ ହସ ଖେଳିଗଲା । ମୁଁ ଏଣେ-ତେଣେ ଆଖିଫେରାଇ ଛବିସବୁକୁ ଦେଖୁଥାଏ—ଏ ସ୍ଥାନଟି ଜଣେ ଆର୍ଟିଷ୍ଟର ଷ୍ଟୁଡିଓ ବୋଲି ସେଇ ପ୍ରଥମ ମୁଁ ଜାଣିଲି । ଗୋଟିଏ ଛବିକୁ ଲକ୍ଷ୍ୟକରି ମତେ ପଚାରିଲେ—ଏ ଚିତ୍ରଟି ତମକୁ କେମିତି ଲାଗୁଚି ? ···ଛବିଟି ଗୋଟିଏ ସୁନ୍ଦରୀ ଯୁବତୀର ଛବି—ପେନ୍‌ସିଲ୍ ସ୍କେଚ୍ । ତାଙ୍କୁ କହିଲି—ହଁ ଛବିଟି ଭଲ ହୋଇଚି । ···କହିଲେ—ଭଲ ଖରାପ୍ କଥା ନୁହେଁ । ଛବିଟିର ମୁହଁକୁ ଚାହିଁଦେଖ, ସେ ଭଲ-ମୁଡ୍‌ରେ ଅଛି ନା ଖରାପ ମୁଡ୍‌ରେ ଅଛି ? ଟିକେ ଦ୍ୱନ୍ଦ୍ୱରେ ପଡ଼ି କହିଲି—ଭଲ ମୁଡ୍‌ରେ ଅଛି ବୋଲି ତ ଜଣା ପଡ଼ୁଚି । ···ମତେ କହିଲେ—ଆଚ୍ଛା ତମେ ବର୍ତ୍ତମାନ ଆଖି ବୁଜ । ମୁଁ ଆଖି ବୁଜିଲି । ପ୍ରାୟ ତିନି ଚାରି ସେକେଣ୍ଡ ପରେ କହିଲେ—ହଁ ଏଥର ଆଖିଖୋଲ···ମୁଁ ଆଖି ଖୋଲିଲି । ମୋ' ବିସ୍ମୟର ସୀମା ନାହିଁ, ମୁଁ ଦେଖୁଚି ଏଥର ଝିଅଟିର ମୁହଁ ଏକାବେଳକେ କାନ୍ଦ କାନ୍ଦ । ପଚାରିଲି—ଏଇଟା କ'ଣ ସେଇ ଛବି ? ହସି ହସି କହିଲେ—ହଁ ସେଇ ଛବି । ଏଇ ଦେଖ ଏ ପେନ୍‌ସିଲ୍ ମୁନର ଟିକେ ସ୍ପର୍ଶରେ ତା'ର ମୁହଁର ଅବସ୍ଥା ବଦଳି ଯାଉଚି । ଏଥର ତାଙ୍କର ପାଦସ୍ପର୍ଶ କରି ଫେରିଲି । ଏ ଘଟଣାର ଅନେକ ଦିନ ପରେ ପୁଣି ବିମ୍ବାଧର ବର୍ମାଙ୍କ ଶିଳ୍ପକଳାର ଏକ ଅଲୌକିକ ଚିତ୍ର ମୋ' ଆଖିରେ ପଡ଼ିଲା । କଲିକତାରୁ ଶ୍ରୀ ସଜନୀକାନ୍ତ ଦାସଙ୍କ ସମ୍ପାଦିତ ସାହିତ୍ୟ ପତ୍ରିକା "ଶନିବାରେର ଚିଠି" ମୁଁ ନିୟମିତ ପଢ଼ୁଥିଲି । ବେଳେ ବେଳେ ବଙ୍ଗଳା ସାହିତ୍ୟ ପତ୍ରିକା "ଭାରତବର୍ଷ" ବି ପଢ଼େ । ସେଦିନ ଭାରତବର୍ଷ ପୃଷ୍ଠାରେ ଦେଖିଲି ବର୍ମାଙ୍କର ସେଇ ଅଲୌକିକ ଚିତ୍ରଟି ।

**ଅର୍ଦ୍ଧଶତ ବର୍ଷ ପରେ**

ଚିତ୍ରଟିର ନାମକରଣ କରାଯାଇଚି "ଅର୍ଦ୍ଧଶତ ବର୍ଷ ପରେ"—ଆଉ ଚିତ୍ରଟିର ବିଷୟବସ୍ତୁ ହେଲା—ଅର୍ଦ୍ଧଶତ ବା ଦୀର୍ଘ ପଚାଶ ବର୍ଷ ପରେ ଦୁଇ

ପରମ ବନ୍ଧୁଙ୍କର ଭେଟ ହୋଇଛି ଓ ତୁହେଁ ତୁହିଁଙ୍କୁ ସେମାନଙ୍କର ମ୍ଳାନ-ଚକ୍ଷୁରେ ଗ୍ରହି ରହିଛନ୍ତି । ଚିତ୍ରରୁ ଜଣାପଡ଼ୁଛି ସେମାନଙ୍କର ସେତେବେଳର ବୟସ ପ୍ରାୟ ଅଶୀର ପାଖାପାଖି । ପ୍ରାୟ ପଚାଶ (୫୦) ବର୍ଷ ପରେ ଏ ସାକ୍ଷାତରେ ତୁହେଁ ଯେମିତି ତୁହିଁଙ୍କଠାରେ କିଛି ଖୋଜି ବୁଲୁଛନ୍ତି । ଛବିଟି ଦେଖି କିଛି ମୁହୂର୍ତ୍ତ ପାଇଁ ମୁଁ ଏକାବେଳକେ ଅଭିଭୂତ ହୋଇପଡ଼ିଲି । ଏବେ ଯେତେ ଚେଷ୍ଟା କଲେ ବି ଛବିଟିର ସାମଗ୍ରିକ ରୂପରେଖ ମୁଁ ଏଠି ପ୍ରକାଶ କରିପାରୁନି । ତେବେ ଏ ଛବିଟି ଦେଖି 'ଶନିବାରେର' ଚିଠିର ସମ୍ପାଦକ ଶ୍ରୀ ସଜନୀକାନ୍ତ ଦାସ ଲେଖିଥିଲେ—"ଶିଳ୍ପୀ ଶ୍ରୀ ବର୍ମା ତାଙ୍କ ଚିତ୍ରଟିର ନାମକରଣ 'ଅର୍ଦ୍ଧଶତ ବର୍ଷ ପରେ' ରଖିଛନ୍ତି ଠିକ୍; କିନ୍ତୁ ପ୍ରକୃତରେ ଅର୍ଦ୍ଧଶତ ବର୍ଷ ପରେ ହିଁ ପୁଣି ଏମିତି ଗୋଟିଏ ଦୁର୍ଲ୍ଲଭ ଚିତ୍ର ଆମକୁ ଦେଖିବାକୁ ମିଳିଲି" । ଯେଉଁ ବଙ୍ଗଦେଶରେ ନନ୍ଦଲାଲ, ଯାମିନୀକାନ୍ତ ଅବନୀନ୍ଦ୍ର ପ୍ରଭୃତି ଚିତ୍ରକଳାର ମହାନ ସାଧକମାନେ ଅଛନ୍ତି, ସେଠି ଓଡ଼ିଆ ଶିଳ୍ପୀ ବି. ବର୍ମାଙ୍କ ପ୍ରତି ସଜନୀକାନ୍ତ ଦାସଙ୍କ ଏଭଳି ସମ୍ମାନ ପ୍ରଦର୍ଶନରେ ଆଜି ମଧ୍ୟ ମୋ ଛାତି ଗର୍ବରେ ଫୁଲିଉଠୁଛି । କଲିକତା ନିଉ ଥିଏଟାର୍ସ ପ୍ରଯୋଜିତ ଓ ପ୍ରମଥେଶ ବରୁଆ ନିର୍ଦ୍ଦେଶିତ ଚଳଚ୍ଚିତ୍ର ଜଗତରେ ଇତିହାସ ସୃଷ୍ଟିକାରୀ ବଙ୍ଗଳା କଥାଚିତ୍ର "ମୁକ୍ତି"ର ଯୁଗ୍ମ ଚିତ୍ରନାଟ୍ୟ ଲେଖକ ଥିଲେ ଶ୍ରୀ ପ୍ରମଥେଶ ବରୁଆ ଓ ସଜନୀକାନ୍ତ ଦାସ । ପୁଣି ଏଇ ସଜନୀକାନ୍ତ ଦାସ ଥିଲେ ସାଙ୍ଘାତିକ ଭାବେ ସ୍ପଷ୍ଟବାଦୀ । ଥରେ ମୁଁ ଦେଖିଲି, ଶନିବାରେର ଚିଠି ପତ୍ରିକାର ଗୋଟିଏ ପଟେ ଏକ ଇଂରାଜୀ ଉପନ୍ୟାସର କିଛି ଅଂଶ ମୁଦ୍ରିତ ହୋଇଛି ଓ ଅନ୍ୟପଟେ ରହିଛି ଇଂରେଜ ଉପନ୍ୟାସଟିର ସେଇ ଅଂଶଟିର ବଙ୍ଗଳା ଅନୁବାଦ । ଅନ୍ୟ କଥାରେ ବଙ୍ଗଳା ଭାଷାର ଜଣେ ଅତି ପ୍ରତିଷ୍ଠିତ କବି କଥାକାର ଓ ନାଟ୍ୟକାର ପୁଣି କଲିକତା ପ୍ରେସିଡେନ୍‌ସି କଲେଜର ବରିଷ୍ଠ ଇଂରାଜୀ ପ୍ରଫେସର ହେଉଛନ୍ତି ଏଇ ଉପନ୍ୟାସର ଲେଖକ । ଏହା ହେଉଛି ଏକ ସାହିତ୍ୟିକ ଚୋରି ବା ପ୍ଲାଗାରାଇଜେସନ୍ । ତାଙ୍କର ସବୁ ପ୍ରତିପତ୍ତି ସତ୍ତ୍ୱେ ସଜନୀକାନ୍ତଙ୍କ ଜାଗ୍ରତ ଦୃଷ୍ଟି ତାଙ୍କୁ କ୍ଷମା ଦେଇନି । ଏଇ ଉପନ୍ୟାସକାର ତାଙ୍କର ଅନ୍ୟ ଏକ ଉପନ୍ୟାସ 'ଯେଦିନ କମଳ ଫୁଟିଲ୍'ରେ କଲିକତାର ପ୍ରବାସୀ ଓଡ଼ିଆମାନଙ୍କ ଚଳଣି ଓ ବ୍ୟବହାରକୁ ଅତି ନିମ୍ନ ସ୍ତରର ବ୍ୟଙ୍ଗପୂର୍ଣ୍ଣ ଭାଷାରେ ସମାଲୋଚନା କରିଥିଲେ । ଆମର କବିଚନ୍ଦ୍ର କାଳୀ ପଟ୍ଟନାୟକ ତାଙ୍କର ଏକ ନାଟକରେ ଏଇ ବଙ୍ଗାଳୀ ଉପନ୍ୟାସକାରଙ୍କ କୁତ୍ସିତ ଆଚରଣର ଯଥାର୍ଥ ଉତ୍ତର ଦେଇଥିଲେ ।

## ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ

୧୯୩୬ ମସିହା ଏପ୍ରିଲ୍ ପହିଲା । ଏହିଦିନ ବିହାରରୁ ବିଚ୍ଛିନ୍ନ ହୋଇ ବାଲେଶ୍ୱର, କଟକ, ପୁରୀ, ଗଞ୍ଜାମ, କୋରାପୁଟ ଓ ସମ୍ବଲପୁର ଏହି ଛ' ଗୋଟି ଜିଲ୍ଲାକୁ ନେଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା । ଏ ପାଖରେ ଓଡ଼ିଶାବାସୀଙ୍କ ଯେମିତି ପ୍ରବଳ ଆଶା ଆକାଂକ୍ଷା ଓ ଉତ୍ତେଜନାପୂର୍ଣ୍ଣ ଉତ୍ସାହ, ସେପଟେ ସରକାରଙ୍କ ପକ୍ଷରୁ ସେମିତି ସୁବ୍ୟବସ୍ଥା ଓ ଆୟୋଜନ । ଜଣେ ଓଡ଼ିଆ ଭାବରେ ମୋ ପକ୍ଷରେ ନିଶ୍ଚିତ ଭାବେ ଏହା ଏକ ଚିରସ୍ମରଣୀୟ ଘଟଣା । କିନ୍ତୁ ମୋ ପାଇଁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଅନ୍ୟ ଏକ ସ୍ମୃତି ଥିଲା । ୧୯୩୪ରେ ମୁଁ କାଠଯୋଡ଼ି ହଷ୍ଟେଲ ଛାଡ଼ିଲି । ଏହାପରେ କାଠଯୋଡ଼ି ହଷ୍ଟେଲ ବନ୍ଦ ହୋଇଗଲା ଓ ଏହି ବିରାଟ ସୌଧରେ ଓଡ଼ିଶା ସରକାରଙ୍କର ଦୁଇଟି ବିଭାଗ ଡାଇରେକ୍ଟରେଟର୍ ଅଫ୍ ହେଲ୍‌ଥ ଓ ଡାଇରେକ୍ଟରେଟର୍ ଅଫ୍ ଏଜୁକେସନ କାର୍ଯ୍ୟାଳୟ ଏଠି ସ୍ଥାପିତ ହେବାର ସମସ୍ତ ପ୍ରକାର ଆୟୋଜନ ଚାଲିଲା । ଏହି ଦୃଷ୍ଟିରୁ ମୁଁ ଏବଂ ମୋର ସତୀର୍ଥ ଛାତ୍ରମାନେ ପୂର୍ବତନ ବିହାର ଓଡ଼ିଶାର ବୃହତ୍ତମ ସରକାରୀ ସ୍କୁଲ ଛାତ୍ରାବାସ କାଠଯୋଡ଼ି ହଷ୍ଟେଲର ଥିଲୁ ସର୍ବଶେଷ ଅନ୍ତେବାସୀ । ପରେ ମୁଁ ଦିନେ ସେଠିକି ବୁଲିବାକୁ ଯାଇ ଦେଖିଲି, ଉପର ମହଲାର ଯେଉଁ ସାତନମ୍ବର କୋଠରିରେ ମୁଁ ବରାବର ରହୁଥିଲି, ସେହି କୋଠରିଟି ହେଲ୍‌ଥ ଡାଇରେକ୍ଟରଙ୍କ ଅଫିସ ଟୋହିଇଛି ।

ହଁ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଏପ୍ରିଲ ପହିଲାର ତିନି ଚାରିଦିନ ପୂର୍ବରୁ ଏକ ସ୍ପେଶାଲ ଟ୍ରେନ୍‌ରେ ନୂତନ ଓଡ଼ିଶା ସେକ୍ରେଟେରିଏଟ୍‌ର ସବୁ ଆସବାବ ଓ ରେକର୍ଡ ପତ୍ର ଜଣେ ଓଡ଼ିଆ କର୍ମଚାରୀ ଶ୍ରୀଯୁକ୍ତ ପାଢ଼ୀଙ୍କ ତତ୍ତ୍ୱାବଧାନରେ ପାଟନାରୁ କଟକ ଷ୍ଟେସନରେ ଆସି ପହଞ୍ଚିଲା । ଏହି ଟ୍ରେନ୍‌କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବା ପାଇଁ ଷ୍ଟେସନ୍‌ରେ ବହୁଲୋକ ଉପସ୍ଥିତ ଥିଲେ । ତା'ପରେ ଆସିଲା ପାରଳା ମହାରାଜା ଗଜପତି କୃଷ୍ଣଚନ୍ଦ୍ରଦେବ, ଉତ୍କଳ ଗୌରବ ମଧୁସୂଦନ ଦାସ ଓ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ତଥା ଓଡ଼ିଶାର ବହୁ ବରେଣ୍ୟ ବ୍ୟକ୍ତି ତଥା ଓଡ଼ିଶାର ଜନସାଧାରଣଙ୍କ ସେହି ବହୁ ଈପ୍‌ସିତ ଦିବସ ୧୯୩୬ ଏପ୍ରିଲ ପହିଲା ! ତତ୍କାଳୀନ କଟକ ରେଲଓ୍ୱେ ଷ୍ଟେସନର ପ୍ରଥମ ଶ୍ରେଣୀ ପ୍ରବେଶଦ୍ୱାର ସମ୍ମୁଖସ୍ଥ ଏକ ମୁକ୍ତ ସ୍ଥାନରେ ସୁସଜ୍ଜିତ ଶପଥ ମଣ୍ଡପ ଉପରେ ସ୍ଥାପିତ ହୋଇଥାଏ ଆଲଙ୍କାରିକ ଶୋଭାସମ୍ପନ୍ନ ଏକ ରୌପ୍ୟର ଆସନ । ଯଥାସମୟରେ ଗଭର୍ଣ୍ଣର ସାର୍ ଜନ୍ ହବାକ୍ ସାହେବ ଏକ ସ୍ପେଶାଲ ଆଲୁନ୍‌ର ଅବତରଣ କଲେ । ଷ୍ଟେସନ ପ୍ଲାଟଫର୍ମରେ ଯଥାରୀତି ସରକାରୀ ସମ୍ବର୍ଦ୍ଧନା ଓ ସମ୍ମାନ ପ୍ରଦର୍ଶନ ପରେ

ଲଟ୍‌ସାହେବ ସମ୍ମାନିତ ସରକାରୀ ଅଫିସରମାନଙ୍କ ଗହଣରେ ଶପଥ ମଣ୍ଡପ ଆଡ଼କୁ ଯାତ୍ରା କଲେ । ଏଇଠି ଗୋଟିଏ ଅତି ବିଚିତ୍ର ଘଟଣା ଘଟିଲା ।

### ଏକ ଥାପଡ଼ ପ୍ରହସନ

ଗଭର୍ଣ୍ଣରଙ୍କ ଏ.ଡି.ସି. ମେଜର୍ ଥାପ୍‌ପା ତାଙ୍କ ଗହଣରେ ଚାଲିଥା'ନ୍ତି । ଓଡ଼ିଶା ସରକାରଙ୍କ ଯେଉଁ କର୍ମଚାରୀମାନେ ଗଭର୍ଣ୍ଣରଙ୍କ ସମ୍ବର୍ଦ୍ଧନା ଦାୟିତ୍ୱରେ ରହିଥିଲେ, ସେମାନଙ୍କ ଭିତରୁ ଜଣେ ଅତି ତାମ୍ବୂଳପ୍ରିୟ ବ୍ୟକ୍ତି ଥିଲେ । ସେ ଥିଲେ କମିଶନରଙ୍କ ଅଫିସ୍‌ର ଅଫିସ-ସୁପରିନ୍‌ଟେଣ୍ଡେଣ୍ଟ । ଆମେ ସମସ୍ତେ ଗୋଟିଏ କଲରେ ପାନ ଖାଉ, କିନ୍ତୁ ସେ ଭଦ୍ରଲୋକ ଏକାଥରକେ ଦୁଇକଲରେ ଦୁଇଖଣ୍ଡି ପାନ ଚୋବାନ୍ତି । ଥରକୁ ଥର ଦୁଇ ଦୁଇଖଣ୍ଡ ପାନ ପାଟିକୁ ଯାଉଥିବ, ଦୁଇ କଲରେ ପାନ ଚୋବା ଚାଲିଥିବ । ପାଟିରେ ଦୁଇ କଲରୁ ଗାଢ଼ ଲାଲବର୍ଣ୍ଣ ପାନଛେପ ବହିଆସୁଥିବ ଓ ତାଙ୍କର ଏଇଅବସ୍ଥାରେ କଥାବାର୍ତ୍ତା, ଅଫିସ୍‌କାମ, ସବୁ ଚାଲିଥିବ । ସେଦିନ ପ୍ଲାଟଫର୍ମ ଭିତରୁ ବାହାରକୁ ଆସିବା ସମୟରେ ସେ ଭଦ୍ରବ୍ୟକ୍ତି ଥାପ୍‌ପାଙ୍କ ଦେହକୁ ପ୍ରାୟ ଲାଗି ଲାଗି ଚାଲୁଥା'ନ୍ତି । ପାଟିରୁ ପାନଛେପ ବୋହୁଚି । କି ଅବସ୍ଥାରେ କେଜାଣି ତାଙ୍କ ପାଟିର ପାନଛେପ ଛିଟା ଯାଇ ମେଜର ଥାପ୍‌ପାଙ୍କ ୟୁନିଫର୍ମ ଉପରେ ପଡ଼ିଲା । ସଙ୍ଗେ ସଙ୍ଗେ ମେଜର ଥାପ୍‌ପା ତାଙ୍କ ଜାମା କଲର୍ ଧରି ଦି'ଗାଲରେ ଦି' ଥାପଡ଼ ମାରି ବାହାରକୁ ଯାଇ ମୁହଁ ଧୋଇ ଆସିବାକୁ ତାଙ୍କୁ ନିର୍ଦ୍ଦେଶ ଦେଇ ସେଠୁ ବିଦାୟ କରିଦେଲେ । ଉପସ୍ଥିତ ଅନେକେ ଏହି ଦୃଶ୍ୟ ଦେଖୁଥା'ନ୍ତି, କିନ୍ତୁ କାହାରି କିଛି କହିବାର ନ ଥିଲା କି କରିବାର ନ ଥିଲା ।··· ତା'ପରେ ସେଇ ସୁସଜ୍ଜିତ ମଣ୍ଡପ ଉପରେ ଶପଥ ଉତ୍ସବ କର୍ମ ଶେଷ ହେଲା ଓ ଗଭର୍ଣ୍ଣର କଟକ ରାଜଭବନକୁ ବାହାରିଗଲେ । ପୁରାତନ କାଠଯୋଡ଼ି ହଷ୍ଟେଲରେ ତ ଦୁଇଟି ହେଡସ୍ ଅଫ୍ ଦି ଡିପାର୍ଟମେଣ୍ଟ ସ୍ଥାନ ପାଇଥିଲା—ମୁଖ୍ୟ ସେକ୍ରେଟେରିଏଟ୍ ଅଫିସ ସ୍ଥାପିତ ହେଲା ପୁରୁଣା ଅଦାଲତ ଗୃହରେ । ସେତେବେଳେ ସେକ୍ରେଟେରିଏଟ୍‌ରେ ହୋମ୍, ଫାଇନାନ୍‌ସ, ଏଜୁକେସନ, ହେଲ୍‌ଥ, ପବ୍ଲିକ୍ ଓ୍ୱାର୍କସ, ଓ.ଏଲ୍.ଏସ୍.ଜି. ପ୍ରଭୃତି ମାତ୍ର କେତୋଟି ଡିପାର୍ଟମେଣ୍ଟ୍ ଥିଲା ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ତ ଗଠିତ ହେଲା । କିନ୍ତୁ ସେକ୍ରେଟେରିଏଟ୍ ? ସ୍ୱତନ୍ତ୍ର ସେକ୍ରେଟେରିଏଟ୍‌ର ଚନ୍ଦ୍ରବର୍ଣ୍ଣ ତ ଆମେ ପାଇଲୁ ନାହିଁ । ଏକଥା କହିବା ଅର୍ଥ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସହିତ ଯେଉଁ ସ୍ୱତନ୍ତ୍ର ସେକ୍ରେଟେରିଏଟ୍ ପାଟନାରୁ କଟକକୁ ଆସିଲା, ସେ ସେକ୍ରେଟେରିଏଟ୍‌କୁ ଏକ ମିଶ୍ରିତ ସେକ୍ରେଟେରିଏଟ୍ କୁହାଯାଇପାରେ । କାରଣ ଓଡ଼ିଶା ସେକ୍ରେଟେରିଏଟ୍‌ରେ ମୁଖ୍ୟତଃ ଓଡ଼ିଆ

କର୍ମଚାରୀମାନେ ନ ଆସି ପ୍ରାୟ ସମତୁଲ ଭାବରେ ତିନି ପ୍ରଦେଶର କର୍ମଚାରୀ ଆସିଥିଲେ । ଯଥା—ଓଡ଼ିଆ, ବଙ୍ଗାଳୀ ଓ ତେଲିଙ୍ଗୀୟ । କଥାବାର୍ତ୍ତା, ଚାଲିଚଳଣ ଓ ବେଶପୋଷାକରେ ଏକ ବିଚିତ୍ର ସମାବେଶ । ସେତେବେଳେ ସେକ୍ରେଟେରିଏଟ୍‌ର କର୍ମଚାରୀମାନେ କେହି ସୁଟ୍‌ପ୍ୟାଣ୍ଟ ପିନ୍ଧୁ ନ ଥିଲେ । ଓଡ଼ିଆ କର୍ମଚାରୀମାନଙ୍କର ପୋଷାକ ଥିଲା ମୁଖ୍ୟତଃ ଧୋତି ଉପରେ ସାର୍ଟ ଓ ସାର୍ଟ ଉପରେ ଓପନ୍‌ବ୍ରେଷ୍ଟ କୋଟ ଓ ପାଦରେ ବୁଟ୍ ଜୋତା । ବଙ୍ଗାଳୀମାନଙ୍କର ଥିଲା ମୁଖ୍ୟତଃ ପିନ୍ ପିନ୍ ଧୋତି ଉପରେ ପଞ୍ଜାବି ଓ ପାଦରେ ସମ୍ପୁ । ତେଲିଙ୍ଗୀୟମାନଙ୍କର ବେଶ ଥିଲା ଗୋଟିଏ ସାଧା ଧୋତିର ଅର୍ଦ୍ଧେକ ଅଂଶକୁ ଦୁଇଭାଗ କରି ଅଣ୍ଟାରେ ବେଢ଼ାଇଦେବା ଓ ତା ଉପରେ ହାଫ୍‌ସାର୍ଟ, ଗଳାରେ ଟାଇ ସହିତ ଓପନ୍‌ବ୍ରେଷ୍ଟ କୋଟ୍ ଆଉ ସବୁଠୁ ଦେଖିବାର କଥା ଥିଲା ସେମାନଙ୍କର ମଥାରେ ତିଳକ ଓ ଚନ୍ଦନର ରେଖା ଓ ଖାଲି ପାଦ । ତା ଅର୍ଥ ପାଦରେ ପାଦୁକା ନ ଥିଲା । ସେତେବେଳେ ତ ଅଫିସ କାର୍ଯ୍ୟରେ "ଫାଙ୍କିଦେବା" ଶବ୍ଦଟିର ଆଦୌ ପ୍ରବେଶ ହୋଇନଥିଲା । ଦଶଟା ପରେ ଅଫିସ୍ ଖୋଲିବା ସଙ୍ଗେ ସଙ୍ଗେ ସମସ୍ତେ କର୍ମତତ୍ପର—ସମସ୍ତେ ବ୍ୟସ୍ତ—ବ୍ୟଗ୍ର । ଏଇ ବ୍ୟଗ୍ରତା ଓ ଆଡଯାତ ମେଳରେ କର୍ମଚାରୀମାନଙ୍କ ତିନି ଜାତି ବେଶପୋଷାକ କବିଶେଖର ଚନ୍ଦ୍ରାନନ୍ଦ ଚମ୍ପୂର "ବ" ଅକ୍ଷର ଗୀତ "ବିଚିତ୍ର ବେଶ ମଞ୍ଜୁଳା ରେ ବାଳା, ବି'ବିଧ ଚାତୁରୀ ଶୀଳା" ପରି ଏଇ ତିନିଭାଷୀ କର୍ମଚାରୀଙ୍କ ତ୍ରିବିଧ ବେଶ ସମାରୋହରେ ଏକ ଆମୋଦପୂର୍ଣ୍ଣ ପରିବେଶ ସୃଷ୍ଟି କରିପାରିଥିଲା ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବାର ନିଷ୍ପତ୍ତି ନିଆଗଲା ପରେ ପ୍ରଶ୍ନ ଉଠିଲା—ଏଇ ନୂତନ ପ୍ରଦେଶର ସ୍ଥାୟୀ ରାଜଧାନୀ କେଉଁଠି ହେବ ? କଟକ ? ପୁରୁଣା ସହରଟିକୁ ସମ୍ପୂର୍ଣ୍ଣ ରୂପେ ଭାଙ୍ଗି ମାଟିରେ ମିଶାଇ ଦେଲେ କେଜାଣି ବା ଏହା ସମ୍ଭବ ହେବ ! ··ପୁରୀ ? ନା ଏଥିରେ ବଡ଼ଦାଣ୍ଡର ଅମର୍ଯ୍ୟାଦା ହେବ । ଏତିକିବେଳେ କେଉଁ ସୂତ୍ରରୁ କେଜାଣି, କଟକ ସହରରେ ଏକ ସମ୍ବାଦ ପ୍ରଚାରିତ ହୋଇଗଲା ଯେ, ସରକାର ସ୍ଥିର କରିଚନ୍ତି "ରଙ୍ଗେଇଲୁଣ୍ଡା" ହେବ ଆମ୍ଭ ନୂତନ ପ୍ରଦେଶର ରାଜଧାନୀ । ବଜ୍ରପାତ । ପଥଚାରୀ ଏକ ସାଧାରଣ ପଥିକ ଠାରୁ ଆରମ୍ଭ କରି ଓକିଲ, ଡାକ୍ତର, ପ୍ରଫେସର ଓ ହାକିମ ହୁକୁମା ପର୍ଯ୍ୟନ୍ତ ଯେଉଁ ନାମ ସହିତ ପରିଚିତ ନୁହଁନ୍ତି, ସେଇ ରଙ୍ଗେଇଲୁଣ୍ଡା ହେବ ଓଡ଼ିଶାର ରାଜଧାନୀ । କ୍ରମେ ଜଣାପଡ଼ିଲା ବ୍ରହ୍ମପୁର ଅଞ୍ଚଳର ଏକ ଜନବସତି-ହୀନ ପରିତ୍ୟକ୍ତ ପ୍ରାନ୍ତର ହେଉଚି ଏଇ ରଙ୍ଗେଇଲୁଣ୍ଡା ! ତା'ପରେ ସମସ୍ତେ ଚାଲିଲେ ପ୍ରବୀଣ କଂଗ୍ରେସ ନେତା ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ପାଖକୁ । (ଶ୍ରୀଯୁକ୍ତ ଦାସ ସାଧାରଣରେ ସ୍ୱାମୀଜୀ ନାମରେ ପରିଚିତ) । ଆମେ ଯାଇ ଦେଖିଲୁ, ସ୍ୱାମିଜୀ ଏକାବେଳକେ ଭାଙ୍ଗିପଡ଼ିଚନ୍ତି—ଆଖି

ଛଳ ଛଳ । କମ୍ପିତ କଣ୍ଠରେ କହିଲେ—ହୁଁ ! ରଙ୍ଗେଇଲୁଣ୍ଡା ! କେବେ ଇତିହାସ କି ଭୂଗୋଳରେ ପଢ଼ିଚି କି ଜାଣିଚି ଏଇ ରଙ୍ଗେଇଲୁଣ୍ଡାର ସ୍ଥିତି ଓ ଅବସ୍ଥିତି !! ଏହିପରି ଏକ ଘଟଣାରୁ ହିଁ ବଙ୍ଗ ଭଙ୍ଗ ଆନ୍ଦୋଳନର ସୃଷ୍ଟି ହୋଇଥିଲା । ··· ଆମମାନଙ୍କୁ ଲକ୍ଷ୍ୟ କରି କହିଲେ—ବର୍ତ୍ତମାନ ତୁମମାନଙ୍କୁ ସେଇପରି ଏକ ଆନ୍ଦୋଳନ ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ । କିନ୍ତୁ ନା, କୌଣସି ଆନ୍ଦୋଳନ ଦରକାର ପଡ଼ିଲା ନାହିଁ । ଯେମିତି ଆକସ୍ମିକ ବଜ୍ରପାତ ଭାବରେ ଏ ସମ୍ବାଦଟି ଆସିଥିଲା, ସେମିତି ହିଁ ଦୁଇଦିନ ପରେ ଆକାଶର କେଉଁ କୋଣରେ ଏକ କ୍ଷୁଦ୍ର ବିଜୁଳିରେଖା ପରି କୁଆଡ଼େ ଉଭେଇଗଲା । କଟକ ହିଁ ହେଲା ନୂତନ ଓଡ଼ିଶା ପ୍ରଦେଶର ସାମୟିକ ରାଜଧାନୀ । ଏହାପରେ ଯେତେବେଳେ ଡକ୍ଟର ମହତାବ ଓଡ଼ିଶାର ପ୍ରିମିୟର ବା ପ୍ରଧାନମନ୍ତ୍ରୀ ହେଲେ ସେତେବେଳେ ସେ କଟକ ପୁରୁଣା ଅଦାଲତରେ ପ୍ରତିଷ୍ଠିତ ହୋଇଥିବା ତାଙ୍କ ଅଫିସରେ ଏକ ସାମ୍ବାଦିକ ସମ୍ମିଳନୀରେ ଓଡ଼ିଶାର ନୂତନ ରାଜଧାନୀ କଥା ଘୋଷଣା କଲେ । ସେତେବେଳେ ମୁଁ ଏକ ସମ୍ବାଦପତ୍ର ସହିତ କିଛିକାଳ ପାଇଁ ଜଡ଼ିତ ହୋଇପଡ଼ିଥିଲି । ସେଇ ସମ୍ବାଦପତ୍ର ପକ୍ଷରୁ ଜଣେ ସାମ୍ବାଦିକ ଭାବରେ ମୁଁ ଶ୍ରୀଯୁକ୍ତ ମହତାବଙ୍କ ଏଇ ସାମ୍ବାଦିକ ସମ୍ମିଳନୀରେ ଯୋଗ ଦେଇଥିଲି । ସମ୍ମିଳନୀ କକ୍ଷ ଭରପୂର । ପ୍ରିମିୟର ଆସିଲେ—'ଡଗର'ର ସମ୍ପାଦକ ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କୁ ଡାକି ତାଙ୍କ ପାଖରେ ବସାଇଲେ ।

## ସ୍ୱତନ୍ତ୍ର ଓଡ଼ିଶାର ନୂତନ ରାଜଧାନୀ

ଏଇ ସାମ୍ବାଦିକ ସମ୍ମିଳନୀରେ ନୂତନ ରାଜଧାନୀ ପ୍ରତିଷ୍ଠା କଥା ଘୋଷଣା କରାଯିବ । ଏଇ ଉତ୍କଣ୍ଠାର ଏକ ପ୍ରଚଣ୍ଡ ସ୍ପର୍ଶ ଅନୁଭୂତ ହେଉଥାଏ । କିଛି ପ୍ରାରମ୍ଭିକ ସୂଚନା ପରେ ଡକ୍ଟର ମହତାବ ଘୋଷଣା କଲେ—ବହୁ ବିଗ୍ଭର ଆଲୋଚନା ପରେ ମୋର ସରକାର ସ୍ଥିର କରିଚନ୍ତି ଯେ, ନୂତନ ରାଜଧାନୀ ଭୁବନେଶ୍ୱରରେ ସ୍ଥାପନ କରାଯିବ । ··ଏଇ ଘୋଷଣାରେ ଉପସ୍ଥିତ ସାମ୍ବାଦିକମାନଙ୍କ ଓଷ୍ଠରେ ଗୁଞ୍ଜରଣ ଖେଳିଗଲା । ମନ୍ଦିରମାଳୀ ଭୁବନେଶ୍ୱରରେ ରାଜଧାନୀ ପ୍ରତିଷ୍ଠା । ଭୁବନେଶ୍ୱରର ଆୟତନ ଯାହା, ତାର ବହୁ ଗୁଣ ଆୟତନର ଜମି ବା ଭୂମି ରାଜଧାନୀ ପାଇଁ ଲୋଡ଼ା । ଏଇ ପ୍ରଶ୍ନ ଯେତେବେଳେ ମହତାବଙ୍କ ନିକଟରେ ଉପସ୍ଥାପିତ କରାଗଲା, ବିଚକ୍ଷଣ କୂଟନୀତିଜ୍ଞ ତାଙ୍କ ସ୍ୱଭାବସିଦ୍ଧ ସ୍ଥିର ଅବିଚଳିତ ତଥା ସ୍ମିତ ବଦନରେ ଘୋଷଣା କଲେ—ନା, ପ୍ରଭୁ ଲିଙ୍ଗରାଜଙ୍କ ପୀଠସ୍ଥଳୀ ପୁରୁଣା ଭୁବନେଶ୍ୱର ନୁହେଁ, ରେଲଲାଇନ୍ ସେ ପଟର ଯେଉଁ ବିସ୍ତୀର୍ଣ୍ଣ ମାଳ ଅଞ୍ଚଳଟି ରହିଚି, ନୂତନ ରାଜଧାନୀ ସେଇଠାରେ ନିର୍ମାଣ କରାଯିବ । ଜଳ ଆସିବ କୁଆଖାଇ ନଦୀ ଗର୍ଭରୁ ।

ଇଞ୍ଜିନିୟର, ଆର୍‌କିଟେକ୍ଟ, ସମସ୍ତେ ଏଥିରେ ଏକମତ ହୋଇଚନ୍ତି । ଆସନ୍ତା ଆସେମ୍ବ୍ଲି ଅଧିବେଶନରେ ଏଥିପାଇଁ ଏକ ବିଲ୍ ଗୃହୀତ ହେବ । ତାହାହିଁ ହେଲା—ଉତ୍କଳର ମହତାବ ହେଲେ ନବଗଠିତ ଓଡ଼ିଶା ପ୍ରଦେଶର ନୂତନ ରାଜଧାନୀର ପ୍ରତିଷ୍ଠାତା । ଏଇ ସନ୍ଧାନ୍ତରେ ଶ୍ରୀଯୁକ୍ତ ମହତାବ ସୂଚନା ଦେଇଥିଲେ ଯେ ଦିନେ କଟକ ଓ ଭୁବନେଶ୍ୱର ଦୁଇଟି ଟୁଇନ୍‌ସିଟି ହୋଇଯିବେ ଓ ଏ ଦୁଇ ସହରକୁ ଟ୍ରାମ୍ ଲାଇନ୍ ଦ୍ୱାରା ସଂଯୁକ୍ତ କରାଯିବ । ବର୍ତ୍ତମାନ ଦେଖାଯାଉଚି ତାଙ୍କର ଏଇ ଭବିଷ୍ୟତ ଉକ୍ତି କ୍ରମେ ଏକ ସତ୍ୟରେ ପରିଣତ ହେବାର ଚରମ ସୀମା ସ୍ପର୍ଶ କଲାଣି ।

## ପ୍ରଥମ ପ୍ରାଦେଶିକ ନିର୍ବାଚନ ଓ ପାରଳା ଦେଇ

ପ୍ରଦେଶ ଗଠିତ ହେଲା । ଶାସନ ଚାଲିଲା । ଭାରତ ସରକାର ନିଷ୍ପତ୍ତି କଲେ ଯେ, ସମସ୍ତ ବ୍ରିଟିଶ-ଶାସିତ ପ୍ରଦେଶମାନଙ୍କରେ ଊଣେଇଶିଶହ ଛତିଶ ମସିହା ଡିସେମ୍ବର ମାସରେ ପ୍ରାଦେଶିକ ନିର୍ବାଚନ ହେବ । ଛ'ଗୋଟି ଜିଲ୍ଲାକୁ ନେଇ ଗଠିତ ସେତେବେଳେ ଓଡ଼ିଶା ପ୍ରଦେଶ ଆସେମ୍ବ୍ଲିର ସ୍ଥାନ ସଂଖ୍ୟା ଥିଲା ଷାଠିଏ । ଏଥିରୁ ଦୁଇଗୋଟି ନିର୍ବାଚନ ମଣ୍ଡଳୀ ମହିଳାମାନଙ୍କ ପାଇଁ ସଂରକ୍ଷିତ ଥିଲା—ଗୋଟିଏ କଟକ ସହର ଅଞ୍ଚଳ ଓ ଅନ୍ୟଟି ବ୍ରହ୍ମପୁର ସହର ଅଞ୍ଚଳ । ଏଥିରେ କେବଳ ମହିଳା ଭୋଟର୍‌ମାନେ ଭୋଟ୍ ଦେବେ ।

ନିର୍ବାଚନ ପ୍ରକ୍ରିୟା ଆରମ୍ଭ ହୋଇଗଲା । ସେତେବେଳେ ପ୍ରକୃତ ରାଜନୈତିକ ଦଳ ହେଉଚି ଏକମାତ୍ର ଭାରତୀୟ ଜାତୀୟ କଂଗ୍ରେସ । କମ୍ୟୁନିଷ୍ଟ ବା ସାମ୍ୟବାଦୀ ଦଳର ମାତ୍ର ଅଭ୍ୟୁଦୟ ହୋଇଚି ଓ ମୁସଲିମ୍‌ଲିଗ୍ ସାମାନ୍ୟ ମଥା ଟେକିଚି । କିନ୍ତୁ ଓଡ଼ିଶାରେ ପ୍ରାଦେଶିକ ଦଳଭାବରେ ଏଇ ନିର୍ବାଚନ ପାଇଁ ପାରଳା ମହାରାଜାଙ୍କ ଦ୍ୱାରା ଯଥାସମ୍ଭବ ଏକ ଅଣରାଜନୈତିକ ଶକ୍ତିଶାଳୀ ଦଳ ଗଠିତ ହୋଇଥିଲା ଓ ସେତେବେଳେ ସାଧାରଣରେ ଆଲୋଚିତ ହେଉଥିଲା ଯେ, ଏଇ ଦଳ ପାଇଁ ଥିଲା ବ୍ରିଟିଶ ଶାସନର ଆଶୀର୍ବାଦ ଓ ବେସରକାରୀ ଭାବେ ସ୍ଥାନୀୟ ସରକାରଙ୍କ ମୁକ୍ତ ସହଯୋଗ ଓ ସମର୍ଥନ । ଏହି ପୃଷ୍ଠଭୂମିରେ ନିର୍ବାଚନ ପ୍ରକ୍ରିୟା ଆରମ୍ଭ ହେଲା ।

ଦୁଇଗୋଟି ମହିଳା ନିର୍ବାଚନ ମଣ୍ଡଳୀରୁ ବ୍ରହ୍ମପୁର ସହରରୁ କଂଗ୍ରେସ ପ୍ରାର୍ଥୀଭାବେ ପୂର୍ବତନ ରାଷ୍ଟ୍ରପତି ସ୍ୱର୍ଗତ ଭି.ଭି. ଗିରିଙ୍କ ଭଗିନୀ ଲକ୍ଷ୍ମୀବାଈ ଅପ୍ରତିଦ୍ୱନ୍ଦ୍ୱୀ ଭାବେ ନିର୍ବାଚିତା ହେଲେ । ପ୍ରତିଦ୍ୱନ୍ଦ୍ୱିତା ହେଲା କଟକ ସହର ପାଇଁ । କଂଗ୍ରେସ

ଦଳର ପ୍ରାର୍ଥୀ ହେଲେ କେବଳ ଓଡ଼ିଶା କାହିଁକି, ସମସ୍ତ ଭାରତବର୍ଷର ସୁପ୍ରତିଷ୍ଠିତା ସୁଲେଖିକା ଓ ସ୍ୱନାମଧନ୍ୟା ନେତ୍ରୀ ଶ୍ରୀମତୀ ସରଳାଦେବୀ— ସେ ପାଞ୍ଚଟି ଭାଷା ଯଥା ଓଡ଼ିଆ, ବଙ୍ଗଳା, ହିନ୍ଦୀ, ଇଂଲିଶ ଓ ଉର୍ଦ୍ଦୁ—ଏଇ ପାଞ୍ଚଟି ଭାଷାରେ ଅନର୍ଗଳ ଭାଷଣ ଦେଇ ପାରୁଥିଲେ । ଏଇ ସମ୍ପର୍କରେ ଗୋଟିଏ ଅନୁଭୂତିର ଉପସ୍ଥାପନା ଏଠି ନ କରି ରହିହେଉନାହିଁ । ସେଦିନ ଅପରାହ୍ଣରେ କଟକ ଟାଉନହଲ୍ ସଂଲଗ୍ନ ମୁକ୍ତ ସ୍ଥାନରେ ଏକ ସୁସଜ୍ଜିତ ସଭାମଣ୍ଡପରେ କୌଣସି ଏକ ସର୍ବଭାରତୀୟ ମହିଳା ପ୍ରତିଷ୍ଠାନର ଏକ ସାଧାରଣ ସଭା ଅନୁଷ୍ଠିତ ହେଉଥିଲା । ସଭାପତିର ଆସନ ଅଳଂକୃତ କରିଥା'ନ୍ତି ମହାରାଣୀ ସୁନୀତି ଦେବୀ— କଲିକତା ବ୍ରାହ୍ମ ସମାଜର ପୁରୋଧା କେଶବ ସେନ୍‌ଙ୍କ କନ୍ୟା ଓ ପ୍ରାତଃସ୍ମରଣୀୟ ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ରଭଞ୍ଜଙ୍କ ଦ୍ୱିତୀୟା ପତ୍ନୀ । ସଭାକାର୍ଯ୍ୟ ଆରମ୍ଭ ହୋଇଗଲା । ଏଇଠି ଆମେ ଅନୁଭବ କଲୁଯେ ଏପରି ଏକ ସର୍ବଭାରତୀୟ ମହିଳା କଂଗ୍ରେସରେ ସରଳାଦେବୀ ଅନୁପସ୍ଥିତା ଅଛନ୍ତି । ସଭାରେ ଗୁଞ୍ଜରଣ ଖେଳିଗଲା । କେହିଜଣେ ସଭାପତିଙ୍କୁ ଯାଇ ଏକଥା ଜଣାଇଲେ ।···ଜଣାପଡ଼ିଲା ଯେ କୌଣସିଠାରେ କିଛି ବିଭ୍ରାଟ ଘଟିବା ଫଳରେ ଦେବୀଙ୍କ ପାଖରେ ନିମନ୍ତ୍ରଣ ପତ୍ରଟି ପହଞ୍ଚି ପାରିନି । ତୁରନ୍ତ ଏ ଭୁଲ୍‌ଟିକୁ ସୁଧାରି ନିଆଗଲା ଓ ଦେବୀ ଆସି ସଭା-ମଣ୍ଡପରେ ଆସନ ଗ୍ରହଣ କଲେ । ଯଥା ସମୟରେ ଦେବୀ ତାଙ୍କ ଭାଷଣ ଆରମ୍ଭ କରି କହିଲେ—ଏଇ ସର୍ବଭାରତୀୟ ମହିଳା ସମାବେଶର ମର୍ଯ୍ୟାଦା ରକ୍ଷାକରି ମୁଁ ଅନ୍ତତଃ ହିନ୍ଦୀ, ଉର୍ଦ୍ଦୁ ଓ ଇଂରାଜୀ ଏଇ ତିନୋଟି ଭାଷାରେ ବକ୍ତୃତା ଦେଇ-ପାରିବି । କିନ୍ତୁ ମୁଁ ସେଥିରୁ ବିରତ ରହୁଚି । ଓଡ଼ିଶା ତଥା ଓଡ଼ିଆମାନଙ୍କର ସୌଭାଗ୍ୟ ଯେ, ଏ ଯୁଗର ଜଣେ ମହୀୟସୀ ମହିଳା ମହାରାଣୀ ସୁନୀତି ଦେବୀ ଓଡ଼ିଶା ଆସିଚନ୍ତି—ଏଇ କଟକ ସହରକୁ ଆସିଚନ୍ତି । ସେ ଆମର ପୂଜ୍ୟା ଅତିଥି । ତାଙ୍କର ସମ୍ମାନ ରକ୍ଷାକରି ମୁଁ ତାଙ୍କର ମାତୃଭାଷା ବଙ୍ଗଳା ଭାଷାରେ ମୋର ବକ୍ତବ୍ୟ ଆରମ୍ଭ କରୁଚି ।···ଅତ୍ୟନ୍ତ ସାବଲୀଳ ଅଥଚ ବଙ୍ଗଳା ଭାଷାରେ ଅତି ଓଜସ୍ୱିନୀ ବକ୍ତୃତା ଦେଲାପରେ ବିପୁଳ କରତାଳି ମଧ୍ୟରେ ସେ ହିନ୍ଦୀଭାଷାରେ ତାଙ୍କର ବକ୍ତବ୍ୟ ଶେଷ କଲେ । ଦେବୀ ଜଣେ ସୁଲେଖିକା ମଧ୍ୟ ଥିଲେ । ତାଙ୍କର "ମହାଭାରତରେ ନାରୀର ସ୍ଥାନ" ପ୍ରବନ୍ଧମାଳାଟି ସୁଧୀ ମହଲରେ ବହୁଚର୍ଚ୍ଚିତ ଓ ବହୁ ପ୍ରଶଂସିତ । ଏଇ ପ୍ରବନ୍ଧଗୁଡ଼ିକର ଲିଖନ-ପ୍ରକ୍ରିୟାରେ ମୁଁ ତାଙ୍କ ସହକାରୀ ଭାବରେ କାର୍ଯ୍ୟ କରିବାର ସୌଭାଗ୍ୟଲାଭ କରିଥିଲି ।···ଏଇ ସରଳା ଦେବୀଙ୍କ ସହିତ ନିର୍ବାଚନ ପ୍ରତିଦ୍ୱନ୍ଦ୍ୱିତା କ୍ଷେତ୍ରରେ ଅବତୀର୍ଣ୍ଣା ହେଲେ ଜଣେ ସମ୍ଭ୍ରାନ୍ତ ବଂଶୀୟା ମହିଳା ଶ୍ରୀମତୀ ଲତିକା ଦେବୀ । ଦୁହିଁଙ୍କ ମଧ୍ୟରୁ ଜଣେ ହେଲେ

ବଧୂବେଶରେ ଶ୍ୱଶୁର ଗୃହରେ ପାଦ ଥୋଇବା ପରଦିନଠୁଁ ଦେଶପାଇଁ ସ୍ୱାଧୀନତା ଯୁଦ୍ଧରେ ଝାଂପ ଓ କାରାବରଣ ଆଦି ଅସୀମ ତ୍ୟାଗର ପ୍ରତିମୂର୍ତ୍ତି । ତାଙ୍କର ଯିଏ ପ୍ରତିଦ୍ୱନ୍ଦ୍ୱିନୀ, ସେ ହେଲେ ଧନ, ମାନ ଓ ପ୍ରତିପତ୍ତିର ଏକ ପ୍ରତିଭୂ ।

## କଟକ ନିର୍ବାଚନ ପ୍ରଚାର ସମୟରେ ନେହେରୁ ଓ ସରୋଜିନୀ ନାଇଡୁ

ନିର୍ବାଚନ ପ୍ରଚାର କାର୍ଯ୍ୟ ଆରମ୍ଭ ହେଲା । ମୁଁ କେବେ କୌଣସି ରାଜନୈତିକ ଦଳର କର୍ମୀ ବା ସଭ୍ୟ ନ ଥିଲି । କିନ୍ତୁ ସରଳା ଦେବୀଙ୍କ ପ୍ରତି ମୋର ପ୍ରଗାଢ଼ ଶ୍ରଦ୍ଧା ଓ ସମ୍ମାନ ତଥା ତାଙ୍କ ପରିବାର ସହିତ ମୋର ସ୍ନେହ ସୌହାର୍ଦ୍ଦ୍ୟ-ପୂର୍ଣ୍ଣ ବ୍ୟକ୍ତିଗତ ସମ୍ପର୍କ ଯୋଗୁଁ ମୁଁ ଏ ନିର୍ବାଚନରେ ସ୍ୱତଃପ୍ରବୃତ୍ତ ହୋଇ ତାଙ୍କର ଜଣେ ଅତି ସକ୍ରିୟ ଓ ମୁଖ୍ୟ କର୍ମୀର ଦାୟିତ୍ୱ ଗ୍ରହଣ କଲି । ସରଳାଦେବୀ ଆମ-ମାନଙ୍କ ନିକଟରେ ସାଧାରଣତଃ 'ଦେଈ' ନାମରେ ପରିଚିତା । ଦେଈଙ୍କ ନିର୍ବାଚନ ପାଇଁ କର୍ମୀମାନଙ୍କ ବ୍ୟତୀତ ମୁଖ୍ୟ ସଂଚାଳକ ହେଲେ ବାରିଷ୍ଟର ରଣଜିତ୍ ମହାନ୍ତିଙ୍କ ପିତୃବ୍ୟ (ଦାଦା) ସ୍ୱର୍ଗତ ପୂର୍ଣ୍ଣଚନ୍ଦ୍ର ମହାନ୍ତି । ଏକାନ୍ତ ନିଷ୍ଠା, ଆନ୍ତରିକତା ଓ ଉତ୍ସାହର ସହିତ ପ୍ରଚାର କାର୍ଯ୍ୟ ଆରମ୍ଭ ହେଲା । ବିନା ପାରିଶ୍ରମିକରେ କର୍ମୀମାନେ ଅବିଶ୍ରାନ୍ତ ପରିଶ୍ରମ କରିଚାଲିଥାନ୍ତି । ପ୍ରଚାରକାର୍ଯ୍ୟ ଯେତିକି ଯେତିକି ଅଗ୍ରସର ହେଉଥାଏ, କଟକ ସହର ଗଗନପବନରେ ଗୁଞ୍ଜରଣ ସହିତ ଅଭିଯୋଗ ଆଦି ଖେଳି ଯାଉଥାଏ ଯେ, ବର୍ତ୍ତମାନଙ୍କରେ ଭୋଟ୍ ବିନିମୟରେ ଅର୍ଥର ବିନିଯୋଗ ଚାଲିଚି । ଏଣେ ମୁସଲମାନ ଭୋଟରମାନେ ଜିନ୍ନାଙ୍କ ପରାମର୍ଶରେ ମୁସଲିମ୍ ଲିଗ୍‌ର ପ୍ରଭାବ ଏଡ଼ାଇବା ସହଜ କଥା ନୁହେଁ । ଏଭଳି ଗୁଜବ ଶୁଣାଗଲା ଯେ, କଂଗ୍ରେସ ହୁଏତ ମୁସଲିମ୍ ଭୋଟ୍ ଆଦୌ ପାଇ ନ ପାରେ । କଂଗ୍ରେସ କ୍ୟାମ୍ପ ଏଥିରେ ବିଚଳିତ ହୋଇପାରିଥା'ନ୍ତି ନିଶ୍ଚୟ, କିନ୍ତୁ କୌଣସି କ୍ଷେତ୍ରରେ ନିରୁତ୍ସାହ ହୋଇ-ନଥାନ୍ତି । ତାଙ୍କର ଏଇ ଆତ୍ମବିଶ୍ୱାସ ଥିଲା ଯେ, ଦେଶର ସ୍ୱାଧୀନତା ସଂଗ୍ରାମରେ ଯିଏ ନିଜକୁ ଉତ୍ସର୍ଗ କରି ଦେଇଚି, ଦେଶବାସୀ ତା'ର ମର୍ଯ୍ୟାଦା ନିଶ୍ଚୟ ରକ୍ଷା କରିବେ ।··· ଉଣେଇଶିଶହଛତିଶ ମସିହାରେ ପଣ୍ଡିତ ଜବାହାରଲାଲ୍ ନେହେରୁ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ଥା'ନ୍ତି । ଏତିକିବେଳେ ଅତି ଅପ୍ରତ୍ୟାଶିତ ଭାବେ ସମ୍ବାଦ ଆସି ପହଞ୍ଚିଲା ଯେ, ପଣ୍ଡିତ ଜବାହାରଲାଲ ଦେଈଙ୍କ ନିର୍ବାଚନ ପ୍ରଚାର ପାଇଁ କଟକ ଆସୁଚନ୍ତି । କଂଗ୍ରେସ ମହଲରେ ଆନନ୍ଦର ଉତ୍ସ ଛୁଟିଗଲା । ଆଉ ମୁଁ ? ମୋ ଜୀବନରେ ଏକ ସ୍ୱପ୍ନ ଥିଲା ଯେ, କେବେ ମୁଁ ପଣ୍ଡିତ ନେହେରୁଙ୍କୁ ଭେଟିବି ! ମୋ ସ୍ୱପ୍ନ ଯେ ଏତେ ଚଞ୍ଚଳ ସାକାର ହେବାକୁ ଯାଉଚି, ଏହା ଧ୍ରୁବ

ନିଶ୍ଚିତ ଜାଣି ସୁଦ୍ଧା ମୋର ଆତ୍ମବିଶ୍ୱାସ ହେଉ ନ ଥାଏ । ମାତ୍ର ଯେତେବେଳେ ପ୍ରକୃତରେ ସଭା ପାଇଁ ପ୍ରସ୍ତୁତ ଚାଲିଲା, ସେତେବେଳେ ମୋ ମନରେ ଏକ ଉଦ୍‌ଭଟ ଚିନ୍ତା ଜାଗିଲା ଯେ, ମୁଁ ବର୍ତ୍ତମାନ ଆଉ କିଛି ନ କରି ସେଇ ଦିବସଟିର ଅପେକ୍ଷାରେ କେବଳ ବସି ରହିବି । ମାତ୍ର ପର ମୁହୂର୍ତ୍ତରେ ମୁଁ ନିଜକୁ ନିଜେ ସଂଶୋଧନ କରି ଭାବିଲି—ଏ ନିର୍ବାଚନ ପ୍ରକ୍ରିୟାର ଜଣେ କର୍ମୀ ହୋଇ ମୁଁ ଏ କ'ଣ କରୁଛି ? ନିଜେ କଂଗ୍ରେସ ସଭାପତି ଯେତେବେଳେ ଆସୁଛନ୍ତି, ସେଇ ପୃଷ୍ଠଭୂମିରେ ଆମର ସମସ୍ତ ପ୍ରାରମ୍ଭିକ ବ୍ୟବସ୍ଥା ସମାହିତ ହେବ । ତେବେ ଗୋଟିଏ କଥା ମୋ ମନରୁ ମୁଁ ପୋଛି ଦେଇ ପାରୁ ନ ଥାଏ—ସିଏ ତ ଆସିବେ, ମୁଁ କିପରି ଭାବରେ କେଉଁଠି ରହି ତାଙ୍କର ଦର୍ଶନ ଲାଭ କରିବି ! ମ୍ୟୁନିସିପାଲିଟି ଅଫିସ ପଛପଟ ପଡ଼ିଆ । ସେଇଠି ସଭାମଣ୍ଡପ ପ୍ରସ୍ତୁତ ହେଲା । ସେତେବେଳେ ଶହୀଦଭବନ ନିର୍ମିତ ହୋଇ ନଥାଏ । ସଭାମଣ୍ଡପ ନିର୍ମାଣ କର୍ମରେ ମୁଁ ସହଯୋଗ କରୁଥାଏ । ଶୀତଦିନର ଅପରାହ୍ଣ—ପଣ୍ଡିତ୍‌ଜୀ ନେତୃବର୍ଗଙ୍କ ଗହଣରେ ଆସି ସଭାମଣ୍ଡପ ଅଳଂକୃତ କଲେ । ତାଙ୍କୁ ମୁଁ ଦେଖିଲି, ମୁଖରେ ସେଇ ଅମୃତମୟ ହସ । ମୁଁ ସଭାମଣ୍ଡପକୁ ଲାଗି ଗୋଟିଏ ସ୍ଥାନ ବାଛିନେଇ ସେଠି ବସିଲି । ମ୍ୟୁନିସିପାଲିଟି ଅଫିସ ପଛପଟରୁ ପୂର୍ବଦିଗକୁ ବିରାଟ ମୁକ୍ତପ୍ରାନ୍ତରଟି ଜନସମାଗମରେ ଉଚ୍ଛୁଳି ଉଠୁଥାଏ । ଓଡ଼ିଶା କଂଗ୍ରେସ ସଭାପତିଙ୍କ ଅନୁରୋଧକ୍ରମେ ନେହେରୁ ଭାଷଣ ଆରମ୍ଭ କଲେ । ହିନ୍ଦୀରେ ଭାଷଣ ଦେଉଥା'ନ୍ତି । ବେଶ୍ କିଛି ସମୟ ଭାଷଣ ଚାଲିଲା । ତା'ପରେ ଶ୍ରୀଯୁକ୍ତ ବିଶ୍ୱନାଥ ଦାସ ଓ ସରଳାଦେବୀ ଭାଷଣ ଦେଲେ । ସଭାକାର୍ଯ୍ୟ ସମାପ୍ତ ହେଲା । ଏତିକିବେଳେ ମୋର ତରୁଣ ମନରେ ଏକ ଶିଶୁସୁଲଭ ଚପଳତା ଜାଗ୍ରତ ହେଲା—ମୁଁ ସନ୍ତର୍ପଣରେ ମଣ୍ଡପ ଉପରକୁ ଉଠିଲି । ସେମିତି ସନ୍ତର୍ପଣରେ ଅଗ୍ରସର ହୋଇ ବିଶ୍ୱବନ୍ଦିତ ମହାମାନବଙ୍କ ଯେତେସମ୍ଭବ ନିକଟକୁ ଯାଇ ତାଙ୍କୁ ଦେଖିଲି—ତାଙ୍କର କଥାବାର୍ତ୍ତା ସବୁକୁ ଲକ୍ଷ୍ୟ କଲି । ଏତିକିବେଳେ ଉପସ୍ଥିତ ଅନ୍ୟମାନେ ଟିକିଏ ସେମିତି ଚଞ୍ଚଳ ହୋଇ ଉଠିଲେ । ମୁଁ ସେମାନଙ୍କ କଥାଶୁଣି ଆହୁରି ପାଦେ ଆଗେଇଗଲି—ଜାଣିଲି ଏ ସଭାପରେ ମ୍ୟୁନିସିପାଲିଟି ପୁଷ୍କରିଣୀ ସେପଟ ଟାଉନ୍‌ହଲ୍‌ରେ ଗୋଟିଏ ସଭାରେ ପଣ୍ଡିତ୍‌ଜୀ ଭାଷଣ ଦେବାକୁ ଯିବେ । ବିଷୟବସ୍ତୁ ସୋସିଆଲିଜିମ୍ ଓ କଂଗ୍ରେସ । ଏହା କିନ୍ତୁ ଏକ ସାଧାରଣ ସଭା ନୁହେଁ । ଏଥିପାଇଁ ଚାରିଅଣା ମୂଲ୍ୟର ଟିକେଟ୍ ବ୍ୟବସ୍ଥା ହୋଇଥିଲା । ପଣ୍ଡିତ୍‌ଜୀ ଚୌକିରୁ ଉଠିଲେ । ତାଙ୍କୁ ପ୍ରଦତ୍ତ ହୋଇଥିବା ଅସଂଖ୍ୟ ଫୁଲମାଳା ଚୌକି ବାଡ଼ାରେ ଗଚ୍ଛିତ ରହିଛି । ଫୁଲମାଳ ଉପରେ ତାଙ୍କର ଦୃଷ୍ଟି ପଡ଼ିବାମାତ୍ରେ ଭାଗୁବାବୁ ସେ ସବୁକୁ ଉଠାଇ ଆଣିଲେ । ମୁଁ ଭାଗୁବାବୁଙ୍କ ପାଖକୁ ଲାଗି ଠିଆ ହୋଇଥାଏ ।

ମୋ ମନକଥା ଜାଣିଲପରି ଭଗୁବାବୁ ଫୁଲମାଳଟିକ ମୋ ହାତକୁ ବଢ଼ାଇଦେଲେ ଓ ଏଇ ପ୍ରକ୍ରିୟାରେ ମୋ ଅଜାଣତରେ ମୋ ହାତପାପୁଲି ପଣ୍ଡିତ୍‌ଜୀଙ୍କ ଜାମାରେ ବାଜିଗଲା । ମୋର ବୟସ ସେତେବେଳେ ସତର/ଅଠର ବର୍ଷ । ହାତବାଜିଯିବା ସଙ୍ଗେ ସଙ୍ଗେ ମୋ ଦେହରେ ଏକ ଚମକ ଖେଳିଗଲା । ବୁଝିପାରିଲି ନାହିଁ ଏ ଚମକ—ଏ ଶିହରଣ କ'ଣ ମୋର ଚପଳ ବୟସର ଅନୁଭୂତି ନା ତାଙ୍କପ୍ରତି ମୋର ବର୍ଣ୍ଣନାତୀତ ସମ୍ମାନଜନିତ ଏକ ସ୍ୱାଭାବିକ ସ୍ପନ୍ଦନ !···ସଭାସ୍ଥଳି ଗୁଡ଼ି ସମସ୍ତେ ବାହାରିଲେ । ପଣ୍ଡିତଜୀ ଓ ନେତୃବୃନ୍ଦଙ୍କ ପଛେ ପଛେ ହାତରେ ଫୁଲମାଳ ସବୁକୁ ଧରି ମୁଁ ଗୁଲୁଥାଏ । କିଛି କମ୍ ସଂଖ୍ୟାରେ ମାଳ ନୁହେଁ, ବେଶ୍ ଓଜନର । କିନ୍ତୁ ମୋ ପାଇଁ ଓଜନ କାହିଁ ? ମୋର ମନ କହୁଚି ଏହା ଗୋଟେ ଫୁଲମାଳ ନୁହେଁ, ଜବାହାରଙ୍କ ଅଙ୍ଗ ଲଗି ଏକ ଶ୍ୱେତ କମଳ । ଆଜି ମନେପଡ଼ୁଚି ଜବାହାର ଓ ରବୀନ୍ଦ୍ରନାଥଙ୍କୁ କେନ୍ଦ୍ରକରି ଗୋଟିଏ ଘଟଣା । ପଣ୍ଡିତଜୀ ତାଙ୍କର ଆତ୍ମଜୀବନୀ (An Autobiography)ର ରଚନା ସମାପ୍ତ କରି ପାଣ୍ଡୁଲିପିଟିକୁ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ମତାମତ ପାଇଁ ତାଙ୍କୁ ପ୍ରଦାନ କଲେ । ଅନ୍ୟମାନଙ୍କ ଦୃଷ୍ଟିରେ ଏହା ଯେପରି ଗଙ୍ଗାଯମୁନାର ସଙ୍ଗମ । ଯଥା ସମୟରେ ରବୀନ୍ଦ୍ରନାଥ ନିଜର ଅଭିମତ ସହ ପାଣ୍ଡୁଲିପିଟିକୁ ଫେରାଇଦେଲେ । ଏଇଠି ଲକ୍ଷ୍ୟ କରିବାର କଥା ଯେ, ତାଙ୍କ ଅଭିମତଟି ଟାଇପ୍ କରା ନୁହେଁ—ଏହା ହେଉଚି ବିଶ୍ୱକବିଙ୍କ ସ୍ୱହସ୍ତ ଲିଖିତ ଓ ଏହା ସେଇ ହାତଲେଖା ଅବସ୍ଥାରେ ହିଁ ମୁଦ୍ରିତ ହୋଇ ପୁସ୍ତକରେ ସ୍ଥାନ ପାଇଛି । ଏଇଥିରୁ ବୁଝାଯାଏ ଦୁହିଙ୍କର ଦୁହିଙ୍କ ପ୍ରତି କିପରି ଶ୍ରଦ୍ଧା ଓ ସମ୍ମାନ-ବୋଧ ରହିଥିଲା । ଏଇ ହସ୍ତଲିପିରେ ରବୀନ୍ଦ୍ରନାଥ ପ୍ରସଙ୍ଗକ୍ରମେ ନେହେରୁଙ୍କୁ "ଇଟର୍‌ନାଲ୍ ସ୍ପ୍ରିଙ୍ଗ୍ ଅଫ୍ ଇଣ୍ଡିଆ" ରୂପେ ବର୍ଣ୍ଣନା କରିଛନ୍ତି ।···ଆମେ ସବୁ ଟାଉନହଲ୍‌ରେ ପହଞ୍ଚିଲୁ । ପଣ୍ଡିତ୍‌ଜୀ ଏ ସଭାରେ ଇଂରାଜୀରେ ଭାଷଣ ଦେଇଥିଲେ । ତାଙ୍କର ଭାଷଣ ଶୁଣିବା ପାଇଁ କଟକ ସହରର ବହୁ ବୁଦ୍ଧିଜୀବୀ, ଉଚ୍ଚଶିକ୍ଷିତ ଓ ବିଶିଷ୍ଟ ବ୍ୟକ୍ତିଙ୍କ ସମାବେଶରେ ସଭାଗୃହ ଉଚ୍ଛୁଳି ପଡ଼ୁଥିଲା । ତାଙ୍କ ଇଂରାଜୀ ଭାଷଣ କଥା ମୁଁ ବା କ'ଣ କହିବି ? ତେବେ ତାଙ୍କ ବାଗ୍ମୀତା ବା ଭାଷଣର ପଟୁତା ସମ୍ପର୍କରେ ଆମେରିକାର ଟାଇମ୍‌ସ୍ ସମ୍ବାଦପତ୍ର ଯାହା ଥରେ ଲେଖିଥିଲେ, ସେତିକି ଏଠି ମୁଁ ଉଦ୍ଧାର କରୁଚି । ଏ ଘଟଣାଟି ଘଟିଥିଲା—ରାଜଘାଟରେ ଗାନ୍ଧିଜୀଙ୍କ ଶବଦାହର ପରଦିନ । ସେଦିନ ନେହେରୁ ଯେତେବେଳେ ଚିତାସ୍ଥଳୀରେ ପହଞ୍ଚିଲେ, ସେ ଗାନ୍ଧିଜୀଙ୍କୁ ଲକ୍ଷ୍ୟ କରି ଯେଉଁ କେତେପଦ କଥା କହିଥିଲେ, ସେତେବେଳେ ତାଙ୍କର ବାଚନଭଙ୍ଗୀର ସାବଲୀଳତା କୁଆଡ଼େ ଉଭେଇଯାଇ ତାଙ୍କ ପାଟି ଖନିବାଜି ଯାଇଥିଲା । ଏ ପ୍ରସଙ୍ଗଟି ଏଇପରି ଭାବରେ ଆମେରିକାର

"ଟାଇମ୍‌ସ" ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା :—"Nehrue, that···most fluent man, spoke a few halting wistful sentcnces, like a lost child". Said Nehrue "Bapuji, here are flowers. Today at least, I can offer them to your bones and ashes ! where will I offer them tomorrow and to whom ?" (ଆନ୍ତର୍ଜାତିକ କ୍ଷେତ୍ରରେ ଜଣେ ଆକର୍ଷିକ ବକ୍ତା ଭାବରେ ଖ୍ୟାତିସମ୍ପନ୍ନ ପଣ୍ଡିତ ନେହେରୁ ସେଦିନ ମହାତ୍ମାଙ୍କ ଉଦ୍ଦେଶ୍ୟରେ କେତୋଟି ଅନ୍ତରଙ୍ଗ କଥା କହିଲାବେଳେ ଗୋଟିଏ ଅବୋଧ ଶିଶୁଭଳି ତାଙ୍କ ପାଟି ଖନ ବାଜି ଯାଉଥିଲା । ନେହେରୁ କହିଥିଲେ—"ବାପୁଜୀ, ଏସବୁ ଫୁଲ ଏଠି ଥୁଆହୋଇଚି । ଆଜି ହୁଏତ ତୁମ ଅସ୍ଥି ଓ ଭସ୍ମ ଉପରେ ଏସବୁ ଫୁଲକୁ ମୁଁ ଅର୍ପଣ କରିପାରିବି । କିନ୍ତୁ କାଲି ? କାହାକୁ ଆଉ କୋଉଠି ବା ମୁଁ ପୁଣି ଏ ଫୁଲ ଅର୍ପଣ କରିବି ?"

## ପଟ୍ଟାଭି ସୀତାରମାୟା ଓ ଜୟପ୍ରକାଶ ନାରାୟଣ

ଓଡ଼ିଶା ତଥା କଟକର ବିଖ୍ୟାତ ଟାଉନ୍‌ହଲ୍‌ଟିକୁ ପ୍ରାତଃସ୍ମରଣୀୟ ଗୌରୀଶଙ୍କର ରାୟ କଟକ ମ୍ୟୁନିସିପାଲ୍‌ଟିର ଚେୟାରମ୍ୟାନ୍ ଥିବାବେଳେ ନିର୍ମାଣ କରାଇଥିଲେ । ସେଇଦିନଠୁ ଅଦ୍ୟାବଧି ବହୁମନୀଷୀ ଏହି ଟାଉନ୍‌ହଲ୍ ପରିସରରେ ସଭାମାନଙ୍କରେ ସେମାନଙ୍କର ଭାଷଣ ପ୍ରଦାନ କରିଯାଇଚନ୍ତି । ମନେପଡ଼ୁ ଯାଉଚି, ଯେଉଁଦିନ କଂଗ୍ରେସ ନେତା ପଟ୍ଟାଭି ସୀତାରମାୟା ଟାଉନ୍‌ହଲ୍ ବାରନ୍ଦା ପ୍ରାନ୍ତରେ ବସି ଇଂରାଜୀରେ ଭାଷଣ ଦେଉଥା'ନ୍ତି—ଆମେ ଶ୍ରୋତାମାନେ ତଳେ ଘାସ ପଡ଼ିଆରେ ବସି ଶୁଣୁଥାଉ । ଏହା ତୃତୀୟ ଦଶକର କଥା । ସୀତାରମାୟାଙ୍କ ଇଂରେଜୀ ଭାଷଣର ପଦ୍ଧତି ବା ଧାରା ଆମେ ପୂର୍ବରୁ କେବେ ଶୁଣି ନ ଥିଲୁ । ମନେ ହେଉଥାଏ, ଯେପରି ସେ ନିଜେ ଭାଷଣ ଦେଉନାହାନ୍ତି, କୌଣସି ଏକ ମେସିନ୍ ଦ୍ୱାରା ତାଙ୍କ ଶବ୍ଦ ଭଣ୍ଡାରରୁ ଅକଳନ୍ତି ଶବ୍ଦ ଗୁଚ୍ଛ ଗୁଚ୍ଛ ହୋଇ ଅନବରତ ଝରିପଡ଼ୁଚି । ମୁହୂର୍ତ୍ତକର ବିରାମ ବିନା ଦୀର୍ଘ ଚାରିଘଣ୍ଟା ଭାଷଣ ଦେଇ ସେ ଷୋଡ଼ଶ ଶତାବ୍ଦୀରୁ ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଏ ଦେଶରେ ଇଂରେଜମାନଙ୍କର ଶୋଷଣର ଇତିହାସ ପ୍ରାଞ୍ଜଳଭାବେ ବୁଝାଇଦେଲେ । ଯେପରି ସୁଶ୍ରାବ୍ୟ ସେଇପରି ପ୍ରାଣସ୍ପର୍ଶୀ । ଶ୍ରୀଯୁକ୍ତ ପଟ୍ଟାଭି ସୀତାରମାୟା ୧୯୩୯ ତ୍ରିପୁରୀ କଂଗ୍ରେସରେ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ସହିତ କଂଗ୍ରେସ ସଭାପତି ପଦ ପାଇଁ ପ୍ରତିଯୋଗିତା କରି ପରାଜିତ ହୋଇଥିଲେ । ଏ ସନ୍ଦର୍ଭରେ ଗାନ୍ଧୀଜୀ କହିଥିଲେ—ପଟ୍ଟାଭିଙ୍କର ପରାଜୟ ହେଉଚି ତାଙ୍କର ନିଜର

ପରିଚୟ । ଏଇ ଟାଉନ୍‌ହଲ୍ ପରିସରକୁ ଭାଷଣ ଦେବାପାଇଁ ସେ କାଳରେ ଆସିଥିଲେ ଡକ୍ଟର ରାଜେନ୍ଦ୍ର ପ୍ରସାଦ ଓ ଶ୍ରୀ ଜୟପ୍ରକାଶ ନାରାୟଣ । ଜୟପ୍ରକାଶଙ୍କ ସହିତ ତାଙ୍କ ପତ୍ନୀ ଶ୍ରୀମତୀ ପଦ୍ମାଦେବୀ ମଧ୍ୟ ଆସିଥିଲେ । ଆସିଥିଲେ ପୁଣି ହରୀନ୍ଦ୍ର ଚଟ୍ଟୋପାଧ୍ୟାୟ । ନେତାମାନଙ୍କର ଏଇ ଭାଷଣ ପ୍ରଦାନ ପ୍ରସଙ୍ଗରେ ଏଠି ଉଲ୍ଲେଖ ନ କରି ରହିପାରୁନି ଯେ, ସ୍ୱାଧୀନତାର କିଛି ବର୍ଷ ପୂର୍ବରୁ ଭାରତରତ୍ନ ଓ ଭାରତର ପ୍ରଥମ ଗଭର୍ଣ୍ଣର ଜେନେରାଲ୍ ଶ୍ରୀଯୁକ୍ତ ରାଜଗୋପାଲାଚାରୀ କଟକ ରେଭେନ୍‌ସା କଲେଜ ଛାତ୍ର ୟୁନିୟନ୍‌ର ବାର୍ଷିକ ଉତ୍ସବରେ ସମ୍ମାନିତ ମୁଖ୍ୟବକ୍ତା ଭାବେ ଆସିଥିଲେ । କିନ୍ତୁ ରେଭେନ୍‌ସା କଲେଜ ହଲ୍‌ରେ ରାଜଗୋପାଲାଚାରୀଙ୍କ ପୌରୋହିତ୍ୟରେ ଛାତ୍ର ୟୁନିୟନ୍‌ର ଉତ୍ସବ ଅନୁଷ୍ଠିତ ହେବା ପାଇଁ କଲେଜ କର୍ତ୍ତୃପକ୍ଷ ଅନୁମତି ଦେଲେ ନାହିଁ ।

## ରାଜଗୋପାଳ ଆଚାରୀ

ଶ୍ରୀଯୁକ୍ତ ଆଚାରୀ ଆସି ପହଞ୍ଚି ଯାଇଥା'ନ୍ତି । ତାଙ୍କ ଭାଷଣ ଶୁଣିବା ପାଇଁ ଆମେ ବାହାରର ଶ୍ରୋତା ସବୁ ରେଭେନ୍‌ସା କଲେଜ ପ୍ରାଙ୍ଗଣରେ ଏକତ୍ରିତ ହୋଇଥାଉ । ଏତିକିବେଳେ ଛାତ୍ରସଙ୍ଘର ଜଣେ କର୍ମକର୍ତ୍ତା ଆସି ଜଣାଇଦେଲେ ଯେ, ଉତ୍ସବ କଲେଜ୍ ହଲ୍‌ରେ ନ ହୋଇ ବଟାନିକାଲ୍‌ଗାର୍ଡେନ୍ ସଂଲଗ୍ନ ପଡ଼ିଆରେ ହେବ ଓ ଆମମାନଙ୍କର ମହାମାନ୍ୟ ଅତିଥି ଶ୍ରୀଯୁକ୍ତ ରାଜଗୋପାଲାଚାରୀ ସେଇଠାରେ ତାଙ୍କର ଭାଷଣ ଦେବେ । ତାଙ୍କର ଭାଷଣ ଶୁଣିବା ପାଇଁ ଆମେ ବାହାରର ବହୁଲୋକ ବଟାନିକାଲ ଗାର୍ଡେନ ଅଞ୍ଚଳକୁ ଗଲୁ । ରାଜାଜୀ ଓ୍ୱେଷ୍ଟ ହଷ୍ଟେଲ ପଛପଟ ବାରନ୍ଦା ଉପରୁ ତାଙ୍କ ଭାଷଣ ଆରମ୍ଭ କଲେ—ଇଂରାଜୀରେ । ପଣ୍ଡିତଙ୍କ ଭାଷଣ ଯଦି ଶ୍ରାବ୍ୟ ହୋଇଥିଲା, ରାଜାଜୀଙ୍କ ଭାଷଣ ଥିଲା ସୁଶ୍ରାବ୍ୟ । ଶୁଭ୍ର ଖଦଡ଼ ବସ୍ତ୍ର । ଆଖିରେ କଳା ଚଷମା—ଓଠରେ ମିଷ୍ଟହସ । ବାଚନଭଙ୍ଗୀରେ ଆମେ ମନ୍ତ୍ରମୁଗ୍ଧ ହୋଇଗଲୁ । ଏତିକିବେଳେ ଅତି ଜୋର୍‌ରେ ବର୍ଷା ମାଡ଼ିଆସିଲା । ଆମେସବୁ ଯେଉଁଠି ପାରିଲୁ , ବର୍ଷାରୁ ରକ୍ଷା ପାଇବାପାଇଁ ଆଶ୍ରୟ ନେଲୁ । ରାଜାଜୀ ମଧ୍ୟ ବର୍ଷାଛିଟାରୁ ରକ୍ଷା ପାଇବା ପାଇଁ ବାରନ୍ଦାର ଭିତର ପାଖକୁ ଚାଲିଗଲେ । ଏଡେ ଚମତ୍କାର ବକ୍ତୃତା ଶୁଣିପାରିଲୁ ନାହିଁ ବୋଲି ଅନ୍ତର ଭିତର ଯେମିତି ଜଳିଯାଉଥାଏ । ଏତିକିବେଳେ ବର୍ଷା ଛାଡ଼ିଗଲା । ଆମେ ସଭାସ୍ଥଳକୁ ଆସିଲୁ— ରାଜାଜୀ ମଞ୍ଚ ଉପରକୁ ଆସି ବକ୍ତୃତା ଆରମ୍ଭ କଲେ । କିଛି ସମୟ ପରେ ପୁଣି ବର୍ଷା, ବର୍ଷାପରେ ପୁଣି ବକ୍ତୃତା, ଏହିପରି ପ୍ରାୟ ଚାରିପାଞ୍ଚଥର ଆମେ ବର୍ଷା ସହିତ ଲୁଚକାଳି ଖେଳ ଖେଳିଲା ପରେ ରାଜାଜୀଙ୍କ ବକ୍ତୃତାର ସମାପ୍ତି ଘଟିଲା । ଆମେ

ଶ୍ରୋତାମାନେ ଯେଉଁ ପରମତୃପ୍ତି ଓ ଆନନ୍ଦର ସନ୍ଧାନ ପାଇଲେ, ତାହା ଅବର୍ଣ୍ଣନୀୟ । ଏହାପରେ ଦେଶଙ୍କ ନିର୍ବାଚନ ପ୍ରଚାର ପାଇଁ ଆସିଲେ ଶ୍ରୀମତୀ ସରୋଜିନୀ ନାଇଡ଼ୁ । ମହାତ୍ମାଗାନ୍ଧୀଙ୍କ ପଟ୍ଟଶିଷ୍ୟା ଏଇ ମହୀୟସୀ ମହିଳା ରାଜନୀତି, ଶିକ୍ଷା, ସଂସ୍କୃତି ଓ ସାହିତ୍ୟ ଆଦି ସବୁ କ୍ଷେତ୍ରରେ ନିଜର କୃତିତ୍ୱର ପରିଚୟ ପ୍ରଦାନ କରିଯାଇଛନ୍ତି । ନିଜାମ୍‌ଙ୍କ ଅମଳରେ ହାଇଦ୍ରାବାଦ ସହରର ଏକ ବଙ୍ଗୀୟ ପରିବାରର କନ୍ୟା ସରୋଜିନୀ ଛାତ୍ରୀ ଜୀବନରେ ତାଙ୍କର ଅସାଧାରଣ ମେଧା ପାଇଁ ସେ ସ୍ୱୟଂ ନିଜାମ୍‌ଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲେ । ମାତ୍ର ପନ୍ଦରବର୍ଷ ବୟସରେ ସେ ନିଜାମଙ୍କ ବୃତ୍ତି ଲାଭ କରି ଲଣ୍ଡନ୍‌ର କିଙ୍ଗସ୍ କଲେଜରେ ତାଙ୍କ ଅଧ୍ୟୟନ ଆରମ୍ଭ କଲେ । କିଛିଦିନ ପରେ ଛାତ୍ରୀନିବାସର ମ୍ୟାଟ୍ରନ୍ ଲକ୍ଷ୍ୟ କଲେ ଯେ, ସରୋଜିନୀ ଅତି ପ୍ରତ୍ୟୁଷରୁ ଶଯ୍ୟା ଛାଡ଼ି ଲନ୍ ଉପରେ ଯାଇ ବସୁଚି ଓ ତା' ନୋଟ୍ ଖାତାରେ ଇଂରାଜୀରେ ଗୋଟିଏ କବିତା ଲେଖି ହଷ୍ଟେଲ୍‌କୁ ଫେରିଆସୁଚି । (ବାସ୍ତବରେ ସେ ମାତ୍ର ତେର ବର୍ଷ ବୟସରୁ ତାଙ୍କ କବିତା ଲେଖା ଆରମ୍ଭ କରିଥିଲେ) ଏହିପରି ବେଶ୍ କିଛିଦିନ ବିତିଗଲା । ସରୋଜିନୀଙ୍କ କବିତା ଲେଖା ଚାଲିଚି—ମ୍ୟାଟ୍ରନ୍ ଏଇ ଫାଙ୍କରେ ସରୋଜିନୀଙ୍କର ଲିଖିତ ସମସ୍ତ କବିତା ପାଠ କଲେ । ଯେତେ ଚେଷ୍ଟା କଲେ ବି ସେ କୌଣସିମତେ ବିଶ୍ୱାସ କରିପାରୁ-ନାହାନ୍ତି, ପନ୍ଦର ଷୋହଳ ବର୍ଷର ଗୋଟିଏ ଝିଅ କିଭଳି ଏମିତି ରସୋତ୍ତୀର୍ଣ୍ଣ କବିତା ଲେଖିପାରୁଚି ' କିନ୍ତୁ ଏକଥା ଅବିଶ୍ୱାସ କରିବେ ବା କିପରି ? ସରୋଜିନୀ ତ ଏକ ମୁକ୍ତ ସ୍ଥାନରେ ବସି ତାଙ୍କ କବିତା ଲେଖୁଚନ୍ତି । ଏଥିରେ ଅବିଶ୍ୱାସର ପ୍ରଶ୍ନ ହିଁ ନାହିଁ । ···ଏହାର କିଛିଦିନ ପରେ ମ୍ୟାଟ୍ରନ୍ ସରୋଜିନୀଙ୍କୁ ଡାକି ତାଙ୍କ କବିତା ପାଇଁ ଅଜସ୍ର ପ୍ରଶଂସା କରି କହିଲେ—ଦେଖ କାଳିଦାସଙ୍କ ଦେଶର ଝିଅ ତୁ, ଏଠି ରହି ତୁ ଆମ ନାଇଟିଙ୍ଗେଲ୍ ଆଉ ଟେମ୍‌ସ ନଦୀ ଉପରେ କବିତା ଲେଖୁଚୁ କାହିଁକି ? ତୁ ଫେରି ଯା' ତୋ' ଦେଶକୁ । ସେଠି ତୋର କବିତାର ଥିମ୍ ପାଇଁ ହିମାଳୟଠୁ ଗଙ୍ଗା ଯମୁନା ଯାଏ ଅସଂଖ୍ୟ ପ୍ରାକୃତିକ ଉପାଦାନ ରହିଚି । ···ମ୍ୟାଟ୍ରନ୍‌ଙ୍କ ଏ କଥାରେ ସରୋଜିନୀ ଯେ ସଙ୍ଗେ ସଙ୍ଗେ ଭାରତକୁ ଫେରି-ଆସିବେ ତା' ନୁହେଁ । ସେ କେମ୍ବ୍ରିଜ୍‌ରେ ପଢ଼ା ଶେଷ କରି ଭାରତକୁ ଫେରିଲେ । ଯଥାସମୟରେ ସେ ଶ୍ରୀଯୁକ୍ତ ନାଇଡ଼ୁଙ୍କୁ ବିବାହ କଲେ ଓ ତାଙ୍କର ବାସଗୃହର ନାମ ରଖିଲେ "ଗୋଲ୍‌ଡ଼େନ୍ ଥ୍ରେସ୍ ହୋଲ୍‌ଡ୍" । କବିତା ଲେଖିବା ସଙ୍ଗେ ସଙ୍ଗେ ରାଜନୀତିରେ ଯୋଗଦେଲେ । ତାଙ୍କର କବିତା ରଚନା, ବିଶେଷତଃ ଇଂଲିଶ୍ କବିତା ରଚନା ପାଇଁ ସେ "କୁଇନ୍ ଅଫ୍ ପୋଏଟ୍ରି" ଉପାଧିରେ ଭୂଷିତ ହେବା ସଙ୍ଗେ ସଙ୍ଗେ ତାଙ୍କ ପ୍ରତି ଦେଶବାସୀଙ୍କ ଆନ୍ତରିକ ସ୍ନେହଶ୍ରଦ୍ଧାର ଓ

ତାଙ୍କ ପ୍ରତିଭାର ପ୍ରତୀକ ସ୍ୱରୂପ ତାଙ୍କୁ—"The Nightingale of India." "The peacock of Bengal" and a Modern Mira Bai" ବୋଲି କୁହାଯାଉଥିଲା । ଭାରତୀୟ ଦର୍ଶନ, ଭାରତୀୟ ଚିନ୍ତାଧାରା ଓ ଭାରତୀୟ ଭାବଧାରାରେ ପ୍ଳୁତ ତାଙ୍କର କାବ୍ୟକବିତାସବୁକୁ ସେ ଶୁଦ୍ଧ ଇଂରାଜୀ ଭାଷାରେ ରଚନା କରିପାରୁଥିଲେ ।...ସେଦିନ ଶ୍ରୀମତୀ ସରୋଜିନୀ କଟକ ମ୍ୟୁନିସିପାଲିଟି ଅଫିସ୍ ପଛପଟରେ ନିର୍ମିତ ସଭାମଣ୍ଡପରୁ ଦେଈଙ୍କ ନିର୍ବାଚନ ପ୍ରଚାର ଭାଷଣ ଆରମ୍ଭ କଲେ । ସମ୍ମୁଖରେ ଜନାକୀର୍ଣ୍ଣ ବିସ୍ତୀର୍ଣ୍ଣ ପ୍ରାନ୍ତର । ମାଇକ୍ରୋଫୋନ୍ ନାହିଁ । କିନ୍ତୁ ତାଙ୍କର ସୁଲଳିତ କଣ୍ଠସ୍ୱରର ସଙ୍ଗୀତମୟ ଆବେଦନ ଏତେ ପ୍ରଚୁର ଯେ, ତାଙ୍କ ଇଂରାଜୀ ଭାଷଣ ସଭାମଣ୍ଡପରୁ ଶେଷ ପ୍ରାନ୍ତ ପର୍ଯ୍ୟନ୍ତ ସ୍ପଷ୍ଟ ଭାବରେ ଶୁଣାଯାଉଥାଏ । ତାଙ୍କ କଣ୍ଠରେ ଏପରି କୁହୁକମୟ ଶକ୍ତି ଥିଲା ଯେ, ତାଙ୍କର ଗଦ୍ୟ ଭାଷଣ ତାଙ୍କ କଣ୍ଠରୁ ନିଃସୃତ ହେବାପରେ ଯେପରି ଆପେ ଆପେ ଏକ ସଙ୍ଗୀତର ଲହରୀରେ ପରିଣତ ହୋଇଯାଉଥିଲା ।

### ଲାଲପିଲା ପ୍ରସଙ୍ଗ

ଯଥା ସମୟରେ ସେଇ "ଚମକ ସୃଷ୍ଟିକାରୀ" ଭୋଟ ଗ୍ରହଣ ଦିବସଟି ଉପସ୍ଥିତ ହେଲା । ବର୍ତ୍ତମାନ ପରି ସେତେବେଳେ ଗୋଟିଏ ଦିନରେ ଭୋଟ୍ ଗ୍ରହଣ ଶେଷ ଓ ଗୋଟିଏ କିଲୋମିଟର ଭିତରେ ଏକାଧିକ ଭୋଟ୍ ଗ୍ରହଣ କେନ୍ଦ୍ର ସ୍ଥାପନାର କଳ୍ପନା ସୁଦ୍ଧା କରାଯାଇ ନ ଥିଲା । କଟକ ସହର ମହିଳା ନିର୍ବାଚନ ମଣ୍ଡଳୀ ପାଇଁ କଟକ କଲେକ୍ଟରଙ୍କ ଅଫିସ୍‌ରେ ଗୋଟିଏ ମାତ୍ର ଭୋଟଗ୍ରହଣ କେନ୍ଦ୍ର ସ୍ଥାପନା କରାହୋଇଥିଲା—ପୋଲିଂ ବୁଥ୍ ମଧ୍ୟ ସେଇ ଗୋଟିଏ । ଭୋଟ୍‌ଗ୍ରହଣ ଦିବସମାନଙ୍କର ଅବଧି ଥିଲା ସାତଦିନ । ସକାଳ ନ' ଘଣ୍ଟାରୁ ଅପରାହ୍ଣ ସାଢ଼େ ଚାରିଘଣ୍ଟା ପର୍ଯ୍ୟନ୍ତ ଦୀର୍ଘ ସାତଦିନ ଧରି ଏ ଭୋଟ ଗ୍ରହଣ ଚାଲିଥିଲା । କଚେରୀହତା ମଧ୍ୟରେ ପ୍ରାର୍ଥୀ ଦୁହିଁଙ୍କର ଯେଉଁ କ୍ୟାମ୍ପ ସ୍ଥାପିତ ହୋଇଥିଲା, ତା'ର ସ୍ଥିତି ଥିଲା ଏହିପରି; ବର୍ତ୍ତମାନ୍ ଯେଉଁ ସ୍ଥାନରେ ଷ୍ଟେଟ୍‌ବ୍ୟାଙ୍କର କୋଠା ରହିଚି, ସେ ସମସ୍ତ ସ୍ଥାନ ସହିତ ଆଉ ଅଧିକ କିଛି ସ୍ଥାନରେ ଟଣା ହୋଇଥିଲା ଏକ ସୁନ୍ଦର ସୁବିସ୍ତୃତ ବିରାଟ ତମ୍ବୁ । ଏଇଟି ଥିଲା ଲତିକା ଦେଈଙ୍କ କ୍ୟାମ୍ପ୍ । ତମ୍ବୁର ସମ୍ମୁଖ ଭାଗ ଉପରେ ପ୍ରାୟ ଏକ ଶହ ଫୁଟ ଲମ୍ବ ଓ ପାଞ୍ଚଫୁଟ ଚଉଡ଼ାର ଲାଲ୍ ଟକ୍ ଟକ୍ ଭେଲ୍‌ଭେଟ୍ କନା ଉପରେ ଇଜିପ୍‌ସିଆନ କଟନ୍‌ରେ ପ୍ରାୟ ତିନିଫୁଟ୍ ଆକାରର ଇଂରାଜୀ ଅକ୍ଷରରେ ଲେଖା ହୋଇଥିଲା—ଭୋଟ ଫର ଲତିକା ସୁନ୍ଦରୀ ଦେବୀ । ତମ୍ବୁର ଦ୍ୱାର ଦେଶରେ ଥିଲା ତାଙ୍କ କ୍ୟାମ୍ପ୍ ଅଫିସ୍—ଭିତରେ ଖାଦ୍ୟପେୟର ସୁବନ୍ଦୋବସ୍ତ । ଲତିକା ଦେଈଙ୍କ ନିର୍ବାଚନ ପରିଚାଳନାର ମୁଖ୍ୟ ଥିଲେ

ତାତ୍କାଳିକ କଟକ ସହରର ଜଣେ ସୁପରିଚିତ ବିଶିଷ୍ଟ ନାଗରିକ ଶ୍ରୀ ରଘୁ ରାଉତ । ତାଙ୍କର ପରିଧାନ ଥିଲା ଚମତ୍କାର ସୁପର ଫାଇନ୍ ଧୋତି ଓ ଆଦ୍ଦିର ଚମତ୍କାର ସିଲ୍କ୍ ପଞ୍ଜାବି, ହାତରେ ସବୁବେଳେ ଷ୍ଟେଟ୍ ଏକ୍ସପ୍ରେସ ୫୫୫ ସିଗ୍ରେଟ୍ । ଏଇ ତମ୍ବୁର ଅଦୂରରେ ଥିଲା ଦେଈଙ୍କ କ୍ୟାମ୍ପ୍—ଏକ ଖୋଲା ସ୍ଥାନରେ ଗୋଟିଏ ଫୋଲ୍ଡିଙ୍ଗ୍ ଟେବୁଲ ଓ ଚାରି ପାଞ୍ଚଗୋଟି ଫୋଲ୍ଡିଙ୍ଗ୍ ଚୌକି ଗୋଟିଏ ବରଗଛ ତଳେ । (ଓଡ଼ିଶା ବିଖ୍ୟାତ ସେଇ କଟକ କଚେରୀ ବିରାଟ ବରଗଛ ନୁହେଁ, ଗୋଟିଏ ଗ୍ରେଟ ବରଗଛ) ଆମର କର୍ମୀମାନେ ଘରୁ ପ୍ରାତଃ ଭୋଜନ ଶେଷ-କରି ଭୋଟ୍‌କେନ୍ଦ୍ରକୁ ଆସୁଥିଲେ—ମଧ୍ୟାହ୍ନ ଭୋଜନ ପାଇଁ କେନ୍ଦ୍ରରେ କିଛି ପୁରୀ ଓ ବୁନ୍ଦିଆର ବନ୍ଦୋବସ୍ତ ହୋଇଥିଲା । ବାସ୍ ଏତିକି । କିନ୍ତୁ ତମ୍ବୁ ଭିତରୁ ମାଂସ ପଲଉ ଆଦିର ବାସ୍ନା ଭାସିଆସୁଥିଲା ।

ଭୋଟ ଗ୍ରହଣ ଆରମ୍ଭର ପୂର୍ବଦିନ ରାତି । କିଏ ଆସି କହିଲା—ଦେଈ ସନ୍ଧ୍ୟା ସାତଟାବେଳୁ କବାଟ ଦେଇ ରହିଛନ୍ତି । ଯେତେ ଡାକିଲେ ବି ଶୁଣୁନାହାନ୍ତି । ସେତିବେଳକୁ ରାତି ପ୍ରାୟ ଏଗାରଟା । ଆମେମାନେ ପ୍ରଚାର କାର୍ଯ୍ୟ ଶେଷ କରି ସେଇମାତ୍ର ଫେରିଚୁ । ସମସ୍ତେ ଯାଇ ଦେଖିଲୁ ପ୍ରକୃତରେ ଭିତରୁ-କବାଟ ବନ୍ଦ ଅଛି । ବେଶ୍ କିଛି ସମୟ ଧରି ଡାକିଲୁ କିଛି, ଫଳ ହେଲାନି । ଶେଷକୁ ଜଣେ ତାଙ୍କ ସ୍ୱାମୀ ଭୃଗୁବାବୁ ଆସିଲେ ଓ ଆମ ସମସ୍ତଙ୍କୁ ସେଠୁ ଚାଲି ଆସିବାକୁ କହିଲେ । କିଛି ସମୟ ପରେ ଭୃଗୁବାବୁ ପୁଣି ଡାକିଲେ—ଆମେ ଯାଇ ଦେଖିଲୁ କବାଟ ଖୋଲା ହୋଇଚି, ଦେଈ ଖଟ ଉପରେ ବସିଚନ୍ତି—ପାଖରେ ଗୋଟିଏ ଷ୍ଟୁଲ୍ ଓ ଖଣ୍ଡେ ଦଉଡ଼ି । ଭୃଗୁବାବୁ କହିଲେ—ଦେଖ ତୁମ ଦେଈଙ୍କ କୀର୍ତ୍ତି । ଭୋଟ୍‌ରେ ହାରିଯିବାର ଆଶଙ୍କା କରି ଆତ୍ମହତ୍ୟା କରିବା ପାଇଁ ବସିଚନ୍ତି । ଦେଈ ସାଙ୍ଗେ ସଙ୍ଗେ ଜବାବ୍ ଦେଲେ—ମୁଁ ଆଉ ବଞ୍ଚିବି କାହିଁକି ? ତୁମେ ଭଲକରି ଜାଣ, ଏ ଭୋଟ୍‌ର ଫଳାଫଳରେ କିଛି ସ୍ଥିରତା ନାହିଁ । ମୁଁ ଏକା ନୁହେଁ, କଟକ ସହରର ଅଧେ ଲୋକ କହୁଚନ୍ତି—ସରଳାଦେଈ ହାରିଯିବେ—ଲତିକାଦେବୀ ଜିତିଯିବେ । କିଏ ଏଇ ଲତିକାଦେବୀ ? କାଲିପର୍ଯ୍ୟନ୍ତ ତାଙ୍କ ନାମ ଶୁଣାଯାଉ ନ ଥିଲା । ସେ କର୍ମୀ ନୁହଁନ୍ତି କି ସେବିକା ନୁହଁନ୍ତି । ଆଜୀବନ ଦେଶ-ସେବା କରି ମୁଁ ଯଦି ଲତିକା ଦେବୀ ପାଖରୁ ହାରିଯାଏ, ତେବେ ମୁଁ ବଞ୍ଚିବି କାହିଁକି ? ···ମୁଁ ଜାଣିଥିଲି, ଭୃଗୁବାବୁ ଜଣେ ଧୀରସ୍ଥିର ଲୋକ । କିନ୍ତୁ ସେଦିନ ସରଳାଦେବୀଙ୍କ ମୁହଁରୁ ଏକଥା ଶୁଣି ଉତ୍ତେଜିତ ହୋଇଉଠି କହିଲେ—ତୁମପରି ଜଣେ ଦୁର୍ବଳମନା ନାରୀକୁ କଂଗ୍ରେସ ନିର୍ବାଚନ ଟିକେଟ ଦେଇ ଭୁଲ୍ କରିଚି । ତୁମେ ଆଜି ଆତ୍ମହତ୍ୟା କଲେ ସେଥିପାଇଁ ଯେତେ ଲୋକ ଦୁଃଖ କରିବେ, ତା'

ଅପେକ୍ଷା ଆମ ପରିବାରକୁ ଓ କଂଗ୍ରେସ ଅନୁଷ୍ଠାନକୁ ବେଶୀ ଲୋକ ଉପହାସ କରିବେ । ଏତିକି କହି ବାପୁବାବୁ ସେଠୁ ଚାଲିଗଲେ । ଆମେ ସମସ୍ତେ ସେଠି ଦେଈଙ୍କୁ ଘେରିବସିଲୁ । ପୁନର୍ବାର ଆସି ପହଞ୍ଚିଲେ । ନିର୍ବାଚନ ପ୍ରସଙ୍ଗ ଆଲୋଚନା ହେଲା—ଦେଈଙ୍କ ମନରେ କ୍ରମେ ପରିବର୍ତ୍ତନ ଆସିଲା ଓ ଏ ପ୍ରସଙ୍ଗ ଏତିକିରେ ଶେଷହେଲା ।

## ଭୋଟ ଗ୍ରହଣ ଆରମ୍ଭ

ଭୋଟ ଗ୍ରହଣ ଆରମ୍ଭ ହେଲା । ପ୍ରିଜାଇଡ଼ିଙ୍ଗ୍ ଅଫିସର ଥା'ନ୍ତି ଜଣେ ବରିଷ୍ଠ କାର୍ଯ୍ୟନିର୍ବାହୀ ପ୍ରଥମଶ୍ରେଣୀ ଡେପୁଟି ମାଜିଷ୍ଟ୍ରେଟ୍ ରାୟସାହେବ ଯଦୁନାଥ ମହାପାତ୍ର ଓ ପୋଲିଙ୍ଗ୍ ଅଫିସର୍ ଥା'ନ୍ତି ସେମିତି ଜଣେ ପ୍ରଥମ ଶ୍ରେଣୀ ଗେଜେଟେଡ୍ ଅଫିସର ଡାକ୍ତର ଜଲାଲୁଦ୍ଦିନ୍ । କେନ୍ଦ୍ରରେ ଅନ୍ୟ ଆନୁଷଙ୍ଗିକ କର୍ମନିର୍ବାହ ସହିତ ମୁଁ ଦେଈଙ୍କର ଜଣେ ପୋଲିଙ୍ଗ୍ ଏଜେଣ୍ଟର ଦାୟିତ୍ୱ ମଧ୍ୟ ତୁଲାଉଥିଲି । ଭୋଟଦାତା--(ନା, ଦାତ୍ରୀ) ମାନେ ଆସିଲେ । ମନେ ରଖନ୍ତୁ, କେବଳ ମହିଳା ଭୋଟର । ସେତେବେଳେ କଟକ ସହରରେ ବହୁ ସଂଖ୍ୟାରେ ଭଡ଼ା ଘୋଡ଼ାଗାଡ଼ି ମିଳୁଥାଏ । ଗାଡ଼ି ଭର୍ତ୍ତି ଯଥାଯୋଗ୍ୟ ବେଶଭୂଷାରେ ମଣ୍ଡିତ ହୋଇ ମହିଳାମାନେ ଆସୁଥା'ନ୍ତି—କେବଳ ମହିଳା ଆଉ ମହିଳା । ଏକ ବିଚିତ୍ର ଦୃଶ୍ୟ । ସୁସଜ୍ଜିତ କଲେଜ ପରିସରଟି ସେ ସାତଦିନ ଯେପରି ଏକ ମହିଳା ରାଜ୍ୟରେ ପରିଣତ ହୋଇଗଲା ।

ଗୋଟିଏ ଦିନର କଥା । ମୁଁ ଆମ କ୍ୟାମ୍ପ୍‌ରୁ ପୋଲିଙ୍ଗ୍ ବୁଥ୍‌କୁ ଆସୁଥାଏ । ଯେଉଁ ଭୋଟର୍‌ମାନେ ଭୋଟ୍ ଦେବାକୁ ଆସୁଥା'ନ୍ତି, ସେମାନେ ପ୍ରଥମେ ସେମାନଙ୍କର ନିର୍ଦ୍ଧାରିତ କ୍ୟାମ୍ପ୍‌କୁ ଯାଇ ଯାହା ବୁଝିବାର ବୁଝି ତା'ପରେ ପୋଲିଙ୍ଗ୍ ବୁଥ୍‌କୁ ଯାଉଥା'ନ୍ତି । ଦେଖିଲି ଅପରପକ୍ଷଙ୍କ କ୍ୟାମ୍ପ୍‌ରୁ ଜଣେ ବୟୋବୃଦ୍ଧା ମୁସଲମାନ ମହିଳା ଭୋଟର ଆସିଲେ । ମୁହଁରେ ବୋରଖା ନାହିଁ । ସାଙ୍ଗରେ ତାଙ୍କର ପୁଅ । ମୁଁ ତାଙ୍କର ପ୍ରାୟ ପଛେ ପଛେ ଚାଲିଚି । ଦେଖିଲି ମହିଳାଙ୍କର ଗୋଟିଏ ହାତପାପୁଲି ମୁଠା ହୋଇ ରହିଚି । ନିମ୍ନସ୍ୱରରେ ନ ହେଲେ ମଧ୍ୟ କିଞ୍ଚିତ୍ ସତର୍କତା ଅବଲମ୍ବନ କରି ଦୁହିଁଙ୍କ ଭିତରେ ଯାହା କଥାବାର୍ତ୍ତା ମୁଁ ଶୁଣିଥିଲି, ଆଜି ଅକ୍ଷରେ ଅକ୍ଷରେ ଏଠି ତାହା ଉଦ୍ଧାର କରୁଚି ।

···ପୁଅ ପଚାରିଲା—କ୍ୟା ହୁଆ ?

ନିଜ ହାତମୁଠା ଅଧା ଖୋଲି ପୁଅକୁ ଦେଖାଇ ଟିକିଏ ନିମ୍ନ ସ୍ୱରରେ ମା' କହିଲେ—ଏଇ ଦେଖ୍ ।

—ଜାନେ ଦୋ ! ଅଉର୍ କ୍ୟା ବୋଲେ ?

ହାତମୁଠାରେ ଧରିଥିବା ଦ୍ରବ୍ୟକୁ ପଣତ କାନରେ ବାନ୍ଧି, ମା' କହିଲେ—ବୋଲେ ପଗ୍...ବୋଲେ କି, ଲାଲ୍‌ମେ ଡାଲେଗେ । ଏଥିରେ ପୁଅ ଯେମିତି ଆଦେଶ ଦେବା ଭଙ୍ଗୀରେ କହିଲା—ନେହିଁ, ଲାଲ୍‌ମେ ନେହିଁ, ପିଲାମେ ଡାଲେଗେ ।

—ଆରେ ବେଟା, ହମାରେ ବସ୍ତିବାଲେ ପଗ୍ ସବ୍ କୁଆଡ଼େ ଲାଲ୍‌ମେ...

ବାଧାଦେଇ ଯୁବକ ପୁଅ ଦୃପ୍ତ କଣ୍ଠରେ କହିଲା—ମାରେଗୁଲି ବସ୍ତି-ବାଲେ କୋ । ମୁଁ କହୁଚି—ତୁମ୍ ପିଲାମେ ଡାଲେଗେ ।

—ଠିକ୍ ହେ, ପିଲାମେ ସହି ।

ସେ ଦୁହେଁ ବୁଥ୍ ଆଡ଼କୁ ଆଗେଇଗଲେ । ମୁଁ ସେଇଠି ଥ'ହୋଇ ଠିଆ ହୋଇ ରହିଲି । ମୋ କନ୍‌ଫ୍ୟୁଜନ୍‌ର ସୀମା ନାହିଁ । ହାତମୁଠାରୁ ଯାହାନେଇ ମହିଳାଟି ପଣତକାନରେ ବାନ୍ଧି ଉପରକୁ ଗ୍ରୁଟିଦେଲେ—ପଣତ କାନରେ ସେ ଅଂଶଟି ଓଜନିଆ ଜଣାଗଲା ଓ ଆଖିକୁ ଗୋଲ ଗୋଲ ଦେଖାଗଲା । ସେ ପ୍ରସଙ୍ଗଟି ମୁଁ ଠିକ୍ ବୁଝିଲି, କିନ୍ତୁ ଏ "ପିଲା" କ'ଣ ! ଏଠି ପିଲା କାହାନ୍ତି ? ଆସେମ୍ବ୍ଲି ନିର୍ବାଚନରେ ତ ପିଲାଙ୍କର କିଛି କାମ ନାହିଁ । ଯଦିଚ ଥାଏ, ସେ "ପିଲାମେ" ମାନେ ପିଲା ଉପରେ ଡାଲିବେ ଅର୍ଥାତ୍ ପକେଇବେ କ'ଣ ? ଲାଲ ଅର୍ଥ ନ ହେଲା ମୁଁ ବୁଝିଲି, ସେଇ ଲାଲ୍ ବା ନାଲି । କିନ୍ତୁ ଏ ପିଲା !! ମୋ ମଥା ଘୂରିଗଲାଣି । ମନେ ମନେ ଭାବିଲି, ଗୋଟିଏ ମୁସଲମାନ ପରିବାର ଯେତେବେଳେ ଏ ଶବ୍ଦଟି କହୁଚନ୍ତି, ଏଇଟି କ'ଣ ତେବେ ଗୋଟିଏ ପୁରାପୁରି ଉର୍ଦ୍ଦୁ ଶବ୍ଦ !...ତମ୍ବୁ ପାଖକୁ ଫେରିଯାଇ ଜଣେ ମୁସଲମାନ ଭଦ୍ରଲୋକଙ୍କୁ ପଚାରିଲି—ଆଜ୍ଞା, 'ପିଲା' ମାନେ କ'ଣ ? ..ଭଦ୍ରଲୋକ ବେଶ୍ କିଛିକ୍ଷଣ ନିଷ୍କପଟ ହସ ହସି କହିଲେ—ମୁଁ ଆପଣଙ୍କୁ 'ପିଲା'ର ମାନେ ବୁଝେଇବି ? ପିଲାମାନେ ତ ପିଲା, ଏଇ ଗ୍ରେଟ ପିଲା ।.. କିଛିଟା ଲଜ୍ଜିତ ହୋଇ କହିଲି—ନାହିଁ ଆଜ୍ଞା, ମୁଁ କହୁଥିଲି ଉର୍ଦ୍ଦୁ ଭାଷାରେ କିଛି ଶବ୍ଦ ..ଏଥର ସେ ପୁଣି ହସି ଉଠି କହିଲେ—ଓହୋ !! ଏକଥା ! ଉର୍ଦ୍ଦୁରେ 'ପିଲା' ମାନେ ହଳଦିଆ, ହଳଦିଆ ରଙ୍ଗ । ଆପଣ ପଗ୍ ସରଳାଦେଈଙ୍କ କର୍ମୀ—ଆମ ବସ୍ତିକୁ ଯାଇଥିଲେ, ମୁଁ ଦେଖିଚି । ସରଳାଦେଈଙ୍କ ଭୋଟ୍‌ବାକ୍ସ ରଙ୍ଗ ହେଲା "ପିଲା" ମାନେ ହଳଦିଆ--ଆଉ ଲତିକାଦେଈଙ୍କ ଭୋଟ୍‌ବାକ୍ସ ରଙ୍ଗ ହେଲା ଲାଲ୍ ମାନେ ନାଲି ।

—ତା'ହେଲେ ପିଲମେ ଡାଲେଗେ ମାନେ ହଳଦିଆ ବାକ୍ସରେ ଭୋଟ୍ ପକାଅ !

—ହଁ ତ ।

ତାଙ୍କୁ ଧନ୍ୟବାଦ ଦେଇ ଫେରିଲି ।...ହଁ, ବର୍ତ୍ତମାନ ପରି ସେତେବେଳେ ନିର୍ବାଚନରେ ସବୁ ପ୍ରାର୍ଥୀଙ୍କ ପାଇଁ ଗୋଟିଏ ବାକ୍ସ ରହୁ ନ ଥିଲା । ପ୍ରତ୍ୟେକ ପ୍ରାର୍ଥୀଙ୍କ ପାଇଁ ଭିନ୍ନ ଭିନ୍ନ ରଙ୍ଗର ଗୋଟିଏ ଗୋଟିଏ ବାକ୍ସ ରହୁଥିଲା । କଂଗ୍ରେସ ତାଙ୍କ ଦଳ ପାଇଁ ହଳଦିଆ ରଙ୍ଗ ବାଛିଥିଲେ; ଅତଏବ ଦେଈଙ୍କ ବାକ୍ସର ରଙ୍ଗ ଥିଲା ହଳଦିଆ : ଆଉ ଲତିକାଦେବୀଙ୍କ ବାକ୍ସର ରଙ୍ଗ ଥିଲା ଲାଲ୍ । ହୋଇପାରେ, ଓଡ଼ିଶା ମୁସଲିମ ବହୁଳ ପ୍ରଦେଶ ନ ହେଲେ ବି ମୁସଲିମ୍ ଲିଗ୍‌ର ନିର୍ଦ୍ଦେଶ ଥିଲା କଂଗ୍ରେସ ପ୍ରାର୍ଥୀଙ୍କୁ ମୁସଲମାନ ଭୋଟରମାନେ ଭୋଟ୍ ନ ଦେବା ପାଇଁ । କିନ୍ତୁ ସେଦିନ ସେ ଯୁବକଟି ସେ ନିର୍ଦ୍ଦେଶକୁ ପ୍ରତ୍ୟାଖ୍ୟାନ କରି ତା' ମା'ର ପଣତ କାନିରେ ବନ୍ଧା ହୋଇଥିବା ରୌପ୍ୟ ଦ୍ରବ୍ୟକୁ ସଂପୂର୍ଣ୍ଣ ଭାବେ ଅସ୍ୱୀକାର ଆଉ ବେଖାତିର କରି ତା ମା'କୁ ଯେଉଁ ନିର୍ଦ୍ଦେଶ ଦେଇଥିଲା ମା' ପୁଅର ସେକଥାକୁ ମନ ପ୍ରାଣରେ ଆଦରି ନେଇଥିଲା । ଯୁବକଟି ମନରେ ନିଶ୍ଚୟ ଏଇ ଧାରଣା ଦୃଢ଼ୀଭୂତ ହୋଇଥିଲା ଯେ, ଯେଉଁ ଦଳ ଦେଶର ସ୍ୱାଧୀନତା ସଂଗ୍ରାମରେ ଅବତୀର୍ଣ୍ଣ ହୋଇଚି, ସେଇ ଦଳହିଁ ଏ ଦେଶର ଜନସାଧାରଣଙ୍କ ଭୋଟ୍‌ର ପ୍ରକୃତ ଅଧିକାରୀ ।

## ସରଳା ଦେବୀ, ଲତିକା ଦେବୀ

ନିର୍ବାଚନ ଚାଲିଥିବା ସମୟରେ ବେଳେବେଳେ କିଛି କୌତୁକ ବା କୌତୂହଳପୂର୍ଣ୍ଣ ଘଟଣା ଘଟିଥାଏ । ଦେଈଙ୍କ ନିର୍ବାଚନ ଚାଲିଥିବାବେଳେ ସେମିତି ଏକ ଘଟଣା ଘଟିଥିଲା । ହଁ ଏଠି ଆପେ କହିରଖେ ସେ ଦୁହିଁଙ୍କର ବେଶପୋଷାକର କଥା । ଦେଈ ତ ସବୁଦିନେ ଖଦଡ଼ ପିନ୍ଧନ୍ତି । ଜମିଦାର ଘରର ବୋହୂ ସେ । ଦୁଇ କାନରେ ଦୁଇଟି ସୁନାର ଲବଙ୍ଗ ଓ ଦୁଇ ହାତରେ ପଟେ ପଟେ ଚୁଡ଼ୀ ବ୍ୟତୀତ ଦେହର ଅନ୍ୟ କୌଣସି ସ୍ଥାନରେ କିଛି ଅଲଙ୍କାର ନ ଥାଏ । ଇଲେକ୍‌ସନ ସମୟ ଆସିଗଲା—ଆମେ ସମସ୍ତେ ବିଚାର କଲୁ ଭୋଟ୍‌ଗ୍ରହଣ ସାତଦିନ ଦେଈ ଆମର ଭୋଟ୍‌କେନ୍ଦ୍ରକୁ ଏମିତି ଫୁଙ୍ଗୁଳା ବେଶରେ ଯିବେନି । ସେ ଯଥାସ୍ଥିତ ଶାଢ଼ୀ ଗହଣାରେ ସାଜିହୋଇ ଭୋଟ୍ କେନ୍ଦ୍ରକୁ ଯିବେ । ଏ କଥାଟାକୁ ଦେଈ ବାଏଁ ବାଏଁ ଉଡ଼େଇଦେଲେ । କିନ୍ତୁ ସ୍ୱାମୀଦେବତା ଭାଗୁବାବୁ ଯେତେବେଳେ ଆମ ପ୍ରସ୍ତାବକୁ ସମର୍ଥନ କଲେ, ଦେଈଙ୍କର ଆଉ କିଛି କହିବାର ନ ଥିଲା ।

ଦେଈଙ୍କର ବାକ୍ସ ହଳଦିଆ । ଏଇ ଦୃଷ୍ଟିରୁ ପାଦପାଇଁ ହଳଦିଆ ଚଟି, ଦେହରେ ହଳଦିଆ ଶାଢ଼ୀ ଓ ବ୍ଲାଉଜ୍ , ଶୀତଦିନ ବୋଲି ହଳଦିଆ ସାଲ୍ , ହଳଦିଆ ରଙ୍ଗର ବ୍ୟାଗ୍ । ସେତେବେଳକୁ ଗିନିସୁନାର ବିଶେଷ ପ୍ରଚଳନ ନ ଥିଲା । ପକ୍‌କା ସୁନାର ରଙ୍ଗ ଥିଲା ହଳଦିଆ । ସେଇ ପକ୍‌କା ସୁନାରେ କାନର ଝୁମୁକା, ବେକରେ ଗୋଟିଏ ସୁନ୍ଦର ହାର, ହାତରେ ଚୂଡ଼ି ଓ କଙ୍ଗନ୍, ବାହୁରେ ଅନନ୍ତ ପିନ୍ଧାଇବାର ସବୁ ଚେଷ୍ଟା ବିଫଳ ହେଲା । ଗୌରବର୍ଣ୍ଣା ସୁଦର୍ଶନା ସରଳାଦେବୀ ଗୃହସ୍ଥଗ୍ରାମ ଜମିଦାର ଦୁର୍ଗାଚରଣ ମହାପାତ୍ରଙ୍କ ଗୃହକୁ ବନାରସୀ ଶାଢ଼ୀ ଓ ସ୍ୱର୍ଣ୍ଣାଲଙ୍କାରରେ ବିଭୂଷିତା ହୋଇ ବଧୂବେଶରେ ପ୍ରବେଶ କରିବାର ମାତ୍ର ମାସ କେତୋଟି ଦିନ ପରେ କଂଗ୍ରେସରେ ଯୋଗଦେଇ ସେ ସବୁ ପଚ୍ଛବସ୍ତ୍ର ଅଲଙ୍କାରକୁ ପରିହାର କରି କାଦିବରଣ କରିଥିଲେ । ସେଇଦିନରୁ ପ୍ରାୟ ଚଉଦ ପନ୍ଦର ବର୍ଷ ପରେ ସେଦିନ ପୁଣିଥରେ ଶାଢ଼ୀ ଗହଣା ପିନ୍ଧିଲା ପରେ ଦେଈ ଗୋଟିଏ ଲକ୍ଷ୍ମୀ ବୋହୂପରି ଦେଖାଗଲେ ।...ଦେଈ ଏଇସବୁ ଶାଢ଼ୀ ଗହଣା ପରିଧାନ କରି ଭୋଟ୍‌କେନ୍ଦ୍ରକୁ ଯିବା କଥାଟା ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଲତିକାଦେଈ ଯେମିତି ଜାଣି ନ ପାରନ୍ତି, ସେଥିପ୍ରତି ଆମେ ଯଥାସମ୍ଭବ ସତର୍କତା ଅବଲମ୍ବନ କରିଥିଲୁ । କିନ୍ତୁ ହେ ଭଗବାନ୍ ! ଏ କ'ଣ ହେଲା ! ଭୋଟ୍ ଗ୍ରହଣର ପ୍ରଥମଦିନ ଆମେ ଭୋଟ୍‌କେନ୍ଦ୍ରକୁ ଯାଇ ଦେଖିଲୁ ଯେ, ଲତିକାଦେଈଙ୍କର ବାକ୍ସର ରଙ୍ଗ ଲାଲ୍ । ଲତିକାଦେଈ ସେଇ ଲାଲ୍ ରଙ୍ଗର ମର୍ଯ୍ୟାଦା ରକ୍ଷାକରି ଭୋଟ୍‌କେନ୍ଦ୍ରକୁ ଆସିଚନ୍ତି । ଲାଲ୍‌ରଙ୍ଗର ପାଦୁକା, ଗଭୀର ଲାଲ୍‌ରଙ୍ଗର ବନାରସୀ ସିଲ୍‌କ ଶାଢ଼ୀ, ଲାଲ୍‌ରଙ୍ଗର ଅନ୍ତର୍ବାସ, ଦେହର ବିଭିନ୍ନ ସ୍ଥାନରେ ଯେଉଁ ସବୁ ସ୍ୱର୍ଣ୍ଣାଲଙ୍କାର ପିନ୍ଧିଚନ୍ତି, ସେ ସବୁଥିରେ ଲାଲ୍ ଟକ୍‌ଟକ୍ ମୂଲ୍ୟବାନ ହୀରକ ଖଞ୍ଜାହୋଇଚି । ଆମେ ଯାଇ ଦେଖିଲୁ—ଲାଲ୍ ଭେଲ୍‌ଭେଟ୍ କନାର ଭ୍ୟାନିଟି ବ୍ୟାଗ୍-ଧାରିଣୀ ଲତିକାଦେବୀ ସଗର୍ବରେ ଭୋଟ୍‌କେନ୍ଦ୍ରରେ ପଦଚାରଣ କରୁଚନ୍ତି । ମଥାରେ ଲାଲ୍ ଟକ୍‌ଟକ୍ ସିନ୍ଦୂର ଟୋପା । ଭୋଟ୍‌ଗ୍ରହଣ ଆରମ୍ଭ ହେଲାଣି, ମୁଁ ବୁଥ୍ ଭିତରେ ଏଜେଣ୍ଟମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ସ୍ଥାନରେ ବସିଚି । କଟକ କଲେକ୍‌ଟୋରେଟ୍ ଅଫିସ୍‌ର ବେଶ୍ ଗୋଟିଏ ବଡ଼ କୋଠରିରେ ବୁଥ୍ ସ୍ଥାପିତ ହୋଇଥାଏ । କୋଠରି ଭିତରକୁ ପ୍ରବେଶ ଦ୍ୱାରର ଗୋଟିଏ ପାଖକୁ ଲାଗି ଭିତର ପଟେ ପ୍ରିଜାଇଡିଙ୍ଗ୍ ଅଫିସର ବସିଚନ୍ତି । ଏତିକିବେଳେ ମୁଁ ଦେଖିଲି, ଲତିକାଦେବୀ ପ୍ରବେଶଦ୍ୱାରର ସେପଟକୁ ଲାଗି ଗୋଟିଏ ଚୌକି ଟାଣି ଆଣି ବାହାରପଟେ ବସିଲେ । ଭୋଟ୍‌ଗ୍ରହଣ ଚାଲିଚି । ଲତିକାଦେବୀ କୋଠରି ଭିତରକୁ ମୁହଁ ବସିଚନ୍ତି ଓ ପର୍ଦ୍ଦାଘେରା ବୁଥ୍ ଭିତରେ କ'ଣ ଘଟୁଚି ଜାଣିବାକୁ ଚେଷ୍ଟା କରୁଚନ୍ତି । ଏତିକିବେଳେ ଦେଈ ବାହାର

ବାରନ୍ଦାରେ ଲଡ଼କାଦେଈଙ୍କ ପଛପଟେ ଥାଇ ମତେ ହାତ ଠାରି ଡାକଲେ । ଦ୍ୱନ୍ଦ୍ୱରେ ପଡ଼ି ମୁଁ ବାହାରକୁ ଗଲି ଟିକେ ଦୂରେଇଯାଇ ଦେଈ ମତେ ଈଷତ୍ ନମ୍ର ସ୍ୱରରେ କହିଲେ—ଦେଖ୍ ଦେଖ୍, ସେ ଲଡ଼କା କେମିତି ସେ ଚୌକି ଉପରେ ବସି ଭିତରେ କଏ କୋଉ ବାକ୍ସରେ ଭୋଟ୍ ଦେଉଚି, ସେକଥା ପର୍ଦ୍ଦା ଫାଙ୍କରେ ଉଣ୍ଟୁଚି । ତୁ ଯା' ପ୍ରିଜାଇଡିଙ୍ଗ୍ ଅଫିସର ପାଖରେ ଗୋଟାଏ ଅଭିଯୋଗ କରି ଆସ୍ ।···ମୁଁ ଆସି ପ୍ରିଜାଇଡିଙ୍ଗ୍ ଅଫିସରଙ୍କୁ ମୋର ଅଭିଯୋଗପତ୍ର ଦେଲି । ପ୍ରିଜାଇଡିଙ୍ଗ୍ ଅଫିସର ଯଦୁବାବୁ ବେଶ୍ କିଛିକ୍ଷଣ ପରିସ୍ଥିତିକୁ ଅନୁଧ୍ୟାନ କରି ଲଡ଼କାଦେବୀଙ୍କୁ କହିଲେ—କ୍ଷମା କରିବେ ମ୍ୟାଡାମ୍ । ଆପଣ ଏ ଚୌକିଟାକୁ ଟିକେ ଡାହାଣ ପାଖକୁ ଘୁଞ୍ଚାଇ ବସନ୍ତୁ । ଏଥିରେ ଲଡ଼କା ଦେଈ ଚଟାପଟ୍ ପ୍ରତ୍ୟୁତ୍ତର ଦେଲେ—ହାଇ ?···କଥା ସଙ୍ଗେ ସଙ୍ଗେ ସେ ଗୋଟିଏ ଗୋଡ଼ ଉପରେ ଆଉ ଗୋଟିଏ ଗୋଡ଼ ପକେଇ ଆହୁରି ଦମ୍ଭର ସହିତ ଚୌକି ବାଡ଼ାକୁ ଆଉଜି ବସିରହିଲେ । ସତ କହୁଚି, ଏ ଦୃଶ୍ୟଟି ଦେଖି ମତେ ହସ ମାଡ଼ିଲା, ମୁଁ ମୁହଁ ବୁଲାଇ ନେଲି । ଏଣେ ଯଦୁବାବୁ ଲଡ଼କାଦେବୀଙ୍କୁ କହୁଚନ୍ତି—ଆପଣ ସେପଟୁ ଚୌକିଟାକୁ ଟାଣିଆଣି ଏଠି ବସିଲେ । ଏଠୁ ପର୍ଦ୍ଦା ସେ ପାଖରେ ଭୋଟ୍‌ଦେବା ପ୍ରକ୍ରିୟା ଆପଣ ହୁଏତ ଦେଖିପାରନ୍ତି । ବିରୁଦ୍ଧ ଦଳରୁ ଆପତ୍ତି ହେଲଣି, ଆପଣ ଦୟାକରି ଚୌକିଟା ଟିକେ ଘୁଞ୍ଚାଇ ନଅନ୍ତୁ ।···ଜଣାଗଲା ପ୍ରିଜାଇଡିଙ୍ଗ୍ ଅଫିସରଙ୍କ କଥା ଲଡ଼କାଦେବୀ ଯେମିତି ଆଦୌ ଗ୍ରହଣ କରୁ ନାହାଁନ୍ତି । ମୁହଁ ବୁଲାଇନେଇ ସେ କହିଲେ—ମୁଁ ଏଠୁ ଉଠିବନି ।···ଏ କଥାରେ ପୋଲିଙ୍ଗ୍ ବୁଥ୍‌ରେ ଏକ ଅସ୍ୱାଭାବିକ ପରିସ୍ଥିତି ଖେଳିଗଲା । କିନ୍ତୁ ଯଦୁବାବୁ ଆଦୌ ବିଚଳିତ ନ ହୋଇ କହୁଚନ୍ତି—ଦେଖନ୍ତୁ, ଆପଣ ଜଣେ ମହିଳା । ଆପଣ ଏମିତି ଜିଦ୍ ଧରି ବସିଲେ କଥାଟା ଅସୁନ୍ଦର ହେବ, ପୋଲିଙ୍ଗ୍ ବନ୍ଦ ହେବ । କଲେକ୍ଟରଙ୍କ କାନକୁ କଥାଯିବ । ଟିକେ ରହି ଲଡ଼କା ଦେଈ "ଆଚ୍ଛା" ବୋଲି କହି ଚୌକି ଉପରୁ ଧଡ଼୍‌କିନା ଉଠି ଚାଲିଗଲେ । ପୋଲିଙ୍ଗ୍ ଚାଲିଚି, ଟିକେ ପରେ ମୁଁ ବାହାରକୁ ଚାହିଁ ଦେଖିଲି—ଦୁଇ ଦେଈଯାକ ଯାହାର ଦୁଇ ପ୍ରତିଦ୍ୱନ୍ଦ୍ୱୀ ଚରିତ୍ରପରି ଏପାଖ ସେପାଖ ହେଉଚନ୍ତି । ମନରେ ମୋର ସନ୍ଦେହ ହେଲା । ମୁଁ ବାରନ୍ଦାକୁ ଉଠିଯାଇ ଦେଖିଲି—ମୋ ଆଶଙ୍କା ଠିକ୍ । ଦୁହେଁ ରାଗରେ ଜଳୁଚନ୍ତି । ମାରେ କି ନ ମାରେ ଅବସ୍ଥା । ଏତିକିବେଳେ ମତେ ଦେଖି ଲଡ଼କାଦେଈଙ୍କ ରାଗ ଆହୁରି ବଢ଼ିଗଲା । ମୋ ଆଡ଼କୁ କଟମଟ କରି ଚାହିଁଲେ । ଆମ ଦେଈ ବି ଛାଡ଼ିବା ଲୋକ ନୁହଁନ୍ତି । ଲଡ଼କାଦେବୀଙ୍କୁ ଲକ୍ଷ୍ୟକରି କହିଲେ—ତାକୁ ଏମିତି କଟମଟ କରି ଚାହିଁଚୁ କ'ଣ ? ସିଏ ମୋ ଏଜେଣ୍ଟ ।······ମୁହଁ ଛିଟିଦେଇ ଲଡ଼କାଦେବୀ କହିଲେ—ଓଃ ଏଜେଣ୍ଟ ତ ସମସ୍ତଙ୍କର ଅଛନ୍ତି···ଦେଈ ଆମର

ଉତ୍ତର ଦେଲେ—ସେଇ କଥା ତ ! ତୁ ତାକୁ ଏମିତି କଟମଟ କରି ଚାହିଁଥିଲୁ କାହିଁକି ? ଦେଖିଲୁପରା ତା କଲମର ଗୋଟାଏ ଗାରରେ ତତେ କେମିତି ଚୌକିରୁ ଉଠେଇଦେଲା ? ଗର୍ଜିଉଠି ଲଡିକାଦେଇ କହିଲେ—ଉଠେଇଦେଲା କ'ଣ ? ମୁଁ ଉଠିଯିବାକୁ ଏଠିକି ଆସିଚି ? ଏଇ ଦେଖ୍, ଦେଖୁଚୁ ମତେ !··· ନିଜର ଚମତ୍କାର ବେଶପୋଷାକ ଲକ୍ଷ୍ୟକରି ଦେଇ ଆମର ତାଙ୍କ କଥାକୁ ମାଡ଼ି ବସିଲେ ।···କିନ୍ତୁ ନା, ଏ ଦୁଇ ମହିଳା ପ୍ରତିଦ୍ୱନ୍ଦ୍ୱୀ କିଛିଟା ଭଦ୍ର, କିଛିଟା କଟୁ, କିଛିଟା ତିକ୍ତ, କିଛିଟା ମଧୁର ଭାଷା ପ୍ରୟୋଗ କରି ପରସ୍ପର ପ୍ରତି ଯେଉଁ ବାକ୍ୟବାଣ ନିକ୍ଷେପ କଲେ ସେ ସବୁର ଉଦ୍ଧାର ମୁଁ ଏଠି କରୁନାହିଁ । ସେ ସବୁର ଆକ୍ଷରିକ ଉଦ୍ଧାର ଏଠି ନ କରି ସେମାନଙ୍କ ବକ୍ତବ୍ୟର ମର୍ମ ମୁଁ ଏଠି ପ୍ରଦାନ କରୁଛି । ଇଏ ତାଙ୍କୁ କହିଲେ—ତୁ ବନାରସୀ ଶାଢ଼ୀ ପିନ୍ଧି ଓଢ଼ଣୀ ପକେଇ ଏଠିକି କାହିଁକି ଆସିଚୁ ? ଯା ଘର କଣରେ ବୋହୂ ହେଇ ବସ୍ । ସିଏ ସ୍ତ୍ରୀଙ୍କୁ କହିଲେ—ତୁ ଖଦଡ଼ କନା ପିନ୍ଧି ହାତରେ ଝୁଲି ଧରି ଏ କଚେରୀକୁ ଆସିଥିଲୁ କାହିଁକି ? ଯା'ଘର ଘର ବୁଲି ଚାଉଳମୁଠି ଭିକ ମାଗ—ଏଇପରି ଅନେକ ଅନେକ ବାକ୍ୟବାଣର ପ୍ରୟୋଗ । ଅନ୍ୟମାନେ ନୀରବରେ ଏ ଦୃଶ୍ୟ ଦେଖୁଥା'ନ୍ତି । କିଛି ସମୟ ପାଇଁ ଭୋଟ୍‌ଗ୍ରହଣ ବନ୍ଦ ହୋଇଯାଇ ପରେ ପୁଣି ଯଥାରୀତି ଭୋଟ୍‌ଗ୍ରହଣ ଚାଲିଲା ।

## ଶ୍ରୀମତୀ ସିହ୍ନା

ଭୋଟ ଗ୍ରହଣର ସପ୍ତମ ବା ଶେଷଦିନ । ଚାରିଟାବେଳେ ଭୋଟ ଗ୍ରହଣ ଶେଷ ହେବ, ପ୍ରାୟ ସାଢ଼େ ତିନିଟାବେଳେ ଗୋଟିଏ ହୁଡ୍‌ବାଲା ମଟର୍‌କାର୍ ଆମ କ୍ୟାମ୍ପର କିଛି ଦୂରରେ ଆସି ଅଟକିଲା । ଦରଜାଖୋଲି ଜଣେ ଶିକ୍ଷିତା ସମ୍ଭ୍ରାନ୍ତ ତରୁଣୀ କାର୍‌ରୁ ଓହ୍ଲାଇଲେ—ନିଶ୍ଚିତ ଭାବେ ସେ ଜଣେ ଅଣଓଡ଼ିଆ—ସେଠି କାହାକୁ କ'ଣ ସେ କହିବେ, କିଛି ଯେମିତି ବୁଝିପାରୁ ନ ଥା'ନ୍ତି । କିଛିଟା ସଙ୍କୋଚଭାବ ନେଇ ମୁଁ ଟିକେ ଆଗେଇ ଯାଇ ଜାଣିଲି, ସେ ହରିଚନ୍ଦ୍ର ରେଭେନ୍‌ସା କଲେଜର ଇଂରାଜୀ ପ୍ରଫେସର ଶ୍ରୀଯୁକ୍ତ ସିହ୍ନାଙ୍କ ସହଧର୍ମିଣୀ । ପ୍ରଫେସର ସିହ୍ନା ବିହାରର ବାସିନ୍ଦା—ରେଭେନ୍‌ସା କଲେଜରେ ଯୋଗ ଦେବାର ଅଳ୍ପକାଳ ପରେ ନିଜର ଭଦ୍ର ମାର୍ଜିତ ଓ ଅତି ଉତ୍ତମ ବ୍ୟବହାର ଯୋଗୁ ସେ ବେଶ୍ ଲୋକପ୍ରିୟ ହୋଇ ପାରିଥିଲେ । ପୁଣି କଲେଜ ଓ କଟକ ସହରର କ୍ରୀଡ଼ାକ୍ଷେତ୍ରରେ ତାଙ୍କର ସକ୍ରିୟ ସହଯୋଗ ରହିଥିଲା । ଶ୍ରୀମତୀ ସିହ୍ନାଙ୍କୁ ମଧ୍ୟ ମୁଁ ବିଭିନ୍ନ କ୍ରୀଡ଼ାଙ୍ଗନରେ ଦେଖିଚି । ମୁଁ ତାଙ୍କୁ ଯାଇ ନମସ୍କାର ଜଣାଇଲି ପଚେ ସେ ମତେ କହିଲେ—କଟକ ସହର ଭୋଟର ଲିଷ୍ଟ୍‌ରେ ସେ ତାଲିକା ଭୁକ୍ତ ହୋଇଚନ୍ତି । ସେ

ଭୋଟ ଦେବାପାଇଁ ଏଠିକି ଆସିଚନ୍ତି । ମୁଁ ତାଙ୍କୁ ଏଥିରେ ସାହାଯ୍ୟ କରିପାରିଲେ ସେ ଖୁସି ହେବେ । ସରଳାଦେବୀଙ୍କ କ୍ୟାମ୍ପ କୋଉଠି ସେ ଜାଣିବାକୁ ଚାହିଁଲେ । ଏକଥା ଶୁଣି ମୁଁ ନିଜେ ଖୁସିରେ ଯାଇ ସେ ଭୋଟ୍ ଦାନ କରିବାର ସମସ୍ତ ବ୍ୟବସ୍ଥା ଯଥା ସମୟରେ ସମ୍ପନ୍ନ କରିଦେଲି । ଭୋଟ ଦେଇସାରି ସେ ଗାଡ଼ିପାଖକୁ ଫେରିଲେ । ମୁଁ ତାଙ୍କୁ ବିଦାୟ ଦେବା ପାଇଁ ତାଙ୍କ ସହିତ ଗାଡ଼ିପାଖକୁ ଆସିଲି । ସେ ବିଦାୟ ନେଇ ଚାଲିଗଲେ । ମୋ' ମନରେ ଏଇ ଧାରଣାଟି ଜାଗ୍ରତ ହେଲା ଯେ, ବିହାର ପ୍ରଦେଶର ଜଣେ ଭଦ୍ରମହିଳା ଦେବୀଙ୍କ କ୍ୟାମ୍ପ୍ ଖୋଜି ଖୋଜି ଆସି ଯେତେବେଳେ ହଳଦିଆ ବାକ୍ସରେ ଭୋଟ ଦେଇଗଲେ, ଏ କଟକ ସହରର ଭୋଟରମାନେ କ'ଣ ଏତେ ଅବିବେକୀ ଯେ ସେମାନେ କଂଗ୍ରେସକୁ ଭୋଟ ଦେବେ ନାହିଁ ?

ନିର୍ବାଚନ ଶେଷ ହେଲା । ଫଳ ଘୋଷଣା କରାଗଲା । କଂଗ୍ରେସ୍ ଜିତିଲା, ଦେବୀ ଓଡ଼ିଶାର ସର୍ବପ୍ରଥମ ଆସେମ୍ବ୍ଲିକୁ ନିର୍ବାଚିତା ହେଲେ । ଅବଶ୍ୟ ଭୋଟ୍‌ର ବ୍ୟବଧାନ ଥିଲା ମାତ୍ର ଦୁଇହଜାର । ଏ ନିର୍ବାଚନର ଫଳାଫଳ ପାଇଁ ଆମମାନଙ୍କର ଆଶା ଆକାଂକ୍ଷା କ'ଣ ଥିଲା ତାହା ଭିନ୍ନ କଥା । କିନ୍ତୁ ନିର୍ବାଚନ ପ୍ରକ୍ରିୟା ଆରମ୍ଭରୁ ନିର୍ବାଚନ ଯେପରି ବିକଟଭାବରେ ଚାଲିଲା, ସାହି ସାହିରେ ବିଶେଷତଃ କେତେକ ନିର୍ଦ୍ଦିଷ୍ଟ ସାହି ବସ୍ତିରେ ଯେପରି ଟଙ୍କା କାରବାର, ଭୋଟ ଖର୍ଦ୍ଦି, ପୁଣି ଜଣେ କାଣ୍ଡିଡେଟ ବା ପ୍ରାର୍ଥୀ ଜଣେ ବିଶିଷ୍ଟ ଶିଳ୍ପପତିଙ୍କ ଏକ ଡାକବଙ୍ଗଳାରେ ସମସ୍ତ ପ୍ରକାର ଦୈହିକ ଆମୋଦ ପ୍ରମୋଦ ଉପାଦାନ ସହ ରାତ୍ରିଯାପନ ବ୍ୟବସ୍ଥା କରିଦେବାର ବିନିମୟରେ ତାଙ୍କ ଜରିଆରେ ପାଞ୍ଚଶହ ଭୋଟରଙ୍କ ସଲିଡ୍ ଭୋଟ୍‌ଲାଭ ଓ ଭୋଟ୍ ଗ୍ରହଣ କେନ୍ଦ୍ରରେ ଖୋଲାଖୋଲି ଭାବେ ଖାଦ୍ୟପେୟ ଦ୍ୱାରା ଆପ୍ୟାୟନ ଆଦି ଅପକର୍ମମାନ ଯେ, ସମ୍ଭବ ହୋଇପାରେ, ଏକଥା ମୁଁ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନ ଥିଲି । ଗଣତନ୍ତ୍ର ପଦ୍ଧତିରେ ନିର୍ବାଚନର ଅର୍ଥ ମୋର ସେ ବୟସରେ ମୁଁ ବୁଝିଥିଲି ଇଂଲଣ୍ଡ ଓ ଆମେରିକା ପ୍ରଭୃତି ଦେଶମାନଙ୍କରେ ପ୍ରଚଳିତ ନିଷ୍କଳଙ୍କ ପଦ୍ଧତିରେ ନିର୍ବାଚନ । ତେବେ ଏ ଘଟଣାରେ ମୁଁ ହତୋତ୍ସାହ ନ ହୋଇ ମନରେ ଏଇ ଆଶ୍ୱାସନା ଆଣିଥିଲି ଯେ, ଯେତେଦିନ ଯାଏ ଏ ଦେଶରେ ବ୍ରିଟିଶ୍ ଶାସନ ଚାଲିଥିବ, ସେ ପର୍ଯ୍ୟନ୍ତ ଏ କଳଙ୍କିତ ବ୍ୟବସ୍ଥା ଦୂରହୋଇ ପାରିବ ନାହିଁ । ଦେଶ ସ୍ୱାଧୀନ ହୋଇଗଲା ପରେ ଏ ସବୁର ଚିହ୍ନବର୍ଣ୍ଣ ସବୁ ଲିଭେଇଯିବ । ଏହା ଯଦି ସମ୍ଭବ ନ ହୁଏ, ତା'ହେଲେ ଊଣେଇଶ' ଛତିଶ/ସଇଁତିରିଶ କଟକ ସହର ମହିଳା ନିର୍ବାଚନ ମଣ୍ଡଳୀର

ନିର୍ବାଚନର ପ୍ରଥମ ସେଉଡକରେ ଆବଦ୍ଧ ନ ରହି ତାହାର ପରବର୍ତ୍ତୀ ନିର୍ବାଚନ ସବୁକୁ ସଂକ୍ରମିତ ହେବ ।

ଦେଇ ଦୁଇ ହଜାର ଭୋଟ୍‌ରେ ଜିତିଲେ । ହୁଏତ ଯଦି ଏମିତି ହୋଇଥା'ନ୍ତା, ଦେଇ ମାତ୍ର ଗୋଟିଏ ଭୋଟ୍‌ରେ ଜିତିଥା'ନ୍ତେ—ତେବେ କଂଗ୍ରେସ ଦଳ ଓ ନିଜେ ଦେଇ ହୁଏତ ଦୁଃଖ ଓ ଶୋଚନାରେ ଭାଙ୍ଗି ପଡ଼ିଥା'ନ୍ତେ । କିନ୍ତୁ ମୁଁ ? ସେଦିନ କଟେଜ୍ ହତାରେ ମୋ' ଉପସ୍ଥିତିରେ ଯେଉଁ ଲିଲ—ପିଲ ପ୍ରସଙ୍ଗଟି—ଘଟିଗଲା, ସେ ମୁସଲମାନ ଯୁବକଟି ଯେମିତି ଛଳନାବିହୀନ ନିବେକାର ଚିତ୍ତରେ ତା' ମା'କୁ କହିଥିଲା ହଳଦିଆ ବାକ୍ସରେ ଭୋଟ୍‌ଦେବାକୁ, ସେଥିରୁ ସୂତ୍ର ଗ୍ରହଣ କରି ମୁଁ ଏଇ ସିଦ୍ଧାନ୍ତରେ ପହଞ୍ଚିଥା'ନ୍ତି ଯେ, ଦେଇ ଯେଉଁ ଗୋଟିକ ଭୋଟରେ ଜୟଲାଭ କଲେ, 'ସେଇ' ଭୋଟ୍‌ଟି ଦେଇଥିଲେ ସେ ବୟସ୍କା ମୁସଲମାନ ମହିଳା—ଆଉ ସେ ଭୋଟ୍‌ଟି ହେଉଛି ବ୍ରିଟିଶ ସରକାର ଏ ଦେଶ ଛାଡ଼ିଯିବା ପୂର୍ବରୁ ଯେଉଁ ସାମ୍ପ୍ରଦାୟିକତାର ଲଗାମି ସୃଷ୍ଟି କରୁଛନ୍ତି, ତାକୁ ବ୍ୟର୍ଥ କରିବା ପାଇଁ ଏକ ଡିସାଇଡ଼ିଙ୍ଗ୍ ଫ୍ୟାକ୍ଟର୍—ତା' ବିରୁଦ୍ଧରେ ଏକ ନିର୍ମମ ଉପହାସ ।

## ଓଡ଼ିଶାରେ ଭାରତୀୟ ଜାତୀୟ କଂଗ୍ରେସର ପ୍ରଥମ ଅଧିବେଶନ

ଉଣେଇଶିଶହ ଛଇଁତିରିଶ ମସିହା । ସାଧାରଣ ନିର୍ବାଚନରେ କଂଗ୍ରେସ ଓଡ଼ିଶାରେ ଜୟଯୁକ୍ତ ହୋଇଥାଏ । ଏକଥା ଠିକ୍ ଯେ, ଦେଇଙ୍କ ନିର୍ବାଚନରେ ମୁଁ ସମ୍ପୂର୍ଣ୍ଣ ରୂପେ ନିଜକୁ ମିଶାଇଦେଇଥିଲି । ଏହାପରେ କଂଗ୍ରେସ ପକ୍ଷରୁ ମନ୍ତ୍ରି-ମଣ୍ଡଳ ଗଢ଼ାହେବାର କଥା । କିନ୍ତୁ ଗୋଟିଏ ଘଟଣା ନେଇ ମୋ' ମନ ସ୍ଥିର ରହୁ ନ ଥାଏ । ଓଡ଼ିଶା କଂଗ୍ରେସର ଦୁଇ ତୁଙ୍ଗ ନେତା ପଣ୍ଡିତ ନୀଳକଣ୍ଠ ଦାସ ଓ ପଣ୍ଡିତ ଗୋଦାବରୀଶ ମିଶ୍ର ନିର୍ବାଚନରେ ଜୟଯୁକ୍ତ ହୋଇଥିଲେ ହେଁ ତାଙ୍କୁ ମନ୍ତ୍ରିମଣ୍ଡଳରେ ସ୍ଥାନ ଦିଆଗଲା ନାହିଁ । ଏହା ଅବଶ୍ୟ କଂଗ୍ରେସର ଆଭ୍ୟନ୍ତରୀଣ କଥା । ମୁଁ ଯେ. ଦେଇଙ୍କ ଇଲେକ୍‌ସନରେ ଜଣେ କର୍ମୀ ଥିଲି, ତାହା ମୋର ତାଙ୍କ ପରିବାର ସହିତ ବ୍ୟକ୍ତିଗତ ସମ୍ପର୍କ ଯୋଗୁ । ତଥାପି ଏ ଦୁଇନେତା ଇଲେକ୍‌ସନ ପରେ କଂଗ୍ରେସଠାରୁ ବିଚ୍ଛିନ୍ନ ହୋଇ ରହିବା ଯୋଗୁ ମୁଁ ବେଳେ-ବେଳେ ବ୍ୟଥିତ ହୋଇ ପଡ଼ୁଥିଲି । କେବଳ ଗୋପବନ୍ଧୁଙ୍କ ପଞ୍ଚସଖା ମଧ୍ୟରୁ ଏ ଦୁହେଁ ଦୁଇ ପ୍ରମୁଖ ସଖା ଥିଲେ ବୋଲି ନୁହେଁ, ସେମାନଙ୍କର ସାହିତ୍ୟିକ କୃତିଯୋଗୁ ସେମାନେ ଏ ଜାତିର ଚିରନମସ୍ୟ ହୋଇ ରହିବେ । ମୁଁ ଯେତେ-ବେଳେ ନିମ୍ନ ପ୍ରାଇମେରୀ ବିଦ୍ୟାଳୟର ଛାତ୍ର, ବିଦ୍ୟାଳୟକୁ ସରକାରଙ୍କଠାରୁ ଦୁଇଖଣ୍ଡି ପୁସ୍ତକ ଆସିଲା । ପୁସ୍ତକର ଆକାର ଏ ପର୍ଯ୍ୟନ୍ତ ମୋର ମନେ ଅଛି ।

ରଯ୍ୟାଲ୍ ସାଇଜ୍ ଗାଢ଼ ନୀଳରଙ୍ଗର ବନ୍ଧେଇ ପୁସ୍ତକ । ଗୋଟିଏ "ପିଲାଙ୍କ ରାମାୟଣ" ଓ ଅନ୍ୟଟି "ପିଲାଙ୍କ ମହାଭାରତ" । ଦୁଇଟିଯାକ ଗଦ୍ୟଲେଖା । ଲେଖକ ପଣ୍ଡିତ ନୀଳକଣ୍ଠ ଦାସ । ଆମ ଶିକ୍ଷକ ସେଥିରୁ ପଢ଼ି ଆମକୁ ଶୁଣାନ୍ତି । ଏତେ ସରଳ ସୁନ୍ଦର ପ୍ରାଣସ୍ପର୍ଶୀ ଲେଖା କୋଉଠି ଟିକିଏ ହେଲେ ଅବୋଧ କି ଦୁର୍ବୋଧ ନୁହେଁ । ବହି ଦୁଇଟିର କଥାସ୍ରୋତ ସ୍ୱଚ୍ଛ ନିର୍ଝରିଣୀ ପରି ଗଡ଼ିଯାଏ । ମୁଁ ସେଇଦିନୁ ପଣ୍ଡିତ ମହାଶୟଙ୍କୁ ଜାଣେ । ପୁଣି ଉଣେଇଶ' ତିରିଶି ମସିହାରେ ପୁରୀଠାରେ ଭାରତୀୟ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେବାର ସ୍ଥିରୀକୃତ ହେଲା । ମୁଁ ସେଇବର୍ଷ ମେଟ୍ରିକ୍ ପଢ଼ିବା ପାଇଁ କଟକ ଆସିଥାଏ । ପଣ୍ଡିତ ନୀଳକଣ୍ଠ ସେତେବେଳେ ଓଡ଼ିଶା କଂଗ୍ରେସର ସଭାପତି ଥିଲେ । ଭାରତୀୟ ଜାତୀୟ କଂଗ୍ରେସର ଏଇ ବାର୍ଷିକ ଅଧିବେଶନରେ ସ୍ୱେଚ୍ଛାସେବକ ହେବାପାଇଁ ମୁଁ ତାଙ୍କୁ ଦେଖାକରି ମୋର ନାମ ତାଲିକାଭୁକ୍ତ କରିଆସିଥିଲି ।

**ଏକ ଲକ୍ଷ ଟଙ୍କା କୁଆଡେ଼ ଗଲା ?**

ଶୁଣାଯାଏ ଏଇ ଅଧିବେଶନ ପାଇଁ ସେତେବେଳର ଓଡ଼ିଶା କଂଗ୍ରେସ ଲକ୍ଷାଧିକ ଟଙ୍କା ଚାନ୍ଦା ସଂଗ୍ରହ କରିଥିଲେ । ପୁରୀ ମହୋଦଧି କୂଳରେ ଏଇ ଅଧିବେଶନ ଅନୁଷ୍ଠିତ ହୋଇଥା'ନ୍ତା । ସମସ୍ତ ପ୍ରଦେଶ ବିଶେଷତଃ ପୁରୀ, କଟକ, ବାଲେଶ୍ୱର ଓ ବ୍ରହ୍ମପୁର ଆଦି ସହରମାନଙ୍କରେ ଉତ୍ସାହର ସୀମା ନ ଥିଲା । କିନ୍ତୁ ଦୁର୍ଭାଗ୍ୟର ବିଷୟ, କୌଣସି ଏକ କାରଣରୁ ଗଭର୍ଣ୍ଣମେଣ୍ଟ ଜାତୀୟ କଂଗ୍ରେସକୁ ବେଆଇନ୍ ଘୋଷଣା କରିଦେଲେ ଓ ସଭାପତିଙ୍କ ସହିତ ଅନ୍ୟ କେତେକ ନେତାଙ୍କୁ ଅଟକବନ୍ଦୀ କରି ରଖିଲେ । ଅଧିବେଶନ ହୋଇପାରିଲା ନାହିଁ । ସମସ୍ତ ଦେଶପ୍ରେମୀ ଓଡ଼ିଆମାନଙ୍କ ପାଇଁ ଏହା ନିଶ୍ଚିତଭାବେ ଏକ ବଜ୍ରଘାତ । କିନ୍ତୁ ମୁଁ ଆଜି ଏତେଦିନ ପରେ ଅତି ଦୁଃଖର ସହିତ ଏଠି ଉଲ୍ଲେଖ କରୁଛି ଯେ, ଏଇ ଅଧିବେଶନ ସଙ୍କାନ୍ତୀୟ ଏକ ଅତି ନିନ୍ଦିତ ଓ ଘୃଣ୍ୟ ଘଟଣା ଘଟିଗଲା । ଘଟଣାଟି ହେଲା—ଅଧିବେଶନ ପାଇଁ ଯେଉଁ ଲକ୍ଷାଧିକ ଟଙ୍କା ଚାନ୍ଦା ସଂଗ୍ରହ କରାଯାଇଥିଲା, ସେ ଟଙ୍କା କାହା ପାଖରେ କିପରି ଭାବେ ରହିଲା, ତାହାର କିଛି ହିସାବ ମିଳିଲା ନାହିଁ ଓ ଏ ସମ୍ପର୍କରେ ପ୍ରକାଶ୍ୟରେ କେହି କିଛି କହିଲେ ନାହିଁ । ନିଜେ କଂଗ୍ରେସର ସଭାପତି ପଣ୍ଡିତ ନୀଳକଣ୍ଠ ଦାସ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ଯେ, ଅଧିବେଶନ ବେଆଇନ୍ ଘୋଷିତ ହେବା ପରେ ସେ ଜେଲ୍‌ରେ ବନ୍ଦୀ ହୋଇ ରହିଲେ—ଏ ଟଙ୍କା କଥା ସେ କିଛି ଜାଣନ୍ତି ନାହିଁ । ···ଏହାଠାରୁ ବଳି ମର୍ମନ୍ତୁଦ ଓ ଦୁଃଖଦାୟକ ଘଟଣା ଆଉ କ'ଣ ବା ହୋଇପାରେ !

## ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ—ଭାରତ ଆଇନ୍ ଓ Govt. of India Act ର ଡେସ୍ପାନବେ ଧାରା

ଊଣେଇଶ' ଛତିଶ ଇଲେକ୍‌ସନରେ ଭାରତୀୟ ଜାତୀୟ କଂଗ୍ରେସ ଓଡ଼ିଶା, ବିହାର, ଯୁକ୍ତପ୍ରଦେଶ (ଉତ୍ତରପ୍ରଦେଶ) ବମ୍ବେ (ମହାରାଷ୍ଟ୍ର) ଓ ଗୁଜୁରାଟ୍ ସେଣ୍ଟ୍ରାଲ୍ ପ୍ରଭିନ୍‌ସେସ (ମଧ୍ୟପ୍ରଦେଶ) ଓ ମାଡ୍ରାସ (ତାମିଲନାଡ଼ୁ ଓ ଆନ୍ଧ୍ର) ପ୍ରଭୃତିରେ ମନ୍ତ୍ରିମଣ୍ଡଳ ଗଢ଼ାହେବାର କଥା । କିନ୍ତୁ ଏଇଠି ଏକ ବାଧାସୃଷ୍ଟି ହେଲ । ବ୍ରିଟିଶ ପାର୍ଲାମେଣ୍ଟରେ ଗୃହୀତ ଭାରତ ଆଇନ୍ ଅନୁସାରେ ଭାରତରେ ଏହି ନିର୍ବାଚନ ହୋଇଚ । ସେଇ ଆଇନ୍‌ର ଡେସ୍ପାନବେ ଧାରା ଅନୁସାରେ ବ୍ୟବସ୍ଥା ରହିଚ ଯେ, ଯେଉଁ ମନ୍ତ୍ରିମଣ୍ଡଳ ଗଢ଼ାହେବ, ଶାସନ ପରିଚାଳନା ପାଇଁ ସେମାନଙ୍କର ଯଥାବିଧି କ୍ଷମତା ଅବଶ୍ୟ ରହିବ । ଏଇ କ୍ଷମତା ପରିସରରେ ମନ୍ତ୍ରୀମାନଙ୍କର ଡିସ୍‌କ୍ରିସନ୍, ଇଣ୍ଡିଭିଜୁଆଲ୍ ଜଜ୍‌ମେଣ୍ଟ ଓ ମିନିଷ୍ଟିରିଆଲ୍ ଆଡ୍‌ଭାଇଜ୍ ପ୍ରଭୃତି ରହିଚ । କିନ୍ତୁ ଗଭର୍ଣ୍ଣର ଯଦି ଚାହିଁବେ, ତେବେ ସେ ମନ୍ତ୍ରି ପରିଷଦକୁ ଏଇ ଧାରା ଅନୁସାରେ ଏକାବେଳେକେ ବରଖାସ୍ତ କରି ଶାସନ କ୍ଷମତା ନିଜ ହାତକୁ ନେଇପାରିବେ ଫଳରେ ପ୍ରଦେଶରେ ମନ୍ତ୍ରିଶାସନ ଲୋପ ପାଇ ଗଭର୍ଣ୍ଣର ଶାସନ ଚାଲିବ । ବର୍ତ୍ତମାନ୍ ପରି ସେତେବେଳେ ପ୍ରେସିଡେଣ୍ଟ ରୁଲ୍‌ର ପ୍ରଚଳନ ନ ଥିଲା । ଗଭର୍ଣ୍ଣର ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟ ଦ୍ୱାରା ସିଧାସଳଖ ନିଯୁକ୍ତ ହେଉଥିବାରୁ ଗଭର୍ଣ୍ଣର ନିଜ କ୍ଷମତାରେ ପ୍ରଦେଶର ଶାସନଭାର ନିଜ ହାତକୁ ନେଇ ପାରୁଥିଲେ । ଗାନ୍ଧିଜୀ କିନ୍ତୁ ଗଭର୍ଣ୍ଣମେଣ୍ଟକୁ ଜଣାଇଦେଲେ ଯେ, ଡେସ୍ପାନବେ ଧାରାର ଏଇ ବ୍ୟବସ୍ଥା ରହିଥିବା ଯୋଗୁ କଂଗ୍ରେସ ସଂଖ୍ୟାଗରିଷ୍ଠ ହୋଇଥିଲେ ହେଁ ମନ୍ତ୍ରିମଣ୍ଡଳ ଗଠନ କରିବ ନାହିଁ, ବରଂ ବିଧାନ ସଭାରୁ କଂଗ୍ରେସ ଇସ୍ତଫାଦେଇ ବାହାରି ଆସିବ । ଏହାର ଉତ୍ତରରେ ଗଭର୍ଣ୍ଣର ଜଣାଇଦେଲେ ଯେ, କଂଗ୍ରେସ ପରି ସରକାର ମଧ୍ୟ କଥାକଥାକେ ଡେସ୍ପାନବେ ଧାରା ପ୍ରୟୋଗ କରିବାକୁ ଚାହାଁନ୍ତି ନାହିଁ । କିନ୍ତୁ ଏ ଆଇନ୍ ଯେତେବେଳେ ବ୍ରିଟିଶ୍ ପାର୍ଲିଆମେଣ୍ଟରେ ଗୃହୀତ ହୋଇଚ, ଭାରତ ସରକାର ଏଥିରେ ହସ୍ତକ୍ଷେପ କରିପାରିବେ ନାହିଁ । ଏହିପରି-ଭାବେ କଂଗ୍ରେସ ଓ ଓଡ଼ିଶାର ଗଭର୍ଣ୍ଣରଙ୍କ ମଧ୍ୟରେ ବିଚାର-ଆଲୋଚନା, ତର୍କ-ବିତର୍କ ଚାଲିଲା । ଊଣେଇଶ ସଇଁତିରିଶି ମସିହା ଜାନୁଆରୀ ମାସ ଭିତରେ ନୂତନ ସରକାର ଗଠିତ ହେବା କଥା । କିନ୍ତୁ ଡେସ୍ପାନବେ ଧାରା ସଂକ୍ରାନ୍ତ ନିଷ୍ପତ୍ତି ହୋଇପାରୁନାହିଁ । ଓଡ଼ିଶା ବିଧାନ ସଭାକୁ ପାରଳା ମହାରାଜାଙ୍କ ଦଳର କେତେକ ସଭ୍ୟ ନିର୍ବାଚିତ ହୋଇ ଆସିଥା'ନ୍ତି । ଆଉ କାଳବିଳମ୍ବ ନ କରି ଗଭର୍ଣ୍ଣର ପାରଳା ମହାରାଜଙ୍କୁ ଶାସନ-କ୍ଷମତା ପ୍ରଦାନ କଲେ । ମହାରାଜା ଏପ୍ରିଲ୍‌ମାସରେ ତାଙ୍କର ନେତୃତ୍ୱରେ

ଏକ ତିନିଜଣିଆ ସଂଖ୍ୟାଲଘୁ ମନ୍ତ୍ରିମଣ୍ଡଳ ଗଠନ କଲେ । ଅନ୍ୟ ଦୁଇ ଦୁଇ ଜଣ ମନ୍ତ୍ରୀ ହେଲେ ଶ୍ରୀ ଗୋଦାବରୀଶ ପଟ୍ଟନାୟକ ଓ ଶ୍ରୀ ଲତିଫୁର୍ ରହେମନ୍ । ଏ ଭେଟୋଦାନବେ ଧାରା ବିବାଦର ସମାଧାନ ପାଇଁ ଗଭର୍ଣ୍ଣର ଓ କଂଗ୍ରେସ ମଧ୍ୟରେ ପାଖରେ ଆଲୋଚନା ଚାଲିଥାଏ । ମହାତ୍ମାଗାନ୍ଧୀ ସମାଧାନର ଏକ ସୂତ୍ର ବାହାର କଲେ । ସେ କହିଲେ—ଏଇ ପ୍ରଶ୍ନ ଉପରେ ଆମେ ତୁମ ସରକାରଙ୍କ ହସ୍ତକ୍ଷେପ ଚାହୁଁନାହୁଁ । ଆମେ ଚାହୁଁ ଏ ଜେଣ୍ଟଲ୍‌ମ୍ୟାନ୍ ଏଗ୍ରିମେଣ୍ଟ । ଭେଟୋଦାନବେ ଧାରା ପ୍ରୟୋଗ ନ କରିବା ପାଇଁ ଗଭର୍ଣ୍ଣର ଏକ ମୌଖିକ ପ୍ରତିଶ୍ରୁତି ଦିଅନ୍ତୁ, ଆମେ ତାକୁ ଗ୍ରହଣ କରିବୁ । ତାହାହିଁ ହେଲା । ଜୁନ୍‌ମାସ ମଧ୍ୟଭାଗରେ ପାରଲା ମନ୍ତ୍ରିପରିଷଦ ବିଦାୟ ନେଲେ ।

## ସ୍ୱତନ୍ତ୍ର ଓଡ଼ିଶାର ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ

ଓଡ଼ିଶା ଓ ଅନ୍ୟାନ୍ୟ ପ୍ରଦେଶମାନଙ୍କରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା । ଓଡ଼ିଶାରେ ଗଠିତ ହେଲା ଏକ ତିନିଜଣିଆ ମନ୍ତ୍ରିମଣ୍ଡଳ । ସେତେବେଳେ ଚିଫ୍‌ମିନିଷ୍ଟର ବା ମୁଖ୍ୟମନ୍ତ୍ରୀ ଶବ୍ଦର ପ୍ରୟୋଗ ନ ଥିଲା । ଚିଫ୍ ମିନିଷ୍ଟର୍‌ଙ୍କୁ ଇଂଲଣ୍ଡରେ କୁହାଯାଉଥିଲା—ପ୍ରିମିଅର୍, ଓଡ଼ିଆରେ 'ପ୍ରଧାନମନ୍ତ୍ରୀ' । ଓଡ଼ିଶାରେ ପ୍ରିମିଅର୍ ହେଲେ ଶ୍ରୀ ବିଶ୍ୱନାଥ ଦାସ । ଅନ୍ୟ ଦୁଇଜଣ ମନ୍ତ୍ରୀ ଶ୍ରୀ ବୋଧରାମ ଦୁବେ ଓ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ । ଗଣତାନ୍ତ୍ରିକ ପଦ୍ଧତିରେ ପ୍ରଥମ ନିର୍ବାଚନ ଓ ପ୍ରଥମ ମନ୍ତ୍ରିମଣ୍ଡଳର ଗଠନ । ଏଥିପାଇଁ ସମସ୍ତ ପ୍ରଦେଶରେ ଆନନ୍ଦର ଲହରି ଖେଳିଯାଇଚି । ଜଣେ ପୁସ୍ତକ ପ୍ରକାଶକ ତ ଏଥିରେ ଉତ୍ସାହିତ ହୋଇ ଗୋଟିଏ କ୍ୟାଲେଣ୍ଡର ପ୍ରକାଶ କଲେ । କ୍ୟାଲେଣ୍ଡର୍‌ରେ ଓଡ଼ିଶାରେ ତିନି ନୂଆ ମନ୍ତ୍ରିଙ୍କର ତିନିଗୋଟି ଆଲୋକଚିତ୍ର ଶୋଭା ପାଉଥିଲା । କ୍ୟାଲେଣ୍ଡର୍ ଖଣ୍ଡିଏ ହସ୍ତଗତ କରିବାପାଇଁ ପ୍ରକାଶକଙ୍କ ବ୍ୟବସାୟ ପୀଠରେ ବହୁଜନସମାଗମ ହୋଇଥିଲା । ଶ୍ରୀ ବିଶ୍ୱନାଥ ଦାସ ଗଞ୍ଜାମ ବ୍ରହ୍ମପୁରର, ଶ୍ରୀଯୁକ୍ତ ଦୁବେ ସମ୍ବଲପୁରର ଓ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ କଟକ ଜିଲ୍ଲାର ଅଧିବାସୀ ଥିଲେ । ଶ୍ରୀ ବିଶ୍ୱନାଥ ଦାସଙ୍କୁ ଜଣେ ବରିଷ୍ଠ କଂଗ୍ରେସ ନେତା ଓ ସୁବକ୍ତା ଭାବରେ ମୁଁ ଜାଣିଥିଲି । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଗଠନ ପୂର୍ବରୁ ଗଞ୍ଜାମଜିଲ୍ଲା ମାଡ୍ରାଜ ପ୍ରଦେଶ ସହିତ ସଂଯୁକ୍ତ ଥିଲା—ଶ୍ରୀଯୁକ୍ତ ଦାସ ତତ୍‌କାଳୀନ ମାଡ୍ରାଜ ବିଧାନସଭାର ଜଣେ ପ୍ରଥମ ଧାଡ଼ିର କାଉନ୍‌ସିଲର୍ ଥିବା କଥା ମଧ୍ୟ ମୁଁ ଜାଣିଥିଲି । ଶ୍ରୀଯୁକ୍ତ ଦୁବେ ଥିଲେ ଜଣେ ଜାତୀୟତାବାଦୀ ପ୍ରତିଷ୍ଠିତ ଆଇନ୍-ବ୍ୟବସାୟୀ । କଟକ ଜିଲ୍ଲା ବାଲିକୁଦା ଅଞ୍ଚଳ ନିବାସୀ ଶ୍ରୀଯୁକ୍ତ କାନୁନ୍‌ଗୋ ଏକ ଜମିଦାର ପରିବାରର ସନ୍ତାନ ଥିଲେ । ସେତେବେଳର ପ୍ରଥମଶ୍ରେଣୀ ଡେପୁଟି ମାଜିଷ୍ଟ୍ରେଟ୍ ଶ୍ରୀଯୁକ୍ତ ବାଳମୁକୁନ୍ଦ କାନୁନ୍‌ଗୋଙ୍କର

ସେ ଥିଲେ ଏକମାତ୍ର ପୁତ୍ର ଓ କଂଗ୍ରେସ ନେତ୍ରୀ, ତଥା ଓଡ଼ିଶାର ପ୍ରଥମ ମହିଳା ଏମ୍. ଏଲ୍. ଏ. ସରଳାଦେବୀଙ୍କର ଜ୍ୟେଷ୍ଠଭ୍ରାତା । କଟକ ସହରର ବାଖରାବାଦରେ ତାଙ୍କର ନିଜସ୍ୱ ବାସଭବନ ଥିଲା । କଟକ ସହରରେ ଓଡ଼ିଶା କଂଗ୍ରେସର ନିଜସ୍ୱ କାର୍ଯ୍ୟାଳୟ ସ୍ୱରାଜ୍ୟଆଶ୍ରମ ପ୍ରତିଷ୍ଠା ପୂର୍ବରୁ ଶ୍ରୀଯୁକ୍ତ କାନୁନ୍‌ଗୋଙ୍କର ଏଇ ବାଖରାବାଦ ବାସଭବନ କଂଗ୍ରେସର ଏକ ପୀଠ ରୂପେ ସ୍ଥାନ ପାଇଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଶା ବାହାରୁ ଯେତେବେଳେ କେହି କଂଗ୍ରେସ ନେତା କଟକ ଆସୁଥିଲେ, ସେ ଶ୍ରୀଯୁକ୍ତ କାନୁନ୍‌ଗୋଙ୍କର ଅତିଥି ହୋଇ ରହୁଥିଲେ । ଜଣେ ଅନୁରକ୍ତ କଂଗ୍ରେସ କର୍ମୀ ଓ ନେତାଭାବରେ ଶ୍ରୀଯୁକ୍ତ କାନୁନ୍‌ଗୋଙ୍କର ଜୀବନଯାତ୍ରାର ଗୋଟିଏ ଚିତ୍ର ମୁଁ ଏଠି ଉଲ୍ଲେଖ ନ କରି ରହିପାରୁନି । ଉଣେଇଶ’ ସର୍ତ୍ତିରିଶିରୁ ଆରମ୍ଭ କରି ଏ ଶତାବ୍ଦୀର ସପ୍ତମ ଦଶକ ପର୍ଯ୍ୟନ୍ତ ତାଙ୍କର ସୁବିସ୍ତୃତ କର୍ମମୟ ଜୀବନ କାଳରେ ପ୍ରଥମେ ଓଡ଼ିଶା ବିଧାନସଭା ଓ ପରେ ଦିଲ୍ଲୀ ପାର୍ଲାମେଣ୍ଟରେ କଂଗ୍ରେସ ଯେତେବେଳେ ଶାସନ କ୍ଷମତାରେ ରହିଚି, ସେତେବେଳେ ଶ୍ରୀଯୁକ୍ତ କାନୁନ୍‌ଗୋ ଜଣେ ମନ୍ତ୍ରୀ ଭାବରେ ଓ ପରେ ଦୁଇଟି ରାଜ୍ୟର ରାଜ୍ୟପାଳ ଭାବରେ ଅଧିଷ୍ଠିତ ରହି ନିଜର କର୍ମକ୍ଷେତ୍ରରୁ ବିଦାୟ ନେଇଚନ୍ତି । ସେ ବର୍ତ୍ତମାନ ପରଲୋକଗତ । ନୂତନ ମନ୍ତ୍ରିମଣ୍ଡଳ କାର୍ଯ୍ୟଭାର ଗ୍ରହଣ କଲାପରେ ସେମାନଙ୍କୁ ସମ୍ବର୍ଦ୍ଧନା ଜଣେଇବା ପାଇଁ କଟକ ଟାଉନ୍‌ହଲ୍‌ରେ ଏକ ସଭା ଅନୁଷ୍ଠିତ ହେଲା । ବିଭିନ୍ନ ବକ୍ତା ଓ ମନ୍ତ୍ରୀ ତିନିଜଣ ସେମାନଙ୍କର ଭାଷଣ ଦେଲେ । ଶ୍ରୋତାମାନଙ୍କ ଗହଣରେ ଟାଉନ୍‌ହଲ ଉଚ୍ଛୁଳି ପଡ଼ୁଥାଏ । ଶ୍ରୀ ବିଶ୍ୱନାଥ ଦାସ ଓ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଏଭଳି ରାଜନୈତିକ ସଭାରେ ଯାହା କହିବାର କଥା କହିଲେ । କିନ୍ତୁ ବୋଧରାମ ଦୁବେ ଯେପରିଭାବେ ତାଙ୍କ ଭାଷଣ ଆରମ୍ଭ କଲେ, ସେଥିରେ ସଭା ମଧ୍ୟରେ କିଛି ଗୁଞ୍ଜରଣ ଖେଳିଯାଇଥିଲା । ଭାଷଣ ଆରମ୍ଭରୁ ସେ କହିଲେ—ଏ ପର୍ଯ୍ୟନ୍ତ ଆମେ ଇଂରେଜମାନଙ୍କର ପ୍ରଜା ଥିଲୁ । ଏବେ ଆମେ ଆଉ ପ୍ରଜା ନ ରହି ରାଜା ହେଲୁ, ଏ ଦେଶରେ ରାଜା । ···ଓଡ଼ିଶାରେ ବିଧିବଦ୍ଧ ଭାବରେ କଂଗ୍ରେସ ଶାସନ ଚାଲିଲା । ମନେ ପଡ଼ୁଚି, ବିଶ୍ୱନାଥ ଦାସଙ୍କ ମନ୍ତ୍ରିମଣ୍ଡଳର ପ୍ରଥମ ଲୋକହିତକର କାର୍ଯ୍ୟଟି ହେଲା—ସେ ପର୍ଯ୍ୟନ୍ତ ପ୍ରଚଳିତ ମହାଜନୀ ସୁଧ ଆଇନ୍‌ରେ ଉଲ୍ଲେଖନୀୟ ସଂଶୋଧନ । ପ୍ରକୃତରେ ଏହାଦ୍ୱାରା ମହାଜନମାନଙ୍କର ଖାତକମାନଙ୍କୁ ଟଙ୍କା କରଜ ଦେଇ ସୁଧ ଉପରେ ସୁଧ ଆଦାୟ କରିବାର କୌଶଳ ପ୍ରାୟ ବନ୍ଦ ହୋଇଗଲା । ଏହାପରେ ଏଇ ମନ୍ତ୍ରିମଣ୍ଡଳ ଆଉ ଏକ ଉଲ୍ଲେଖନୀୟ କାର୍ଯ୍ୟ କଲେ—ଏହା ହେଲା—ଜମିବାଡ଼ି ଖର୍ଦ୍ଦି-ବିକ୍ରିରେ ଜମିଦାରମାନେ ନେଉଥିବା ରେସମ୍ ପ୍ରଥାର ଉଚ୍ଛେଦ ।

...ଉଦାହରଣ ସ୍ୱରୂପ, ଜଣେ କେହି କିଛି ଭୂ-ସମ୍ପତ୍ତି କ୍ରୟ କଲେ । ଧର ନିଆଯାଉ ଜମିର ମୂଲ୍ୟ ଏକଶହ ଟଙ୍କା । ଯିଏ ଜମି ବିକ୍ରି କଲେ ସେ ତାଙ୍କ ଟଙ୍କା ପାଇଲେ – ସବ୍ ରେଜିଷ୍ଟ୍ରାର୍ ଅଫିସ୍‌ରେ ବିକ୍ରି କବଲା ମଞ୍ଜୁରୀ ପ୍ରାପ୍ତ ହେଲା । କିନ୍ତୁ ପ୍ରଚଳିତ ଆଇନ୍ ଅନୁସାରେ ସମ୍ପତ୍ତିର କ୍ରେତା ସେ ଜମିର ଅଧିକାରୀ ହୋଇ-ପାରିବେ ନାହିଁ । ଏଥିପାଇଁ ତାଙ୍କୁ ଜମିଦାରଙ୍କ ଦ୍ୱାରସ୍ଥ ହୋଇ ଜମିର କ୍ରୟମୂଲ୍ୟ ଏକଶହ ଟଙ୍କାର ଏକ ଚତୁର୍ଥାଂଶ ପଚିଶ ଟଙ୍କା ଜମିଦାରଙ୍କ ଶିରସ୍ତାରେ ଜମା-ଦେବାକୁ ପଡ଼ିବ—ତା' ପରେ ଯାଇ କ୍ରେତା ଏ ଜମିର ଆଇନ୍-ସମ୍ମତ ଅଧିକାରୀ ହେବ । ପ୍ରକୃତରେ ଏଇ ପ୍ରଥାଟି କ୍ରେତାମାନଙ୍କୁ ଖୁବ୍ ବାଧୁଥିଲା । ଜମିଦାରମାନେ ଅବଶ୍ୟ ଏ ପ୍ରଥା ଉଚ୍ଛେଦ ହେବା ଦ୍ୱାରା ଉତ୍‌କ୍ଷିପ୍ତ ହୋଇ ଉଠିଥିଲେ । ନୂତନ ବିଧାନସଭା କାର୍ଯ୍ୟ କଟକ ରେଭେନ୍‌ସା କଲେଜ ହଲ୍‌ରେ ପରିଚାଳିତ ହେଉଥାଏ । ବାଚସ୍ପତି ଥିଲେ ବାଲେଶ୍ୱରର ଶ୍ରୀଯୁକ୍ତ ମୁକୁନ୍ଦପ୍ରସାଦ ଦାସ । ବିରୁଦ୍ଧ ଦଳର ସଭ୍ୟମାନଙ୍କ ଭିତରେ ଥିଲେ ପାରଳାର ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ଦେବ, କନିକାର ରାଜା ଶ୍ରୀ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେବ । କମ୍ୟୁନିଷ୍ଟ ବା ସାମ୍ୟବାଦୀ ଦଳର ସଭ୍ୟ ଥିଲେ—ଶ୍ରୀ ପ୍ରାଣନାଥ ପଟ୍ଟନାୟକ, ଶ୍ରୀ ଫକୀର ବେହେରା ଓ ଅନ୍ୟମାନେ । ଜଣେ ସ୍ୱାଧୀନ ସଭ୍ୟ ଥିଲେ ଶ୍ରୀ ଗିରିବର ଦାସ । ସେ ନିଜେ ଭାଷଣଦେବା ଅପେକ୍ଷା ଅନ୍ୟ କେହି ଭାଷଣ ଦେଲାବେଳେ ସେ ନିୟମିତଭାବେ ସେଥିରେ ବାଧା ସୃଷ୍ଟି କରି କିଛି ନା କିଛି ଆପତ୍ତି ଅଭିଯୋଗ କରୁଥିଲେ ।

## ପ୍ରିମିଅର ଓ ଗଭର୍ଣ୍ଣରଙ୍କ ସଂଘର୍ଷ

ଶ୍ରୀ ବିଶ୍ୱନାଥ ଦାସଙ୍କ ସରକାର ଗଠିତ ହେବାପରେ ଆଉ ଏକ ବିଘ୍ନ ସୃଷ୍ଟି ହେଲା । ଗଭର୍ଣ୍ଣର ହବାକ୍ ସାହେବ କିଛିଦିନ ଛୁଟି ନେଇଯିବାକୁ ବାହାରିଲେ । ତାଙ୍କ ସ୍ଥାନରେ ଯିଏ ଡିଭିଜନାଲ୍ କମିଶନ୍‌ର ଥିଲେ, ତାଙ୍କୁ ଅସ୍ଥାୟୀ ଗଭର୍ଣ୍ଣର ରୂପେ ନିଯୁକ୍ତ କରିବାର ପ୍ରସ୍ତାବ ଆସିଲା । ଏଥିରେ ପ୍ରିମିଅର ପ୍ରବଳ ପ୍ରତିରୋଧ କଲେ । ତାଙ୍କର ଯୁକ୍ତି ହେଲା ଯେ, ଯେଉଁ କମିଶନର ଆଜି ପର୍ଯ୍ୟନ୍ତ ତାଙ୍କ ସରକାରଙ୍କ ଅଧୀନରେ କାର୍ଯ୍ୟ କରୁଥିଲେ, ସେ କିପରି ଗଭର୍ଣ୍ଣର ହୋଇ ତାଙ୍କଠୁ ଉଚ୍ଚ ଆସନରେ ଯାଇ ବସିବେ । ଏକଥା ସେ ଗଭର୍ଣ୍ଣରଙ୍କୁ ଜଣାଇଦେଲେ ସତ, କିନ୍ତୁ ଉପର ମହଲରୁ କୌଣସି ନିଷ୍ପତ୍ତି ହେବାର କିଛି ସୂଚନା ମିଳୁ ନ ଥାଏ । କଂଗ୍ରେସ ପକ୍ଷରୁ ଏ ପାଖରେ କୁହାଗଲା ଯେ, ଆଉ ଡେରି ନ କରି ମନ୍ତ୍ରିମଣ୍ଡଳ ଏଇ "ଇସୁ" ଉପରେ ଚଞ୍ଚଳ ଇସ୍ତଫା ଦେଇଦେବା ଉଚିତ । ଇସ୍ତଫା ଦେବାର ଦିନ ପର୍ଯ୍ୟନ୍ତ ଧାର୍ଯ୍ୟ ହୋଇଗଲା । ପ୍ରିମିଅର ଶ୍ରୀଯୁକ୍ତ ବିଶ୍ୱନାଥ ଦାସ ସେତେବେଳେ ରହୁଥା'ନ୍ତି, ନିମଚଉଡ଼ି ନିକଟସ୍ଥ ପ୍ରିୟନାଥ ଭବନରେ । ସେଇଠି ଇସ୍ତଫା

ପ୍ରଦାନ କରି ଅନ୍ୟ ଦୁଇଜଣ ମନ୍ତ୍ରୀଙ୍କ ସହିତ ସ୍ୱରାଜ ଆଶ୍ରମକୁ ଯିବାର ପ୍ରସ୍ତାବ ହୋଇଥାଏ । ଇସ୍ତଫା ପ୍ରଦାନ ପରେ ତାଙ୍କୁ ଅଭିନନ୍ଦନ ଜଣାଇବା ପାଇଁ ଆମେମାନେ ପୁଷ୍ପଗଛ ଇତ୍ୟାଦି ହାତରେ ଧରି ତାଙ୍କ ବାସଭବନ ସମ୍ମୁଖରେ ସମସ୍ତେ ଯାଇଥାଉ । ଇସ୍ତଫା ଦେବା କର୍ମର ପ୍ରସ୍ତୁତି ଚାଲିଥାଏ, ଏତିକିବେଳେ ରାଜଭବନରୁ ସମ୍ବାଦ ଆସିଲା ଯେ, ଗଭର୍ଣ୍ଣର୍ ବର୍ତ୍ତମାନ ଛୁଟିରେ ଯାଉନାହାଁନ୍ତି । ଅତଏବ କମିଶନର ଅସ୍ଥାୟୀ ଗଭର୍ଣ୍ଣର ପଦରେ ରହିବାର ପ୍ରଶ୍ନ ଉଠୁନାହିଁ । ଏହାପରେ ଦାସ ମନ୍ତ୍ରିମଣ୍ଡଳୀଙ୍କ ଇସ୍ତଫା ଦେବା ପ୍ରଶ୍ନ ସମାପ୍ତି ଘଟିଲା ।

## ପଣ୍ଡିତ ନୀଳକଣ୍ଠ ପଣ୍ଡିତ ଗୋଦାବରୀଶ

## ଓ ଚତୁର୍ଥ ଦଶକରେ ଉତ୍ତର ଓଡ଼ିଶାରେ ଦୁର୍ଭିକ୍ଷ ଓ ୧୫୦୦୦ ମୃତ

ଏକଥା ଏଠି ଉଲ୍ଲେଖଯୋଗ୍ୟ ଯେ, ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶଙ୍କର କଂଗ୍ରେସ ସହିତ କୌଣସି ସମ୍ପର୍କ ରହିଲା ନାହିଁ । ଗୋପବନ୍ଧୁଙ୍କ ଯୁଗରେ ଯେଉଁ କେତେଜଣ ପ୍ରତିଭାବାନ୍ ବ୍ୟକ୍ତି ଭାରତର ମୁକ୍ତି ପାଇଁ ରାଜନୀତିରେ ଯୋଗଦାନ କରିଥିଲେ, ସେମାନଙ୍କ ମଧ୍ୟରେ ନୀଳକଣ୍ଠ ଓ ଗୋଦାବରୀଶ ଥିଲେ ଗୋପବନ୍ଧୁଙ୍କର ଅତି ନିକଟତମ ସହଯୋଗୀ । ଅଥଚ ଏ ଦୁହିଁଙ୍କର ସ୍ଥାନ କଂଗ୍ରେସ ତଥା ଦାସ ମନ୍ତ୍ରି ପରିଷଦରେ ରହିଲା ନାହିଁ । ଏ ଅବସ୍ଥା ଆଉ କେତେଦିନ ରହିବ, ସେ କଥା ଚିନ୍ତା କରିବା ଭଳି କୌଣସି ଉପାଦାନ ସେତେବେଳେ ଆମେ ଖୋଜି ପାଇଲୁ ନାହିଁ । ଏହାପରେ ତୃତୀୟ ଦଶକର ଶେଷ ଭାଗରେ ବିଶ୍ୱଯୁଦ୍ଧ ବିସ୍ତାର ଲାଭ କଲା । ସେତେବେଳେ ଭାରତରେ ବ୍ରିଟିଶ ସରକାର ଆଶା କରିଥିଲେ ଯେ, ଯେହେତୁ ମିତ୍ରଶକ୍ତି ଜର୍ମାନୀର ନାଜିବାଦ ବିରୋଧରେ ସଂଗ୍ରାମ କରୁଚନ୍ତି, ଭାରତୀୟ ଜାତୀୟ କଂଗ୍ରେସ ନିଶ୍ଚୟ ମିତ୍ରଶକ୍ତିର ଏ ଯୁଦ୍ଧକୁ ସମର୍ଥନ ଜଣାଇବେ । କିନ୍ତୁ ସ୍ୱୟଂ ମିତ୍ରଶକ୍ତି ଏକ ସାମ୍ରାଜ୍ୟବାଦୀ ଗୋଷ୍ଠୀ ବୋଲି କଂଗ୍ରେସ ଏ ଯୁଦ୍ଧକୁ ସମର୍ଥନ କରିବ ନାହିଁ ବୋଲି ସ୍ପଷ୍ଟ ଜଣାଇଦେଲା । ଏଥିରୁ ଏଇ ସୂଚନା ମିଳିଲା ଯେ, ଭାରତୀୟ ଜନସାଧାରଣ ଏ ଯୁଦ୍ଧକୁ ସମର୍ଥନ କରୁନାହାଁନ୍ତି । ଏଇ ଘଟଣାରେ ଭାରତ ସରକାର ନିଶ୍ଚିତଭାବେ ଏକ ଦ୍ୱନ୍ଦ୍ୱରେ ପଡ଼ିଲେ ସତ, କିନ୍ତୁ ଭାରତୀୟ-ମାନଙ୍କର ଜନମତ ନ ନେଇ ଏ ଯୁଦ୍ଧରେ ଭାରତର ସମର୍ଥନ ରହିଚି ବୋଲି ବ୍ରିଟିଶ ସରକାର ଏକତରଫା ଘୋଷଣା କରିଦେଲେ । ଏହାର ପ୍ରତିବାଦରେ ଊଣେଇଶିଶହ ସଇଁତିରିଶ ମସିହାରୁ ଚାଲିଆସିଥିବା ଦେଶର ସବୁ କଂଗ୍ରେସ-ଶାସିତ ପ୍ରଦେଶମାନଙ୍କରୁ କଂଗ୍ରେସ ଊଣେଇଶିଶହ ଅଣଚାଳିଶରେ ଇସ୍ତଫା ପ୍ରଦାନ କଲା । ଏହାପରେ ଊଣେଇଶିଶହ ଚାଳିଶ ମସିହାରୁ ଚାଲିଲା କଂଗ୍ରେସ ପକ୍ଷରୁ ବ୍ୟକ୍ତିଗତ

ସତ୍ୟାଗ୍ରହ । ଏହି ସତ୍ୟାଗ୍ରହର ମର୍ମ ହେଲା—ସବୁ ପ୍ରଦେଶରୁ ପ୍ରତିଦିନ ଜଣେ ଲେଖାଏଁ କଂଗ୍ରେସ ବ୍ୟକ୍ତି ସରକାର ବିରୋଧରେ ସତ୍ୟାଗ୍ରହ କରି କାରାବରଣ କରିବେ । ଓଡ଼ିଶାରୁ ବୋଧହୁଏ ଶ୍ରୀମତୀ ସରଳାଦେବୀ ଥିଲେ ବ୍ୟକ୍ତିଗତ ସତ୍ୟାଗ୍ରହର ପ୍ରଥମ ସତ୍ୟାଗ୍ରହୀ । ଏଇଠି ଭାରତସରକାରଙ୍କର ଯେପରି ଏକ ଚୈତନ୍ୟ ଉଦୟ ହେଲା ଯେ, ଯୁଦ୍ଧର ଏ ଘନଘଟା ସମୟରେ ପ୍ରଦେଶମାନଙ୍କରେ ଏକ ସ୍ଥାୟୀ ନିର୍ବାଚିତ ସରକାର ଗଠିତହେବା ଉଚିତ । ଏଥିପାଇଁ ସରକାର ପୁଣି ପାରଳା ମହାରାଜାଙ୍କ ଦ୍ୱାରସ୍ଥ ହେଲେ । ପୁଣି ଏକ ପାରଳା ମନ୍ତ୍ରିପରିଷଦ ଗଠିତ ହେଲା । ପ୍ରିମିଅର ସ୍ୱୟଂ ଗଜପତି କୃଷ୍ଣଚନ୍ଦ୍ରଦେବ । ଏଇ ମନ୍ତ୍ରିପରିଷଦରେ ପଣ୍ଡିତ ଗୋଦାବରୀଶ ମିଶ୍ର ଏକ ଗଣତାନ୍ତ୍ରିକ ପଦ୍ଧତିରେ ଗଠିତ ହୋଇଥିବା ସରକାରରେ ପ୍ରଥମ କରି ସ୍ଥାନ ପାଇଲେ । ମନ୍ତ୍ରିମଣ୍ଡଳରେ ଅନ୍ୟ ଜଣେ ସଭ୍ୟ ହେଲେ ଅବଦୁଲ ଶୋଭାନ୍ ଖାଁ । ଶ୍ରୀଯୁକ୍ତ ଯଦୁମଣି ମଙ୍ଗରାଜ କଂଗ୍ରେସ ତ୍ୟାଗ କରି ଏଇ ମନ୍ତ୍ରିମଣ୍ଡଳରେ ଯୋଗ ଦେଇଥିଲେ । ଶ୍ରୀଯୁକ୍ତ ପ୍ୟାରିଶଙ୍କର ରାୟ ଏକ ପାର୍ଲାମେଣ୍ଟାରୀ ସେକ୍ରେଟେରୀଙ୍କର ଆସନ ଅଳଂକୃତ କରିଥିଲେ । ଏହିପରି ଅନ୍ୟ କିଛି ଦଳର ସଭ୍ୟ ମଧ୍ୟ ମନ୍ତ୍ରିମଣ୍ଡଳରେ ଯୋଗ ଦେଇଥିଲେ । ମୋଟ୍ ଉପରେ ଏହା ଥିଲା ଏକ ମିଳିତ ମନ୍ତ୍ରିମଣ୍ଡଳ । ଏଇ ଯେ ମନ୍ତ୍ରିମଣ୍ଡଳ ଗଠିତ ହେଲା, ତାର କର୍ଣ୍ଣଧାର ଥିଲେ ସ୍ୱର୍ଗତ ଆଇନ୍‌ଜୀବୀ ଶ୍ରୀଯୁକ୍ତ ମଧୁସୂଦନ ମହାନ୍ତି । ତାଙ୍କର କୌଣସି ପଦଲାଲସା ନଥିଲା ସତ, କିନ୍ତୁ ରାଜନୀତିର ତାତ୍ତ୍ୱିକ ଆଲୋଚନା ଓ ସମାଲୋଚନା ତାଙ୍କର ଧର୍ମ ହୋଇଥିବାରୁ ସେ ସଦାସର୍ବଦା ରାଜନୀତି ସହିତ ଜଡ଼ିତ ହୋଇ-ପଡ଼ୁଥିଲେ । ମୁଁ ସେତେବେଳେ ବହୁତ ସମୟ ଧରି ଶ୍ରୀଯୁକ୍ତ ମହାନ୍ତିଙ୍କ ଅତି ନିକଟ ସମ୍ପର୍କରେ ଆସି ଏଇ ମିଳିତ ମନ୍ତ୍ରିମଣ୍ଡଳ ଗଠନ ପ୍ରକ୍ରିୟାର ପ୍ରତ୍ୟକ୍ଷଦର୍ଶୀ ହୋଇପାରିଥିଲି । ପଣ୍ଡିତ ଗୋଦାବରୀଶ ମନ୍ତ୍ରିମଣ୍ଡଳରେ କ୍ୟାବିନେଟ୍ ମିନିଷ୍ଟର ଭାବେ ଯୋଗଦେଲେ । ଗୋଦାବରୀଶ ଯେ କେବଳ ଇଂରାଜୀରେ ଅତି ସମ୍ମାନର ସହିତ ବିଶ୍ୱବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇଥିଲେ ତାହା ନୁହେଁ, ଇଂରାଜୀ ଭାଷା-ସାହିତ୍ୟରେ ତାଙ୍କର ଗଭୀର ପାଣ୍ଡିତ୍ୟ ଥିଲା । କଥିତ ଅଛି, ତତ୍କାଳୀନ କେହି କେହି ଇଂରାଜ ଆଇ.ସି.ଏସ୍. ଅଫିସର୍ କୌଣସି ଅଫିସ କର୍ମରେ ତାଙ୍କ ନିକଟକୁ ଫାଇଲ୍ ନେଇ ଯିବା ପାଇଁ ସଙ୍କୋଚବୋଧ କରୁଥିଲେ । କାରଣ ଉଭୟ ଇଂରାଜୀ ଲେଖା ଓ କଥାବାର୍ତ୍ତାରେ ବେଳେବେଳେ 'ସେମାନଙ୍କର ଦୁର୍ବଳତା ତାଙ୍କ ପାଖରେ ଧରା ପଡ଼ିଯାଉଥିଲା । ମନ୍ତ୍ରିମଣ୍ଡଳରେ ରହି ତାଙ୍କର ସବୁଠୁ ବଡ଼ କୃତିତ୍ୱ ହେଲା ଯେ, ସେ ଶିକ୍ଷାମନ୍ତ୍ରୀ ଭାବରେ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପନ କରାଇଥିଲେ । ସେହିପରି ପରବର୍ତ୍ତୀ କାଳରେ ପଣ୍ଡିତ ନୀଳକଣ୍ଠ ଏକ

ଅଣକଂଗ୍ରେସୀ ବିଧାନସଭାର ବାଚସ୍ପତି ହୋଇଥିଲେ । ଏସବୁ ସତ୍ତ୍ୱେ ମୁଁ କ'ଣ କେବେ କଳ୍ପନା କରିଥିଲି ଯେ ସମୟକ୍ରମେ ଏଇ ମିଳିତ ମନ୍ତ୍ରିମଣ୍ଡଳ ଦ୍ୱାରା ଯେଉଁ ନାରକୀୟ ଓ ମର୍ମନ୍ତୁଦ ଘଟଣା ଘଟିଗଲା, ତାର ମଧ୍ୟ ପ୍ରତ୍ୟକ୍ଷଦର୍ଶୀ ହେବାର ଦୁର୍ଭାଗ୍ୟ ମୋର ଘଟିବ !

ସେତେବେଳେ ପଡ଼ିଶା ବଙ୍ଗଳାପ୍ରଦେଶରେ ବର୍ତ୍ତନାତୀତ ଦୁର୍ଭିକ୍ଷ ଦେଖାଦେଇଥାଏ । ଖାଦ୍ୟ ସାମଗ୍ରୀର ଉତ୍କଟ ଅଭାବ । ଲୋକେ ଯାହା କୁହନ୍ତି, ପୋକ ମାଛି ପରି ମରୁଥାଆନ୍ତି । ସେତେବେଳେ ବଙ୍ଗଳାରେ ଗଭର୍ଣ୍ଣର ଶାସନ ଚାଲିଥାଏ । ଓଡ଼ିଶାରୁ ଖାଦ୍ୟ ସଂଗ୍ରହ ପାଇଁ ଓଡ଼ିଶା ସରକାରଙ୍କୁ ଅନୁରୋଧ କରି ଇସ୍ପାହାନ୍ ଖାଁ ନାମକ ଜଣେ ପର୍‌ଚେଜିଙ୍ଗ୍ ଏଜେଣ୍ଟଙ୍କୁ ବଙ୍ଗଳା ସରକାର ଓଡ଼ିଶାକୁ ପଠାଇଲେ । ସେ ବର୍ଷ ଓଡ଼ିଶାରେ ଭଲ ଫସଲ ଅମଳ ହୋଇଥାଏ । ବାଲେଶ୍ୱର ଜିଲ୍ଲାର ଉତ୍ତର ଅଞ୍ଚଳରେ ଖାଦ୍ୟ ଭରପୂର । ବୁଦ୍ଧିମାନ୍ ଖାଁ ଦେଖିଲେ—ସେ ଯଦି ଓଡ଼ିଶା ସରକାରଙ୍କ କୌଣସି କର୍ମକର୍ତ୍ତାଙ୍କ ଠାରୁ ପ୍ରଚୁର ଅର୍ଥ ବିନିମୟରେ ଫ୍ରି ଟ୍ରେଡ୍ ଲାଇସେନ୍‌ସ ହାସଲ ପାଇପାରିବେ, ତେବେ ଚାଡାଚାଡି ଧାନଚାଉଳର ମୂଲ୍ୟ ପାଞ୍ଚ ଛ'ଗୁଣ ବଢ଼ାଇ ଦେଇ ଓଡ଼ିଶା ସୀମାନ୍ତ ଏପଟୁ ବଙ୍ଗଳା ସୀମାନ୍ତ ସେପାଖକୁ ଅଳ୍ପ ସମୟ ମଧ୍ୟରେ ହଜାର ହଜାର ବସ୍ତା ଧାନଚାଉଳ ରପ୍ତାନି କରିଦେଇ ପାରିବେ । ତାହାହିଁ ହେଲା । ଉତ୍ତରଓଡ଼ିଶାରେ ବହୁତ ବଡ଼ ବଡ଼ ଚାଷୀ ଅଛନ୍ତି । ଧାନ ଚାଉଳର ଏପରି ଅପ୍ରତ୍ୟାଶିତ ମୂଲ୍ୟବୃଦ୍ଧିରେ ଉତ୍ସାହିତ ହୋଇ କେବଳ ପାରିବାରିକ ଖର୍ଚ୍ଚ ପାଇଁ କିଛି ରଖି ବାକି ସମସ୍ତ ଧାନଚାଉଳ ଖାଁ ସାହେବଙ୍କ ଉପରେ ବିକ୍ରୟ କରିଦେଲେ । ଏଣେ ଖାଁ ସାହେବ ଦିନରାତି ଚବିଶ ଘଣ୍ଟା ଲାଗି ବାଲେଶ୍ୱର ସୀମାରୁ ବଙ୍ଗଳାପ୍ରଦେଶକୁ ଧାନଚାଉଳ ରପ୍ତାନିକରିବାରେ ଲାଗିଲେ । ଦୁଇପ୍ରଦେଶ ମଧ୍ୟରେ ମାତ୍ର କେତେ କିଲୋମିଟର ଦୂରତ୍ୱର ବ୍ୟବଧାନ । ପ୍ରାୟ ମାସେ ଦେଢ଼ମାସ ମଧ୍ୟରେ ଦେଖାଗଲା ଉତ୍ତର ବାଲେଶ୍ୱରର ହାଟବଜାରରେ ଧାନଚାଉଳ ମିଳୁନାହିଁ । ବଡ଼ ଚାଷୀ ଓ ମହାଜନମାନେ ଚଢ଼ା ଦରରେ ପର୍ଚେଜିଙ୍ଗ୍ ଏଜେଣ୍ଟଙ୍କୁ ସବୁ ବିକି ଦେଇଚନ୍ତି । ସବୁଆଡ଼େ ହାହାକାର ଖେଳିଗଲା । ଖାଦ୍ୟ ବିନା ମୃତ୍ୟୁର କରାଳଛାୟା ବ୍ୟାପିଗଲା । ପ୍ରଦେଶର ଅନ୍ୟ ଅଞ୍ଚଳରୁ ଖାଦ୍ୟଶସ୍ୟ ପରିବହନ କରି ଆଣିବାର ଉପାୟ ନାହିଁ, ଯେହେତୁ ଯୁଦ୍ଧଯୋଗୁ ଟ୍ରକ୍ ବସ୍ ଆଦି ସବୁ ଟ୍ରାନ୍‌ସପୋର୍ଟ ସରକାର ଜବତ କରି ନେଇଚନ୍ତି । ମୁଁ ମଧୁବାବୁଙ୍କ ପାଖରୁ ଏସବୁ ସମ୍ବାଦ ପାଉଥାଏ । ଜଣାଗଲା, ବାସ୍ତବରେ ଦୁର୍ଭିକ୍ଷ ସେ ଅଞ୍ଚଳକୁ ଗ୍ରାସ କଲାଣି । ପୁଣି ଏଇ ଯୁଦ୍ଧ ପାଇଁ ଆମର ଏକମାତ୍ର ନିର୍ଭରଯୋଗ୍ୟ 'ସମାଜ' ଖବରକାଗଜକୁ ସରକାର ବାଜ୍ୟାପ୍ତ

କରିଦେଇଥା’ନ୍ତି । ସେ ପାଖରେ ବଙ୍ଗଳା ପ୍ରଦେଶର ଅବସ୍ଥା ଆହୁରି ଗୁରୁତର । ଓଡ଼ିଶାରୁ ଯୋଉ ଲକ୍ଷ ଲକ୍ଷ ମହଣ ଧାନଚାଉଳ ଯାଇଥିଲା, ସେ ସବୁକୁ ଷ୍ଟୋର୍ କରି ରଖିବା ପାଇଁ ଉପଯୁକ୍ତ ଗୋଦାମ ବହୁ ସଂଖ୍ୟାରେ ମିଳିଲା ନାହିଁ । ଏଠି ସେଠି ବସ୍ତା ସବୁ ପଡ଼ିରହିଲା । ମଧୁବାବୁଙ୍କ ମୁହଁରୁ ଶୁଣିଲି, ବଙ୍ଗଳାର ଗଭର୍ଣ୍ଣର ସାର୍ ଆଲେକ୍‌ଜାଣ୍ଡର ଓଡ଼ିଶାରୁ ସଂଗୃହୀତ ଖାଦ୍ୟ ଭଣ୍ଡାରକୁ ବିକ୍ରିପାଇଁ ସଙ୍ଗେ ସଙ୍ଗେ ଛାଡ଼ି ନ ଦେବାକୁ ଆଦେଶ ଦେଲେ । ଫଳରେ ଧାନଚାଉଳ ଦର୍ ବଢ଼ିବାକୁ ଲାଗିଲା ଓ ସେହି ବର୍ଦ୍ଧିତ ଦରରେ ଲୋକମାନେ କ୍ରୟ କରିବାକୁ ବାଧ୍ୟ ହେଲେ । ଏହି ପ୍ରକ୍ରିୟାରେ ଯେଉଁ ବିପୁଳ ଧନଲାଭ ହେଲା, ତାହା ଗଭର୍ଣ୍ଣର ପକେଟସ୍ଥ କଲେ । ପୁଣି ଦେଖାଗଲା, ଉପଯୁକ୍ତ ଭାବରେ ଖାଦ୍ୟଶସ୍ୟ ଗଚ୍ଛିତ ରହିପାରି ନ ଥିବାରୁ ସେଥିରୁ ଅର୍ଦ୍ଧାଧିକ ପରିମାଣ ନଷ୍ଟ ହୋଇଯାଇଛି । ସେ ସବୁକୁ ଗଙ୍ଗାନଦୀ ଗର୍ଭରେ ନିକ୍ଷେପ କରିଦିଆଗଲା । ଏହା ଫଳରେ ବଙ୍ଗଳାରେ ଅଭୂତପୂର୍ବ ଦୁର୍ଭିକ୍ଷର କରାଳଗ୍ରାସ ମାଡ଼ି ଆସିଲା । ସୀମା ଏପଟେ ଉତ୍ତର ବାଲେଶ୍ୱରରେ ଫ୍ରିଟ୍ରେଡ୍ ଲାଇସେନ୍‌ସ ପାଇ ଇସ୍‌ଫାନ୍ ଖାଁ ଲକ୍ଷ ଲକ୍ଷ ବସ୍ତା ଖାଦ୍ୟଶସ୍ୟ ବଙ୍ଗଳାଦେଶକୁ ବୋହି ନେବା ଫଳରେ ଏଠି କୃତ୍ରିମ ଦୁର୍ଭିକ୍ଷ ସୃଷ୍ଟି ହୋଇ ଏ ଅଞ୍ଚଳରେ ଲୋକେ ପୋକ ମାଛି ପରି ମରିବାକୁ ଲାଗିଲେ । କିନ୍ତୁ ଏଇ ଫ୍ରିଟ୍ରେଡ୍ ଲାଇସେନ୍‌ସ ଦେଲା କିଏ ? ଓଡ଼ିଶା ସରକାର—ନା ସରକାରଙ୍କର କୌଣସି ବିଭାଗ ନା କେହି ବ୍ୟକ୍ତିବିଶେଷ ? ସମ୍ବାଦପତ୍ର ପ୍ରକାଶ ପାଉ ନଥିବାରୁ ସର୍ବସାଧାରଣରେ ଏହାର କିଛି ଆଲୋଚନା ହୋଇପାରୁ ନଥିଲା, କିନ୍ତୁ ମଧୁବାବୁଙ୍କ ପାଖରୁ ମୁଁ ସବୁ ଜାଣିବାକୁ ପାଉଥିଲି । କଟକ ରେଲଷ୍ଟେସନକୁ ଯାଇ ଏଇ ଆଖିରେ ଦେଖିଛି, ଖାଦ୍ୟବିନା ଉପବାସକ୍ଲିଷ୍ଟ ଯୁବତୀମାନେ ମେଦିନୀପୁର ଓ ଉତ୍ତର ବାଲେଶ୍ୱର ଅଞ୍ଚଳରୁ ଟ୍ରେନ୍‌ରେ କଟକ ଅଞ୍ଚଳକୁ ଆସି କେବଳ ଟଙ୍କା ନୁହେଁ (ଟଙ୍କାର ମୂଲ୍ୟ ସେତେବେଳେ କିଛି ନ ଥିଲା) ନିଜର ସବୁକିଛି ବିନିମୟରେ ମାତ୍ର ଦୁଇ ତିନି ସେର ଚାଉଳ ଯୋଗାଡ଼ କରି ନିଜର ପରିବାରକୁ ଅନ୍ତତଃ ଦୁଇ ତିନି ଦିନ ବଞ୍ଚାଇ ପାରିବାର ଆଶ୍ୱାସନାରେ ଅନ୍ୟ ଟ୍ରେନ୍‌ରେ ଫେରିଯାଉଥିଲେ । ଏତିକିବେଳେ ମଧୁବାବୁଙ୍କ ଠାରୁ ଶୁଣିଲି ପ୍ରିମିଅର ଗଜପତି କୃଷ୍ଣଚନ୍ଦ୍ର ଦେବ ଦିଲ୍ଲୀ ଚାଲିଯାଇଚନ୍ତି । ଯିବାର କାରଣ ସେ ଯାହା କହିଲେ, ସେଥିରେ ମୁଁ ସ୍ତବ୍ଧ ହୋଇଗଲି । ସେ ପ୍ରିମିଅର ହୋଇ ମଧ ଫ୍ରିଟ୍ରେଡ୍ ଲାଇସେନ୍‌ସକୁ ରଦ୍ଦ କରିବା ପାଇଁ କୁଆଡ଼େ ତାଙ୍କ ପକ୍ଷରେ ସମ୍ଭବ ହୋଇପାରିଲା ନାହିଁ । ଏଇ ମିଳିତ ମନ୍ତ୍ରିମଣ୍ଡଳୀ ତ ଭାରତ ସରକାରଙ୍କ ପରାମର୍ଶରେ ଗଠିତ ହୋଇଥିଲା, ସେଥିପାଇଁ ସେ ସେବେଳର ଫୁଡ୍ ମେମ୍ବର (ଖାଦ୍ୟମନ୍ତ୍ରୀ) ସାର୍ ଯୋଗେନ୍ଦ୍ର ସିଂଙ୍କ ସହିତ ପରାମର୍ଶ କରିବା ପାଇଁ ଦିଲ୍ଲୀ ଯାଇଚନ୍ତି । କିନ୍ତୁ ଦୁର୍ଭାଗ୍ୟର କଥା, ଦିଲ୍ଲୀରେ

ଛ' ଦିନ ପର୍ଯ୍ୟନ୍ତ ସେ ସାର୍ ଯୋଗେନ୍ଦ୍ର ସିଂଙ୍କ ସହିତ ସାକ୍ଷାତ କରିବାର ସୁଯୋଗ ପାଇପାରିଲେ ନାହିଁ । ସପ୍ତମ ଦିନ ସେ ତାଙ୍କ ସହିତ ସାକ୍ଷାତ କରି କଟକ ଫେରିଆସି ସାଙ୍ଗେ ସାଙ୍ଗେ ଗଭର୍ଣ୍ଣରଙ୍କ ନିକଟରେ ତାଙ୍କର ଇସ୍ତଫାପତ୍ର ପ୍ରଦାନ କଲେ । ମିଳିତ ମନ୍ତ୍ରିମଣ୍ଡଳର ସମାପ୍ତି ଘଟିଲା । ସେତେବେଳକୁ ଉତ୍ତର ବାଲେଶ୍ୱରରେ ଦୁର୍ଭିକ୍ଷ ଜନିତ ମୃତ୍ୟୁ ସଂଖ୍ୟା ପନ୍ଦର ହଜାରକୁ ଟପିଗଲାଣି । କିନ୍ତୁ ଏଇ ହୃଦୟବିଦାରକ ଘଟଣା ପାଇଁ କିଏ ଦାୟୀ, ସେ କଥା ମଧୁବାବୁ ମୋ ପାଖରେ ଗୋପନ ରଖିଲେ ନାହିଁ । ଇସ୍ପାହାନ୍ ଖାଁଙ୍କୁ ଫ୍ରିଟ୍ରେଡ୍ ଲାଇସେନ୍ସ କିପରି କେଉଁ ସର୍ତ୍ତରେ ଦିଆଗଲା ଓ କିପରି ଭାବେ ଉତ୍ତର ଓଡ଼ିଶାରୁ ବେଙ୍ଗଲ୍‌କୁ ଦିବାରାତ୍ର ଅନବରତ ଖାଦ୍ୟଶସ୍ୟ ମନ୍ତ୍ରିମଣ୍ଡଳର ଇସ୍ତଫା ଦେବାପର୍ଯ୍ୟନ୍ତ ବୁହାଗଲା ଓ ଏଥିପାଇଁ ଯେଉଁ ବ୍ୟକ୍ତି ଦାୟୀ, ସେକଥା ଜାଣିଶୁଣି ମୋ'ଠାରୁ ଗୋପନ ରଖି ଅଶ୍ରୁପୂର୍ଣ୍ଣ ଲୋଚନରେ ତାଙ୍କ ଆସନରୁ ଉଠି ଭିତରକୁ ଚାଲିଗଲେ । ମୋର ମନେହେଲା, ମୁଁ ଆଉ ରକ୍ତମାଂସର ଦେହଧରି ରହିନି, ମୁଁ ଏକ ପ୍ରସ୍ତର ମୂର୍ତ୍ତି ପାଲଟି ଯାଇଚି ।

## ଚତୁର୍ଥ ଦଶକରେ ବାଲେଶ୍ୱର ଜିଲ୍ଲା ଦୁର୍ଭିକ୍ଷରେ ପନ୍ଦର ହଜାର ଲୋକଙ୍କ ମୃତ୍ୟୁ ପାଇଁ ଦାୟୀ କିଏ ?

···ଏହା ହେଉଚି ଏ ଶତାବ୍ଦୀର ଚତୁର୍ଥ ଦଶକର କଥା । ପଞ୍ଚମ ଦଶକର ପ୍ରାରମ୍ଭରେ, ହୁଏତ ବାଉନ ବା ତେପନ ମସିହାରେ ଦୈନିକ ସମ୍ବାଦପତ୍ର 'ସମାଜ'ରେ ଗୋଟିଏ ରିପୋର୍ଟ ପ୍ରକାଶ ପାଇଲା । ଏଇ ରିପୋର୍ଟରେ ବର୍ଣ୍ଣନା କରାଯାଇଥିଲା ଯେ, ଓଡ଼ିଶା କ୍ୟାଡରର ଜଣେ ଆଇ.ସି.ଏସ୍. ଅଫିସର ଶ୍ରୀଯୁକ୍ତ ଅହମ୍ମଦ, ଓଡ଼ିଶାର ସେନ୍‌ସସ୍ (census) ଅଫିସର ଥିଲେ । ସେ ଚତୁର୍ଥ ଦଶନ୍ଧିର ସେନ୍‌ସସ୍ (census) ରିପୋର୍ଟରେ ଉଲ୍ଲେଖ କରିଯାଇଚନ୍ତି ଯେ, ଏ ଦଶନ୍ଧିର ପ୍ରାରମ୍ଭରେ ଉତ୍ତର ଓଡ଼ିଶାରେ ଯେଉଁ ଦୁର୍ଭିକ୍ଷ ଘୋଟି ପ୍ରାୟ ପନ୍ଦର ହଜାର ଲୋକ ମୃତ୍ୟୁମୁଖରେ ପଡ଼ିଲେ, ସେ ଦୁର୍ଭିକ୍ଷ କୌଣସି ପ୍ରାକୃତିକ ବିପର୍ଯ୍ୟୟ ଯୋଗୁ ଘଟି ନାହିଁ । ଏହା ହେଉଚି ଏକ ମନୁଷ୍ୟକୃତ ଦୁର୍ଭିକ୍ଷ : (Man-Made-famine) ଏଇ କଥାଟି ସେ ତାଙ୍କ ରିପୋର୍ଟରେ ଉଲ୍ଲେଖ କରି ଯାଇଚନ୍ତି । କିନ୍ତୁ କିଏ ଏଇ "ମନୁଷ୍ୟଟି", ସେ କଥା ଅହମ୍ମଦ ସାହେବ ତାଙ୍କ ରିପୋର୍ଟରେ ଉଲ୍ଲେଖ କରି ନାହାଁନ୍ତି । ଶ୍ରୀଯୁକ୍ତ ଅହମ୍ମଦ ଆଇ.ସି.ଏସ୍. ଜଣେ ସେକେଟେରି ପାହିଆର 'ଅଫିସର୍ । କାହିଁକି କାହା ଚାପରେ ପଡ଼ି ସେ ଏଇ ନିଷ୍ଠୁର ସତ୍ୟଟିକୁ ଉଦ୍‌ଘାଟିତ କଲେ ନାହିଁ, ତାର କୌଣସି ସୂତ୍ର ମଧ୍ୟ ସେ ଛାଡ଼ିଯାଇ ନାହାଁନ୍ତି । ଏମିତି ଯଦି ହୋଇଥାଏ,

ଏ ପନ୍ଦର ହଜାର ପ୍ରାଣୀଙ୍କୁ ଦୁର୍ଭିକ୍ଷର କବଳଗ୍ରାସକୁ ଠେଲିଦେଇ ସେନ୍‌ସସ୍ ରିପୋର୍ଟରେ ଶ୍ରୀ ଅହମ୍ମଦଙ୍କ ଉଲ୍ଲିଖିତ ସେହି ବ୍ୟକ୍ତିଙ୍କର ପକେଟକୁ ପନ୍ଦରଲକ୍ଷ ଟଙ୍କା ଆସିଥାଏ (ନିଶ୍ଚୟ ଆସିଛି) ତେବେ ପ୍ରକାଶ୍ୟରେ ତାର ଉତ୍ତର ଦେବାପାଇଁ ଆଉ କେହି ହେଲେ ଆଗେଇ ଆସିଲେ ନାହିଁ । ଏ ଶତାବ୍ଦୀର ଏପରି ଏକ ମର୍ମନ୍ତୁଦ ଘଟଣା ବିଷୟରେ ଆମ ପ୍ରଦେଶର କେହି ନା କେହି ବ୍ୟକ୍ତି ନିଶ୍ଚୟ ଜ୍ଞାତ ଥାଇପାରନ୍ତି । କିନ୍ତୁ କାହାନ୍ତି ସେମାନେ ? ତେବେ "ସମାଜ"ରେ ସେନ୍‌ସସ୍ ରିପୋର୍ଟ—ପଢ଼ିସାରିଲା ପରେ ମୋର ହୃଦ୍‌ବୋଧ ହେଲା ଯେ, ଏଇ ଦୁଃଖଦାୟକ ଘଟଣାଟିକୁ କେନ୍ଦ୍ର କରି ଗୋଟିଏ ନାଟକ ରଚନା କରିବା ମୋର ଉଚିତ । ନାଟକଟିଏ ଲେଖିଲି, ଏ ନାଟକଟିର ନାମ ହେଉଚି 'ପରକଲମ" । ୫ । ୮ । ୫୪ ମସିହାରେ ଏଇ ନାଟକଟି କଟକ ଜନତା ରଙ୍ଗମଞ୍ଚରେ ଉଦ୍‌ଘାଟିତ ହୋଇଥିଲା । ଉଦ୍‌ଘାଟକ ଡକ୍ଟର ହରେକୃଷ୍ଣ ମହତାବ । ପରଦିନ ଶ୍ରୀଯୁକ୍ତ ମହତାବ ଏଇ ନାଟକ ସମ୍ପର୍କରେ ଲେଖକଙ୍କ ସହିତ ଏକ ବିସ୍ତାରିତ ଆଲୋଚନା କରିଥିଲେ ।

## ଦ୍ୱିତୀୟ ମହାଯୁଦ୍ଧ ଓ ଭାରତ

ଏଣେ ଭାରତର ସ୍ୱାଧୀନତା ସଂଗ୍ରାମ ଚାଲିଚି । ଏଇ ସଂଗ୍ରାମକୁ ସମଗ୍ର ପୃଥିବୀ କେତେବେଳେ ଉତ୍କଣ୍ଠା, କେତେବେଳେ ଆଗ୍ରହ, କେତେବେଳେ ସଂଶୟଭାବ ଓ ଆଉ କେତେବେଳେ ତୃଷିତ ନୟନରେ ଚାହିଁ ରହିଥିବାବେଳେ ଖୋଦ୍ ଭାରତରେ ଉଣେଇଶହ ତିରିଶିର ଲବଣ ସତ୍ୟାଗ୍ରହ ଓ ବିଦେଶୀ ବସ୍ତ୍ର ବର୍ଜନ ସମୟର ଉତ୍ତେଜନା ଉଣେଇଶ' ସଇଁତିରିଶି ବେଳକୁ ଟିକିଏ ଧିମେଇ ଯାଇଥିଲା । ସେପଟେ ପଶ୍ଚିମ ଜଗତ୍ରେ ଏକ ସର୍ବଗ୍ରାସୀ ଝଡ଼ର ସ୍ୱପ୍ନ କେହି କେହି ଦେଖୁଥିଲେ । ଏହାର ସୂଚନା ଅବଶ୍ୟ ଉଣେଇଶହ ଛତିଶରେ ବର୍ଲିନ୍ ଅଲମ୍ପିକ୍‌ରେ କେତୋଟି ଘଟଣାରୁ ମିଳିଥିଲା । ସେତେବେଳେ ହିଟ୍‌ଲର୍‌ଙ୍କ ନେତୃତ୍ୱରେ ନାଜିବାଦର ସ୍ଥିତି ଜର୍ମାନୀରେ ସୁଦୃଢ଼ । ଏ କଥା ସମସ୍ତେ ଜାଣନ୍ତି ଯେ, ଜର୍ମାନମାନେ ହିମାଳୟଠାରୁ ବିନ୍ଧ୍ୟପର୍ବତମାଳା ପର୍ଯ୍ୟନ୍ତ ଆର୍ଯ୍ୟାବର୍ତ୍ତରେ ସମ୍ଭୂତ ବୋଲି ହିଟ୍‌ଲର୍‌ଙ୍କ ଗର୍ବ ଥିଲା । ସେ କୁଆଡ଼େ କହୁଥିଲେ, ଏଇ ଆର୍ଯ୍ୟମାନେ ତିନିଭାଗରେ ବିଭକ୍ତ ହୋଇ ଗୋଟିଏ ଭାଗ ଭାରତରେ ରହିଲେ, ଆଉ ଗୋଟିଏ ଭାଗ ଜର୍ମାନ୍ ଅଞ୍ଚଳରେ ବସତି ସ୍ଥାପନ କଲେ ଓ ତୃତୀୟ ଭାଗଟି ବଲ୍‌କାନ୍ ଅଞ୍ଚଳ ପର୍ଯ୍ୟନ୍ତ ଯାଇ ହୁଏତ କୁଆଡ଼େ ଲୀନ ହୋଇଗଲେ ।

## ୧୯୩୬ ବର୍ଲିନ ଅଲମ୍ପିକ୍ସ୍

ହିଟ୍‌ଲର୍‌ଙ୍କ ମତରେ ପୃଥିବୀର ଅନ୍ୟ ସମସ୍ତ ଅଞ୍ଚଳ କେବଳ ଅନାର୍ଯ୍ୟ-ମାନଙ୍କ ଦ୍ୱାରା ଅଧ୍ୟୁଷିତ । ବର୍ଲିନ୍‌ରେ ୧୯୩୬ ଅଲମ୍ପିକ୍ସ୍ ଗେମ୍ସ୍ କରାଇ ସେ କୁଆଡ଼େ ପ୍ରମାଣ କରେଇବାକୁ ଚାହୁଁଥିଲେ ଯେ, ଆର୍ଯ୍ୟ ଜର୍ମାନ୍‌ମାନଙ୍କୁ କେହି ଖେଳକୁଦ କୋଉଥିରେ ପରାସ୍ତ କରିପାରିବେ ନାହିଁ । କିନ୍ତୁ ଫଳ ଓଲଟା ହେଲା । ଆଥ୍‌ଲେଟିକ୍ ଗେମ୍‌ସରେ ଜଣେ ଆମେରିକୀୟ ନିଗ୍ରୋ ଜେସିଓଏନ୍‌ସ ଗୋଟିଏ ନୁହେଁ କି ଦୁଇଟି ନୁହେଁ, ଏକାବେଳକେ ଚାରିଟି ଇଭେଣ୍ଟ—ଶହେଗଜ ଦୌଡ଼, ଦୁଇଶହ ଗଜ ଦୌଡ଼, ଲଙ୍ଗଜମ୍ପ ଓ ଚାରି × ଶହ ଗଜ ରିଲେ ରେସ୍‌ରେ ବିଜୟୀ ହୋଇ ଚାରିଗୋଟି ସ୍ୱର୍ଣ୍ଣପଦକ ଲାଭ କରିଥିଲେ । ନିଜେ ହିଟ୍‌ଲର୍ କ୍ରୀଡ଼ା-ଙ୍ଗନରେ ଉପସ୍ଥିତ ଥାଇ ଏ ଦୃଶ୍ୟ ଦେଖୁଥାନ୍ତି । କିନ୍ତୁ ଯେତେବେଳେ ଜର୍ମାନୀର ଶାସକ ଭାବେ ବିଜୟୀ କ୍ରୀଡ଼ାବିତ୍ ଜେସିଓଏନ୍‌ସଙ୍କୁ ସ୍ୱର୍ଣ୍ଣପଦକ ପିନ୍ଧାଇଦେବାର ସମୟ ଆସିଲା, ଅନାର୍ଯ୍ୟମାନଙ୍କୁ ଏ ସମ୍ମାନ ସେ ଦେଇପାରିବେ ନାହିଁ ବୋଲି କହି ଷ୍ଟାଡ଼ିୟମ୍ ଛାଡ଼ି ଚାଲିଯାଇଥିଲେ । ସେତେବେଳେ ଅଲମ୍ପିକ୍‌ର ସମ୍ପୂର୍ଣ୍ଣ ଚଳଚ୍ଚିତ୍ରର ରୂପ ଆମେ କଟକ ସିନେମା ହାଉସ୍‌ମାନଙ୍କରେ ଦେଖିପାରୁଥିଲୁ । ଅଲମ୍ପିକସ୍‌ପରି ଏକ ସମ୍ମାନାସ୍ପଦ କ୍ରୀଡ଼ାଭୂମିରୁ ଦେଶର ସର୍ବୋଚ୍ଚକର୍ତ୍ତା ଉଠି ଚାଲିଯିବାର ପ୍ରତିକ୍ରିୟା ସବୁଆଡ଼େ ଖେଳିଗଲା । କିଛି ସମୟ ପରେ ଅବଶ୍ୟ ହିଟ୍‌ଲର୍ ପୁଣି ଆସି ଜେସିଓଏନ୍‌ସଙ୍କୁ ପଦକ ପିନ୍ଧାଇ ଦେଇଥିଲେ । କିନ୍ତୁ ଏଇ ଘଟଣାରୁ ହିଟ୍‌ଲର୍‌ଙ୍କ ଚିନ୍ତାଧାରାର ଯେଉଁ ସୂଚନା ମିଳିଥିଲା, ତାହା ଉଣେଇଶ' ଅଠତିରିଶ ଅଣଚାଳିଶ ଜର୍ମାନୀର ୟୁରୋପ ଉପରେ ଆକ୍ରମଣ ଦ୍ୱାରା ପ୍ରମାଣିତ ହୋଇଗଲା ।

## ଦ୍ୱିତୀୟ ବିଶ୍ୱଯୁଦ୍ଧ

ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା । ଆରମ୍ଭରେ ଭାରତ ଉପରେ ଯୁଦ୍ଧର ପ୍ରଭାବ କିଛି ପଡ଼ି ନ ଥିଲା କହିଲେ ଚଳେ । ପ୍ରଥମରୁ ଜର୍ମାନ୍, ଇଟାଲୀ ଓ ଜାପାନ୍ ଏ ତିନୋଟି ଦେଶର ଗୋଟିଏ ମେଣ୍ଟ ହୋଇଥିଲା—ଏଇ ମେଣ୍ଟ ଅକ୍ଷଶକ୍ତି ବା Axis ନାମରେ ପରିଚିତ । ଅନ୍ୟ ପକ୍ଷରେ ଇଂଲଣ୍ଡ, ଫ୍ରାନ୍‌ସ ଓ ଅନ୍ୟକିଛି ଦେଶ ଯେଉଁ ମେଣ୍ଟ ଗଢ଼ିଥିଲେ, ତାହା ମିତ୍ରଶକ୍ତି ବା Allied ନାମରେ ପରିଚିତ । ଯୁଦ୍ଧ ଆରମ୍ଭ ପରଠୁ ଜର୍ମାନୀ ୟୁରୋପ୍‌ର ଗୋଟିଏ ପରେ ଗୋଟିଏ ଦେଶ ଗ୍ରାସ କରି ଚାଲିଥାଏ । ରାଇନ୍ ନଦୀ ପାରହୋଇ ଜର୍ମାନ୍ ବାହିନୀ ଯେତେବେଳେ ପ୍ୟାରିସ୍ ନଗରୀ ଅଭିମୁଖେ ଯାତ୍ରା କଲେ, ଫ୍ରାନ୍‌ସ ସରକାର ବୁଝିପାରିଲେ ଯେ, ଦୁର୍ଦ୍ଧର୍ଷ ଜର୍ମାନ୍‌ବାହିନୀ ପ୍ୟାରିସ୍ ନଗରୀକୁ ନିଶ୍ଚିତ ଭାବେ ଅଧିକାର କରିନେବେ—ସେମାନଙ୍କୁ ବାଧାଦେବାର ଶକ୍ତି ଫ୍ରାନ୍‌ସର ଥାଉ ବା ନ ଥାଉ । ଯଦି ଯୁଦ୍ଧ ଚାଲେ,

ତେବେ ଯୁଦ୍ଧଜନିତ ସଂଘର୍ଷରେ ବିଶ୍ୱର ସର୍ବଶ୍ରେଷ୍ଠ ସୌନ୍ଦର୍ଯ୍ୟମୟୀ ନଗରୀ ପ୍ୟାରିସ୍ ହୁଏତ ଧ୍ୱଂସ ପାଇଯିବ, ଯାହାକି ନା ଫ୍ରାନ୍ସ ସରକାର, ନା ଫ୍ରାନ୍ସ ଜନସାଧାରଣ କେହି ଚାହୁଁନଥିଲେ । ସେମାନେ ପରାଜୟ ସ୍ୱୀକାର କରିବେ ପଛେ ପ୍ୟାରିସ୍ ନଗରୀକୁ ରକ୍ଷା କରିବେ । ଶାନ୍ତିର ପ୍ରତୀକ ଧବଳ-ପତାକା ଉତ୍ତୋଳନ କରି ସେମାନେ ଆତ୍ମସମର୍ପଣ କଲେ । ଫ୍ରାନ୍ସ, ଜର୍ମାନ୍ ଅଧିକାରରେ ରହିଲା । ପ୍ରେସିଡେଣ୍ଟ ଡିଗଲ୍ ଗୋପନରେ ଲଣ୍ଡନ ଚାଲିଗଲେ । ପ୍ୟାରିସ୍ ନଗରୀ ପୂର୍ବର ସେଇ ସୌନ୍ଦର୍ଯ୍ୟମୟୀ ନଗରୀ ହୋଇ ରହିଲା । ୟୁରୋପ ମହାଦେଶରୁ କ୍ରମେ ଆଫ୍ରିକା ମହାଦେଶକୁ ଯୁଦ୍ଧ ବ୍ୟାପିଲା, କିନ୍ତୁ ଭାରତରେ ସେତେବେଳକୁ ଯୁଦ୍ଧର ପଦଧ୍ୱନି ଶୁଣାଯାଇ ନାହିଁ । ଅବଶ୍ୟ ଭାରତରେ କେତେକ ଜିନିଷପତ୍ରର ଦରଦାମ ବୃଦ୍ଧି ପାଉଥାଏ । ସେତେବେଳେ ଗୁଆ ମୁଖ୍ୟତଃ ବର୍ମା ଅଞ୍ଚଳରୁ ଭାରତକୁ ଆମଦାନୀ ହେଉଥିଲା । ଶୁଣାଗଲା, ଗୋଟିଏ ଗୁଆଜାହାଜ ଭାରତକୁ ଆସୁଥିବାବେଳେ ବଙ୍ଗୋପସାଗରରେ ଜାପାନର ବୋମା ମାଡରେ ବୁଡିଗଲା ।

**ଯୁଦ୍ଧଯୋଗୁଁ ଗୁଆ ଅଭାବରେ ଓଡିଆମାନେ**
**ଶୁଖିଲା ନଡିଆ ଓ ତାଳମଞ୍ଜି ଖାଇଲେ ।**

ଫଳରେ ଓଡିଶାରେ ଯେଉଁ ଗୁଆ ସେର ମାତ୍ର ଛଅଣା ଥିଲା, ତାହା ହୁଏତ ଚବିଶି ଘଣ୍ଟା ଭିତରେ ସେର ବାରଟଙ୍କାକୁ ବୃଦ୍ଧି ପାଇଲା । ତା' ପରେ କ୍ରମଶଃ ଗୁଆ ଆଉ ମିଳିଲାନି । ତା'ହେଲେ ପାନଖିଆ ଓଡିଆ କଲେ କ'ଣ ? ଗୁଆର ସ୍ଥାନ ନେଲା ଶୁଖିଲା ନଡିଆଖଣ୍ଡ – ନଡିଆଖଣ୍ଡକୁ କଟା ଗୁଆପରି ଟ୍ରେଟ ଟ୍ରେଟ କରି କାଟି ଏଇ ଦ୍ୱିତୀୟ ମହାଯୁଦ୍ଧ ସମୟରେ ପାନଖିଆ ଓଡିଆମାନେ ବ୍ୟବହାର କରିଥିଲେ । କେହି କେହି ପୁଣି ଗୁଆର ଅଭାବରେ ଶୁଷ୍କ ତାଳମଞ୍ଜିକୁ ମଧ୍ୟ ଟ୍ରେଟ ଟ୍ରେଟ କରି କାଟି ପାନରେ ଖାଇଲେ । କିନ୍ତୁ ସେପର୍ଯ୍ୟନ୍ତ ଭାରତ ଉପରେ ଜାପାନର ଆଖି ପଡି ନଥାଏ । ସେ ପାଖରେ ରେଙ୍ଗୁନ ସହର ଜାପାନ ଅଧିକାର କରିନେଲା ପରେ ଭାରତ ସରକାର ପୂର୍ବାଞ୍ଚଳର ପ୍ରତିରକ୍ଷା ବ୍ୟବସ୍ଥାକୁ ଦୃଢ଼ କରିବା ପାଇଁ ତତ୍ପର ହୋଇ ଉଠିଲେ ।

**ଯୁଦ୍ଧ ଯୋଗୁଁ କଟକ ଆକାଶରେ ଉଡାଜାହାଜ ଓ**
**ରାସ୍ତାରେ ମିଲଟାରୀ ଟ୍ରକ**

ଚୌଦୁଆର ଅଦୂରସ୍ଥ ଚାରବାଟିଆରେ ଏକ ବୃହତ୍ ଏରୋପ୍ଲେନ୍ ଘାଟି ସହିତ ଏକ ସ୍ଥଳବାହିନୀର ଘାଟି ମଧ୍ୟ ସ୍ଥାପିତ ହେଲା । ଏହା

ଫଳରେ କଟକ ଆକାଶରେ ଅନବରତ ରୟାଲ୍ ଇଣ୍ଡିଆନ୍ ଏୟାରଫୋର୍ସ ବା ଯୁଦ୍ଧଉଡ଼ାଜାହାଜ ଆମକୁ ଦେଖିବାକୁ ମିଳିଲି । ଏଥିପାଇଁ ଚୌଧୁରୀବଜାର ଧର୍ମଶାଳା ନିକଟସ୍ଥ ବିମଳାମେଘ ଘୃତ ଉପରେ ଆମର ବନ୍ଧୁ ସମସ୍ତ କଟୁଥିଲି । ଟମି ବା ଇଂଲଣ୍ଡ୍ ପଦାତିକ ବାହିନୀର ସୈନ୍ୟମାନେ ମିଲିଟାରୀ ଜିପ୍‌ରେ ମାର୍କେଟିଂ ପାଇଁ କଟକ ସହରକୁ ନିୟମିତ ଆସୁଥା'ନ୍ତି । ସେମାନଙ୍କ ମାର୍କେଟିଂର ପ୍ରଧାନ ଦ୍ରବ୍ୟ ହେଲି ସିଗ୍ରେଟ । ଯୁଦ୍ଧ ବଜାର ପାଇଁ ସିଗ୍ରେଟ ଆମଦାନୀ କମିଯାଇଛି, ଏଣେ ପ୍ରତିଦିନ ଶହ ଶହ ଟମି ସିଗ୍ରେଟ କିଣିବା ପାଇଁ ମିଲିଟାରୀ ଜିପ୍‌ରେ କଟକ ଆସୁଥା'ନ୍ତି । ସେତେବେଳେ ସିଜର୍ସ ସିଗ୍ରେଟ ବା କଇଞ୍ଚିମାର୍କା ଭାରି ଲୋକପ୍ରିୟ ଥିଲି । ଗୋଟିଏ ପ୍ୟାକେଟକୁ ପାଞ୍ଚ ପଇସା । ଏମାନେ କଟକ ସହରକୁ ଆସିବା ପରେ ଦେଖାଗଲି, ସେମାନଙ୍କର ମଧ୍ୟ ଏଇ ସିଜର୍ସ ସିଗ୍ରେଟ ବହୁତ ପ୍ରିୟ । ସିଗ୍ରେଟ ଦାମ ବଢ଼ିଲି ପ୍ରଥମେ ପାଞ୍ଚପଇସାରୁ ଦଶପଇସା, ତା'ପରେ ଦଶପଇସାରୁ ପ୍ୟାକେଟ୍ ଦଶଟଙ୍କାରେ ବିକ୍ରୀ ହେଲି । ପୁଣି ଗୋଟିଏ ପ୍ୟାକେଟ ସିଗ୍ରେଟ୍ ପାଇଁ ଦୋକାନୀ ପାଖରେ କି ଆକୁଳି ନିବେଦନ ! ସେଦିନ କ୍ୟାପିଟାଲ୍ ସିନେମା ପାଖରେ ମୁଁ ଛିଡ଼ା ହୋଇଥାଏ, ସିଗ୍ରେଟ ପାଉନି ବୋଲି ଗୋଟିଏ ଟମିର ଆଖିରେ ଲୁହ ଭର୍ତ୍ତି ହୋଇଗଲାଣି । ମୋ' ପକେଟ୍‌ରେ ଗୋଟିଏ ପ୍ୟାକେଟ ସିଗ୍ରେଟ ଥାଏ, ପ୍ୟାକେଟଟି ମୁଁ ତା' ହାତକୁ ବଢ଼ାଇଦେଲି । ମୋ' ହାତଧରି ସେ ହ୍ୟାଣ୍ଡସେକ୍ କରି ନାଟକୀୟ ଅଭିବ୍ୟକ୍ତିରେ ଅବୋଧ ଇଂରାଜୀ ଭାଷାରେ କେତେ କ'ଣ କହିଯାଉଥାଏ । ମୋ' ହାତକୁ ଦଶଟଙ୍କିଆ ନୋଟଟି ବଢ଼େଇଦେଲି ଓ ମତେ ତା' ଜିପ୍‌ରେ ନେଇ ଘରେ ଛାଡ଼ିଦେଇ ଆସିବା ପାଇଁ ନିମନ୍ତ୍ରଣ କଲି । ମୁଁ ଗଲି ତ ନାହିଁ—ଆଉ ଟଙ୍କା ବା ନିଅନ୍ତି କପରି ! ଟଙ୍କା ନେଲି ନାହିଁ । ଧନ୍ୟବାଦ୍ ଜଣାଇ ସେ ଚାଲିଗଲି—ତାକୁ ସେଦିନ ଗୋଟିଏ ପ୍ୟାକେଟ୍ ସିଗ୍ରେଟ୍ ଦେଇପାରିଛି ବୋଲି ମୁଁ ମନେ ମନେ ଭାରି ଖୁସି ହୋଇଗଲି । ଗୋରାବାଟିଆରୁ କେବଳ ଧୂମପାନ ପିପାସା ମେଣ୍ଟାଇବା ପାଇଁ ସେମାନେ ଯେ କଟକ ଆସିଥିଲେ ତା' ·ନୁହେଁ, ସେମାନଙ୍କର ଶାରୀରିକ କ୍ଷୁଧା ନିବାରଣ ପାଇଁ ମଧ୍ୟ ସେମାନେ ବେଳେବେଳେ ମଧ୍ୟରାତ୍ରିରେ କଟକ ଆସୁଥିଲେ । ସେଦିନର ଘଟଣା—ଗୋଟିଏ ବଡ଼ ମିଲିଟାରୀ ଟ୍ରକରେ କେତେଜଣ ସାମରିକ କର୍ମଚାରୀ କଟକ ସହରର କୌଣସି ଏକ ସ୍ଥାନରେ ଦେହ ବିଳାସିନୀମାନଙ୍କ ସହ କିଛି ସମୟ ବିତାଇ ଫେରିଆସିବାବେଳେ ଏକ ଗଳିରାସ୍ତାରେ ଗୋଟିଏ ଝରଣା ଗଭୀର ଡ୍ରେନରେ ଟ୍ରକର ପଛଚକଟି ଗଳିପଡ଼ିଲି । ମାଟିଡ୍ରେନ, ଅଣଓସାରିଆ ରାସ୍ତା, ଆଗକୁ ମାଡ଼ିଗଲେ ଲୋକଙ୍କ

ଘରଦ୍ୱାର ଭାଙ୍ଗିଯିବ । ପଛକୁ ଫେରିଯିବାର ବାଟ ନାହିଁ । ଶୁଣାଯାଏ, ଟ୍ରକଟିକୁ ଉଠାଇବା ପାଇଁ ସେଇ ଅଞ୍ଚଳରେ ବାସିନ୍ଦାମାନଙ୍କଠାରୁ କିଛି ସାହାଯ୍ୟ ମଧ୍ୟ ପାଇଥିଲେ । କିନ୍ତୁ ଫଳ କିଛି ହେଲ ନାହିଁ । ରାତି ବଢିଯାଉଚି । ଟ୍ରକରେ ଯେଉଁ ଆରୋହୀମାନେ ଥିଲେ, ସେମାନେ ସମସ୍ତେ ଚାଲିଗଲେ । କେବଳ ଡ୍ରାଇଭର ଗାଡ଼ିରେ ରହିଗଲା । ତା' ଜିମାରେ ଟ୍ରକ୍ ରହିଚି । ତାକୁ ଛାଡ଼ି ସେ ଯିବ କେମିତି ? ଟ୍ରକ୍‌କୁ ଏଠି ଛାଡ଼ି ସେ ଚାରିବାଟିଆରେ ପହଞ୍ଚିଥିଲେ କୋର୍ଟ ମାର୍ଶାଲ୍‌ରେ ହୁଏତ ପ୍ରାଣଦଣ୍ଡ ହୋଇଥା'ନ୍ତା । ସେ ରହିଗଲା । ସକାଳୁ ଦେଖାଗଲା, ସେ ଶଭଲଭର୍‌ରେ ଆତ୍ମହତ୍ୟା କରି ଷ୍ଟିୟରିଂ ଉପରେ ଢଳିପଡ଼ିଛି । ପୁଣି ଦେଖାଯାଇଚି କଟକ ସହରର ଗୋଟିଏ ମୁଖ୍ୟରାସ୍ତା ଉପରେ ଗୋଟିଏ ଚାନ୍ଦିରୁପାର ଶ୍ରେଷ୍ଠ ଭାରକସି ଗହଣା ଦୋକାନୀ ଥିଲା । ଏଇ ଟମିମାନେ ଚାନ୍ଦିଗହଣା ପ୍ରତି ଆକୃଷ୍ଟ ହୋଇ ବହୁ ସଂଖ୍ୟାରେ ସେ ଦୋକାନକୁ ଆସୁଥିଲେ । ତା'ପରେ ଦେଖାଗଲା, ସେ ଦୋକାନୀଟି ବହୁଧନ ସମ୍ପତ୍ତିର ମାଲିକ ହୋଇପାରିଛି ।

ଯୁଦ୍ଧ ତ ଚାଲିଚି । ଆମେରିକାର ସର୍ବବୃହତ୍ତ ଯୁଦ୍ଧ ଜାହାଜ ପାର୍ଲବନ୍ଦର ଜାପାନ୍‌ର ବୋମା ମାଡ଼ରେ ବିଧ୍ୱସ୍ତ ହୋଇଯାଇଚି—କଲିକତାର ଖିଦିର୍‌ପୁର୍ ବନ୍ଦର ଉପରେ ଜାପାନୀ ଯୁଦ୍ଧଜାହାଜମାନେ ନିର୍ମମ ଭାବରେ ବୋମା ବର୍ଷଣ କରି ନିରାପଦରେ ଫେରିଯାଇଚନ୍ତି । ମେଦିନାପୁର ଜିଲ୍ଲାରେ ଗୋଟିଏ ଶ୍ରେଷ୍ଠ ଉଡ଼ାଜାହାଜ କରେଇକଲା ଘାଟି ଉପରେ ମଧ୍ୟ ଜାପାନର ବୋମାବର୍ଷଣ ହୋଇଯାଇଚି । କିନ୍ତୁ ଚାରିବାଟିଆ ବିମାନଘାଟିରେ ସେମାନଙ୍କର ଏ ପର୍ଯ୍ୟନ୍ତ ଦୃଷ୍ଟି ପଡ଼ିନାହିଁ । ଏ ଭିତରେ କିନ୍ତୁ ଭାରତର ଆଭ୍ୟନ୍ତରୀଣ ରାଜନୀତିରେ ଉଲ୍ଲେଖନୀୟ ପରିବର୍ତ୍ତନ ଘଟିଚି । ଉଣେଇଶ' ସଇଁତିରିଶି ମସିହାରେ ପ୍ରତିଷ୍ଠିତ ପ୍ରାଦେଶିକ କଂଗ୍ରେସ ଶାସନ ସବୁ ଚାଲିଥାଏ । ବିଶ୍ୱଯୁଦ୍ଧ ଆରମ୍ଭ ହେବାପରେ ବ୍ରିଟିଶ ସରକାର ଆଶା କରିଥିଲେ ଯେ, ଯେହେତୁ ମିତ୍ରଶକ୍ତି Allied ଜର୍ମାନୀର ନାଜିବାଦ ବିରୋଧରେ ସଂଗ୍ରାମ କରିଛନ୍ତି, ଭାରତୀୟ ଜାତୀୟ କଂଗ୍ରେସ ନିଶ୍ଚେ ଏ ଯୁଦ୍ଧକୁ ସମର୍ଥନ ଜଣାଇବେ । କିନ୍ତୁ ସ୍ୱୟଂ ମିତ୍ରଶକ୍ତି ଏକ ସାମ୍ରାଜ୍ୟବାଦୀ ଗୋଷ୍ଠୀ ବୋଲି କଂଗ୍ରେସ ଏ ଯୁଦ୍ଧକୁ ସମର୍ଥନ କରିବ ନାହିଁ ବୋଲି ସ୍ପଷ୍ଟ ଜଣାଇ ଦେଇଥିଲା । ଏହାପରେ ଭାରତ ସରକାର ଭାରତର ଜନମତକୁ ଅପେକ୍ଷା ନ ରଖି ଏ ଯୁଦ୍ଧରେ ମିତ୍ରଶକ୍ତି ପ୍ରତି ଭାରତର ସମର୍ଥନ ଅଛି ବୋଲି ଘୋଷଣା କରିଦେଲେ । ଏ ଆଶଙ୍କା କଂଗ୍ରେସ ମହଲରେ ଥିଲା ଏବଂ ସେଥିପାଇଁ କଂଗ୍ରେସ ପ୍ରସ୍ତୁତ ହୋଇ ରହିଥିଲା । ଭାରତୀୟମାନଙ୍କର ଜନମତ ନ ନେଇ ଇଂରେଜ ସରକାର ଏଇ ଯୁଦ୍ଧରେ ଭାରତର ସମର୍ଥନ ରହିଚି ବୋଲି ଘୋଷଣା କରିଥିବା ଯୋଗୁ ତା'ର

ପ୍ରତିବାଦରେ ଦେଶର ସବୁ କଂଗ୍ରେସ ଶାସିତ ପ୍ରଦେଶମାନଙ୍କରୁ କଂଗ୍ରେସ ୧୯୩୯ରେ ଇସ୍ତଫା ପ୍ରଦାନ କଲା । ଏହାପରେ ୧୯୪୦ ମସିହାରେ ଚାଲିଲା କଂଗ୍ରେସ ପକ୍ଷରୁ ବ୍ୟକ୍ତିଗତ ସତ୍ୟାଗ୍ରହ ଓ କାରାବରଣ ।

## ଛତ୍ରବଜାର ଧାନ ବଲଡରେ ବ୍ରିଟିଶ୍ ଲଢୁଆ ଉଡ଼ାଜାହାଜ

ଯୁଦ୍ଧର ଘନଘଟା ବ୍ୟାପିଚାଲିଛି । ଏଇ ସଙ୍ଗେ ସଙ୍ଗେ ଖାଦ୍ୟଠୁ ବସ୍ତ୍ର ଓ ଗମନାଗମନ ଆଦିର ଅସମ୍ଭବ ମୂଲ୍ୟ ବୃଦ୍ଧି ଘଟିଛି । ପ୍ରାଚ୍ୟ ଭୂଖଣ୍ଡରେ ଜାପାନ୍ ଯେ ଅତ୍ୟନ୍ତ ଶକ୍ତିଶାଳୀ ହୋଇ ଉଠିଛି, ତା'ର ପ୍ରତ୍ୟକ୍ଷ ସୂଚନା ବହୁକ୍ଷେତ୍ରରେ ମିଳିଲାଣି । କଟକ ସହରରେ ଦିନେ ଆମେ ମେସ ଛାତ ଉପରେ ଠିଆ ହୋଇଚୁ (ସେତେବେଳେ ଛାତ ଉପରେ ଠିଆ ହୋଇ ଚାରବାଟିଆରୁ ବ୍ରିଟିଶ ଉଡ଼ାଜାହାଜ ସବୁର ଗମନାଗମନ ଦେଖିବାର ସଉକ୍ କଟକ ସହରବାସୀଙ୍କର ହୋଇଗଲାଣି ।) ସେଦିନ ଦେଖିଲୁ ଦକ୍ଷିଣ ଦିଗରୁ ଦୁଇଟି ଲଢୁଆ ବିମାନ ପରସ୍ପର ସହିତ ଯୁଦ୍ଧରତ ହୋଇ ଆସୁଚନ୍ତି । ଏ ଦୁଇଟିରୁ ଗୋଟିଏ ବ୍ରିଟିଶ୍ ଓ ଅନ୍ୟଟି ଜାପାନୀ ଉଡ଼ାଜାହାଜ । ବ୍ରିଟିଶ୍ ଉଡ଼ାଜାହାଜରୁ ଜାପାନ୍ ଉଡ଼ାଜାହାଜ ଉପରେ ଓ ଜାପାନ୍ ବିମାନରୁ ବ୍ରିଟିଶ୍ ବିମାନ ଉପରେ ଅନବରତ ଗୁଳିବର୍ଷଣ ଚାଲିଚି । କିଛି ଦୂର ଆସିଲାପରେ ବ୍ରିଟିଶ୍ ବିମାନ କ୍ଷତବିକ୍ଷତ ହୋଇ ଛତ୍ରବଜାର ଧାନ ବଲରେ ଡାଇଭ କଲାପରି ଗଲାପଡ଼ିଲା । ଜାପାନ ଉଡ଼ାଜାହାଜଟି ସଗର୍ବରେ ତା' ବାଟେ ବାଟେ ଚାଲିଗଲା । ଆଉ ଦିନେ ସେଇ କଟକ ଆକାଶରେ ଦେଖାଗଲା, ପୂର୍ବଦିଗରୁ ଗୋଟିଏ ଜାପାନ୍ ଉଡ଼ାଜାହାଜ ଆସି ପଶ୍ଚିମ ଆଡ଼କୁ ତୀବ୍ର ଗତିରେ ଚାଲିଗଲା । କିଛି ସମୟ ପରେ ଚାରବାଟିଆରୁ ଚାରଗୋଟି ମିତ୍ରଶକ୍ତି ଫାଇଟର୍‌ପ୍ଲେନ ଜାପାନୀ ପ୍ଲେନ୍‌ର ଅନୁସନ୍ଧାନରେ ବାହାରିପଡ଼ି କଟକ ଆକାଶ ଉପରେ ଉଡ଼ିଗଲେ । ଚାରିଗୋଟି ବିରାଟ ଫାଇଟରପ୍ଲେନ୍ ଯେତେବେଳେ କଟକ ସହର ଉପରେ ଏକାଠି ଉଡ଼ିଗଲେ, ସେତେବେଳେ ସେ ପ୍ଲେନ୍ ଚାରୋଟିର ମିଳିତ ଗର୍ଜନରେ କଟକ ସହରର ବକ୍ଷ ବିଦୀର୍ଣ୍ଣ ହୋଇଗଲାପରି ଜଣା ପଡ଼ିଗଲା । ଆମେ ସବୁ ସ୍ତବ୍ଧ ହୋଇଗଲୁ । ଗୋଟିଏ ପ୍ଲେନକୁ ଚାରୋଟି ପ୍ଲେନ୍ ! ଆମେ ଧରିନେଲୁ ଯେ, ଜାପାନୀ ପ୍ଲେନ ଏକାବେଳକେ ପୋଡ଼ି ପାଉଁଶ ହୋଇଯିବ । ଯଥା-ସମୟରେ ଚାର୍‌ବାଟିଆର ଟ୍ରେନ ଚାରିଟି ଘାଟିକି ଫେରି ଆସିବାର ଆମେ ଦେଖିଲୁ । ଅବଶ୍ୟ ଏମାନଙ୍କର ଏ ବାହୁଡ଼ା ଯାତ୍ରା ଗୌରବ କି ପରାଭବର ଗ୍ଲାନି ବହନ କରି ଆସିଚି, ସେ କଥା ଜାଣିବାର ଉପାୟ ଆମର ନ ଥିଲା । ··ପରେ ଅବଶ୍ୟ ଜଣାପଡ଼ିଲା ଯେ, ଜାପାନୀ ପ୍ଲେନଟି ଆଠଗଡ଼ ରାଜାସାହେବ ଶ୍ରୀ ରାଧାନାଥ ଦେବବର୍ମାଙ୍କ ବ୍ୟକ୍ତିଗତ ଏୟାର୍‌ଷ୍ଟ୍ରିପ୍‌ରେ ଓହ୍ଲାଇ ସେଠି ପ୍ଲେନରେ

ପେଟ୍ରୋଲ ଭର୍ତ୍ତିକରି ନିଗ୍ରାପଦରେ ତା' ନିଜ ମାର୍ଗରେ ଫେରିଯାଇଛି । (ଆଠଗଡ଼ ରାଜାସାହେବଙ୍କର ନିଜର ଗୋଟିଏ ଉଡ଼ାଜାହାଜ ଥିଲା ଓ ସେ ନିଜେ ଜଣେ 'ବି' ଶ୍ରେଣୀର ପାଇଲଟ୍ ଥିଲେ) । ଏ ଘଟଣାରେ ସବୁଠୁ ବେଶୀ ଚର୍ଚ୍ଚାର ପ୍ରସଙ୍ଗ ଏଇଆ ଥିଲା ଯେ, ଯେମିତି ଭାବରେ ବା ଯେମିତି ଢଙ୍ଗରେ ଜାପାନୀ ପ୍ଲେନଟି ଆଠଗଡ଼ ଏରୋଡ୍ରମ୍‌ରେ ଓହ୍ଲାଇଲା, ସେଥିରୁ ଜଣାପଡୁଥିଲା ଯେ, ଏ ଏରୋଡ୍ରମ୍‌ର ସ୍ଥିତି ବା ଅବସ୍ଥିତି ସମ୍ପର୍କରେ ସେମାନେ ପୂର୍ବରୁ ଅତି ନିବିଡ଼ ଭାବରେ ପରିଚିତ । ···ଜାପାନୀ ପ୍ଲେନ୍ ତ ଆସିଲା ଓ ଫେରିଗଲା; କିନ୍ତୁ ଏଥିପାଇଁ ନିର୍ଯ୍ୟାତନା ଭୋଗିବାକୁ ପଡ଼ିଲା ଆଠଗଡ଼ ରାଜାସାହେବଙ୍କୁ । ଏଇ ପ୍ଲେନ ଘଟଣା ଯୋଗୁ ସେ ଇଂରେଜ ସରକାରଙ୍କ ବିଷଦୃଷ୍ଟିରେ ପଡ଼ିଲେ । ଫଳରେ ରାଜାଙ୍କୁ ଦେଶାନ୍ତର ଦଣ୍ଡ ମିଳିଥିଲା । ସେ ହେଲେ ଦେଶାନ୍ତରୀ । ଭାରତ ସ୍ୱାଧୀନ ହେବାର ଅଳ୍ପ କିଛି କାଳ ପୂର୍ବରୁ ସେ ଆଠଗଡ଼ ଫେରି ଆସିଥିଲେ । (ଏଇଠି ଜାପାନୀ ପ୍ଲେନ ଓ ବ୍ରିଟିଶ୍ ପ୍ଲେନ ମଧ୍ୟରେ ଏକ ତୁଳନାତ୍ମକ ରମ୍ୟ କାହାଣୀ ପ୍ରଦାନ କରାଯାଉଛି । ଯେଉଁଦିନ କଲିକତା ଖିଦିର୍‌ପୁର୍ ବନ୍ଦର ଉପରେ ଜାପାନ ବୋମା ବର୍ଷଣ କଲା, ସେଦିନ କଟକର ଜଣେ ବିଶିଷ୍ଟ ଅଧିବାସୀ ଶ୍ରୀ ସୁବୋଧ ବିଶ୍ୱାସ କଲିକତାରେ ଥିଲେ । ତାଙ୍କ ମୁହଁରୁ ମୁଁ ଶୁଣିଛି ଯେ, ଗୋଟିଏ ବ୍ରିଟିଶ୍ ପ୍ଲେନ ଉଡ଼ିଗଲେ ସେ ଶବ୍ଦରେ ଘରଦ୍ୱାର କମ୍ପିଯାଏ । କିନ୍ତୁ ସେଦିନ ବହୁ ସଂଖ୍ୟାରେ ଜାପାନୀ ପ୍ଲେନ୍ କଲିକତା ଆକାଶରେ ଉଡ଼ିଗଲାବେଳେ ଜଣାଗଲା ଯେମିତି ଏରୋପ୍ଲେନ ନୁହେଁ, ଗୋଟାଏ ଖୁବ ବଡ଼ ମହୁମାଛିର ଦଳ ତାଙ୍କର ସ୍ୱାଭାବିକ ଭଣ ଭଣ ଶବ୍ଦ କରି କଲିକତା ସହର ଉପରକୁ ଉଡ଼ିଯାଉଛନ୍ତି । ପୁଣି ଜଣାଯାଇଛି ଯେ, ସେଦିନ ଖିଦିର୍‌ପୁର୍‌ଠାରେ କେବଳ ସେଇ ବନ୍ଦର ଅଞ୍ଚଳରେ ହିଁ ବୋମା ପଡ଼ିଛି । ସାଧାରଣ ଧନଜୀବନ କିଛି ନଷ୍ଟ ହୋଇନାହିଁ) ।

## ପ୍ରିନ୍‌ସ ଅଫ୍ ଓ୍ୱେଲସର ସଳିଳ ସମାଧି

ଏଇ ସମୟରେ ବ୍ରିଟିଶ ତଥା ମିତ୍ରଶକ୍ତି ପାଇଁ ଆଉ ଏକ ଦୁର୍ଭାଗ୍ୟଜନକ ଘଟଣା ଘଟିଗଲା । ପୃଥିବୀର ସର୍ବବୃହତ ଓ ସବୁଠୁ ଶକ୍ତିଶାଳୀ ଇଂଲଣ୍ଡ ଯୁଦ୍ଧ ଜାହାଜ ପ୍ରିନ୍‌ସ ଅଫ୍ ଓ୍ୱେଲସ୍‌ର କିଛି ମରାମତି ପାଇଁ ଜର୍ମାନୀ ଭୟରେ ତାକୁ ଇଂଲଣ୍ଡ ଉପକୂଳରେ ନ ରଖି ପୂର୍ବାଞ୍ଚଳ ସିଙ୍ଗାପୁର ବନ୍ଦରକୁ ପଠାଇ ଦିଆଗଲା । ଏ ଜାହାଜର ସର୍ବାଙ୍ଗ ଅଠରଇଞ୍ଚ ମୋଟା ଇସ୍ପାତ ଖଣ୍ଡରେ ନିର୍ମିତ ହୋଇଥିଲା, ଯାହାଦ୍ୱାରା କୌଣସି ତୋପ, ରକେଟ୍, ବୋମା ବର୍ଷଣ ଓ ଟର୍‌ପେଡୋ ଆଦି ବାହ୍ୟ ଆକ୍ରମଣରେ ତାର କେହି କିଛି କ୍ଷତି ଘଟାଇ ପାରିବେନି । ପ୍ରିନ୍‌ସ ଅଫ୍ ଓ୍ୱେଲ୍‌ସର ଏହି ଶକ୍ତି ଯୋଗୁଁ ଏହା ବିଶ୍ୱର ସବୁ ବଡ଼ ବଡ଼ ରାଷ୍ଟ୍ରମାନଙ୍କ

ନିକଟରେ ପଶିଚାଡ । ଏବେ ଜାପାନର ଚିନ୍ତା ପଡ଼ିଲା କିପରି ସେମାନେ ଏଇ ଦୁର୍ଦ୍ଧର୍ଷ ଯୁଦ୍ଧ ଜାହାଜକୁ ଅଚଳ ଅକାମୀ କରିଦେବେ । କିଛିଦିନ ପରେ ସେମାନେ ଏକ ସିଦ୍ଧାନ୍ତରେ ପହଞ୍ଚିଲେ । ବୋମା, ରକେଟ କି ତୋପ ଦ୍ୱାରା ଏ ଜାହାଜର କିଛି କ୍ଷତି ହବନି । ସେଥିପାଇଁ ସେମାନେ ଏମିତି ଏକ ବୋମା ତିଆରି କରିବେ ଯାହା ସ୍ୱୟଂଚାଳିତ । ଅର୍ଥାତ ଚାଳକ ଏଇ ବୋମାକୁ ନିଜେ ଚଳାଇ ନେଇ ଜାହାଜର ଫନେଲ୍ ଭିତରେ ବୋମା ସହିତ ଗଳିପଡ଼ିବ । ଏହାପରେ ଅବଶ୍ୟ ସେ ଚାଳକର କିଛି ସତ୍ତା ରହିବନି, କିନ୍ତୁ ସେଇ ସଙ୍ଗେ ସଙ୍ଗେ ଜାହାଜ ଭିତରର ଇଞ୍ଜିନ୍ ଧ୍ୱଂସ ପାଇଯିବ । ଏଇପରି ଦୁଇଗୋଟି ବୋମା ନିର୍ମିତ ହେଲା ଓ ଜାପାନର ଦେଶପ୍ରେମୀ ଭାଇ ଦୁଇଜଣ ଗୋଟିକ ପରେ ଗୋଟିଏ ବୋମା ସହିତ ପ୍ରିନ୍ସ ଅଫ୍ ଓ୍ୱେଲ୍ସ ଜାହାଜର ଗର୍ଭ ଭିତରକୁ ନିଜକୁ ନିକ୍ଷେପ କରି ନିମିଷକରେ ନିଜେ ଧ୍ୱଂସପ୍ରାପ୍ତ ହେବା ସହିତ ବିଶ୍ୱର ଶକ୍ତିମାନ ଯୁଦ୍ଧ ଜାହାଜ ପ୍ରିନ୍ସ ଅଫ୍ ଓ୍ୱେଲସକୁ ସବୁଦିନ ପାଇଁ ଅଚଳ ଅକାମୀ କରି ଗଭୀର ସମୁଦ୍ର ଭିତରେ ବୁଡ଼ାଇ ରଖିଲେ । ଏଇ ଯୁଦ୍ଧ ସମୟରେ ଜାପାନୀ ସୈନ୍ୟ-ବାହିନୀର ଦେଶପାଇଁ ଆତ୍ମବଳି ଦେବାର ଏକ ଦୃଷ୍ଟାନ୍ତ ଏଠି ପ୍ରଦତ୍ତ ହେଲା । ଧରିନିଆଯାଉ, ଯୁଦ୍ଧ ଭୂମିରେ ଗୋଟିଏ ଜାପାନୀ ସୈନ୍ୟ କମ୍ପାନୀ ଫ୍ରଣ୍ଟ ବା ସମ୍ମୁଖ ଯୁଦ୍ଧକୁ ଗଲେ ସେଦିନ ଯୁଦ୍ଧ ଶେଷରେ ଯେଉଁମାନେ ଘାଟିରୁ ଫେରିଆସିଲେ, ମୂଳ ତାଲିକାରେ ସେମାନଙ୍କ ନାମ ଉପରେ ନାଲିଗାର ଟାଣି ନିଶ୍ଚିହ୍ନ କରିଦିଆଗଲା । ଆଉ ଯେଉଁମାନେ ସମ୍ମୁଖ ଯୁଦ୍ଧରେ ପ୍ରାଣବଳି ଦେଲେ, ସେମାନଙ୍କ ନାମର ଡାହାଣ ପାଖରେ ସବୁଜ କାଳିରେ ଠିକ୍ ମାର୍କ ବା ଚିହ୍ନ ଦିଆଯାଇ ସେମାନଙ୍କୁ ଅମରତ୍ୱ ପ୍ରଦାନ କରାଗଲା ।...ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳର ଆଉ ଗୋଟିଏ ଘଟଣା । କଟକର ସି.ଆଇ.ଡି. ପୋଲିସ ଇନସ୍‌ପେକ୍ଟର ପରଲୋକଗତ ଶ୍ରୀଯୁକ୍ତ ବିମଳ ଘୋଷଙ୍କ ହାତକୁ ଦୁଇଟି ଜାପାନିଜ୍ ଫିଲ୍ମ-ରିଲ୍ ଆସିଲା । ସେବେଳର କ୍ୟାପିଟାଲ ସିନେମାରେ ରିଲ ଦୁଇଟି ପ୍ରଦର୍ଶିତ ହେଲା । ବିମଳବାବୁଙ୍କ ସହିତ ମୁଁ ହଲ୍‌ରେ ଉପସ୍ଥିତ ଥିଲି । ଗୋଟିଏ ରିଲ୍‌ରେ ଆମେ ଦେଖିଚୁ ଯେଉଁ ବୟସରେ ଆମେମାନେ ସେବେଳରେ ଷଷ୍ଠ ବା ସପ୍ତମ ଶ୍ରେଣୀରେ ପଢ଼ିବାର କଥା, ସେଇ ବୟସର ଜାପାନିଜ ଛାତ୍ର-ଛାତ୍ରୀମାନେ ଉଡ଼ାଜାହାଜ ଇଞ୍ଜିନ୍‌ର ସୂକ୍ଷ୍ମାତିସୂକ୍ଷ୍ମ ଡାଏଗ୍ରାମ୍ ଓ ଅଙ୍କ ପ୍ରଭୃତି ଜଟିଳ ବିଷୟ ସବୁର ଶିକ୍ଷାଲାଭ କରୁଚନ୍ତି । ଅନ୍ୟ ରିଲ୍‌ଟିରେ ଦେଖିଲୁ ସେଇ ବୟସର ଜାପାନୀ ପିଲାମାନଙ୍କୁ ବୋଟ୍‌ରେ ଗଭୀର ସମୁଦ୍ର ଭିତରକୁ ନିଆଯାଉଚି । ତା'ପରେ ସେମାନଙ୍କ ଅଣ୍ଟାରେ ଦଉଡ଼ି ବାନ୍ଧି ବୋଟରୁ ସମୁଦ୍ର ଭିତରକୁ ଫିଙ୍ଗି ଦିଆଯାଉଚି—ତା'ପରେ ସେମାନେ ପହଁରି ପହଁରି ସମୁଦ୍ର କୂଳକୁ

ଆସୁଚନ୍ତି ।···ଏଇ ଜାପାନର ସେ ଭାଇଦୁଇଟି ନିଜ ପ୍ରାଣବଳି ଦେଇ ତତ୍କାଳୀନ ପୃଥିବୀର ସର୍ବଶକ୍ତିମାନ ଇଂରେଜ ଯୁଦ୍ଧ ଜାହାଜ ପ୍ରିନ୍ସ ଅଫ୍ ଓ୍ୱେଲ୍ସଙ୍କୁ ସମୁଦ୍ରର ଅତଳ ଗର୍ଭରେ ସମାଧିସ୍ଥ କରିଦେଲେ । ପ୍ରିନ୍ସ ଅଫ୍ ଓ୍ୱେଲ୍ସର ଏଇ ଅକାଳ ମୃତ୍ୟୁ ସମଗ୍ର ଇଂରେଜ ଜାତିକୁ ଏପରି ଶୋକାଚ୍ଛନ୍ନ କରି ରଖିଥିଲା ଯେ, ସେମାନେ ଖାଦ୍ୟପେୟ ସ୍ପର୍ଶ କରିପାରି ନଥିଲେ । ଏ ଅବଧି ପ୍ରିନ୍ସ ଅଫ୍ ଓ୍ୱେଲ୍ସ ସମୁଦ୍ର ଗର୍ଭରେ ସମାଧିସ୍ଥ ହୋଇ ରହିଚି । ତାକୁ ଉଦ୍ଧାର କରାଯାଇ ପାରିନାହିଁ ।

**ବଙ୍ଗୋପସାଗରରେ ସାତଗୋଟି**

**ବ୍ରିଟିଶ ଜାହାଜର ଧ୍ୱଂସପ୍ରାପ୍ତି**

ପ୍ରିନ୍ସ ଅଫ୍ ଓ୍ୱେଲ୍ସ ବୁଡ଼ିଯିବାର କେଇଦିନ ପରେ ବଙ୍ଗୋପସାଗରରେ ଯେଉଁ ନିର୍ମମ ଓ ପ୍ରଳୟଙ୍କରୀ ଘଟଣା ଘଟିଗଲା, ସେଥିରୁ ଆମେ ଜାଣିପାରିଲୁ ଯେ, ପୂର୍ବାଞ୍ଚଳରେ ବ୍ରିଟିଶ ସାମ୍ରାଜ୍ୟର ଏକ ବିରାଟ ଭୂଖଣ୍ଡ ଭାରତ ସହି ଭାରତ ଉପକୂଳରେ ଯେଉଁ ବଙ୍ଗୋପସାଗର ଅବସ୍ଥିତ, ସେଠି ମିତ୍ରଶକ୍ତି ତଥା ବ୍ରିଟିଶ ସାମ୍ରାଜ୍ୟର ଯେପରି ଆଉ କିଛି ସତ୍ତା ନାହିଁ । ସେଦିନ ସକାଳ ପ୍ରାୟ ଆଠଘଣ୍ଟା । ଦେଖାଗଲା ବାଲେଶ୍ୱର ଉପକୂଳ ସମୁଦ୍ରରେ ଏକ ଜାହାଜଭେଲା ଚାଲିଛି । ସେଥିରୁ ଗୋଟିଏ ହେଉଛି ବ୍ରିଟିଶ ଫ୍ରାଇଗେଟ୍ ବା ଯୁଦ୍ଧଜାହାଜ । ଏହାର କ୍ୟାପ୍ଟେନ୍ ଥିଲେ ଜଣେ ଇଂରେଜ । ବାକି ଛଅଗୋଟି କାର୍ଗୋ ବା ମାଲବାହୀ ଜାହାଜ । ଏହି ସବୁ ଜାହାଜରେ ଯେଉଁ କର୍ମଚାରୀ ଥିଲେ, ସେମାନେ ହେଲେ ଶ୍ୱେତାଙ୍ଗ ଆମେରିକାନ୍; ଶ୍ୱେତାଙ୍ଗ ବ୍ରିଟିଶ, ଆମେରିକାନ୍ ନିଗ୍ରୋ ଓ ଭାରତ ବର୍ମା ସିଲୋନ ପ୍ରଭୃତି ବ୍ରିଟିଶ ଶାସନାଧୀନ ଦେଶମାନଙ୍କର ଅଧିବାସୀମାନେ । ଜାହାଜଭେଲାଟି ଚାଲିଛି । ଏମାନଙ୍କ ଠାରୁ ଯଥାବିଧି ଦୂରତ୍ୱ ରକ୍ଷାକରି ଗୋଟିଏ ଜାପାନିଜ୍ କ୍ରୁଇଜର ଦେଖାଦେଲା । ସଙ୍ଗେ ସଙ୍ଗେ ବ୍ରିଟିଶ ଯୁଦ୍ଧଜାହାଜକୁ ଲକ୍ଷ୍ୟ କରି ଜାପାନୀ କ୍ରୁଇଜର୍‌ରୁ ଏକ ସତର୍କ ବାଣୀ ଭାସିଆସିଲା । କ୍ରୁଇଜର କହୁଛି—ଶୁଣ କ୍ୟାପଟେନ୍ ! ବର୍ତ୍ତମାନ ବଙ୍ଗଦେଶରେ ଦୁର୍ଭିକ୍ଷ ଦେଖାଦେଇଛି । ଲକ୍ଷ ଲକ୍ଷ ଲୋକ ମରୁଛନ୍ତି । ଅଥଚ ତୁମେ ଲୁଚାଇକରି କଲିକତାରୁ ଏତେ ବିପୁଳ ପରିମାଣର ଖାଦ୍ୟସାମଗ୍ରୀ ତମ ଦେଶ ଇଂଲଣ୍ଡକୁ ନେଇଯାଉଛ । ତୁମକୁ ସତର୍କ କରେଇ ଦିଆଯାଉଛି, ତୁମେ ଏଇ ଛ'ଗୋଟି କାର୍ଗୋ ଜାହାଜକୁ କଲିକତା ଫେରାଇ ଦିଅ । ଯଦି ଏଥିରେ ଅବହେଳା କର, ତେବେ ତୁମ ଫ୍ରାଇଗେଟ୍‌ର ଏଇଠି ସଲିଳ ସମାଧି ହେବ ଓ ଏ ଛ'ଗୋଟି ଖାଦ୍ୟଦ୍ରବ୍ୟବାହୀ ଜାହାଜକୁ ଆମେ କଲିକତା ବନ୍ଦରକୁ ଫେରାଇ ନେଇ ଦୁର୍ଭିକ୍ଷ-ପ୍ରପୀଡ଼ିତ ଅଞ୍ଚଳକୁ ଖାଦ୍ୟ ପହଞ୍ଚାଇ ଦେବୁ ।

ଜାପାନୀ କ୍ରୁଇଜର ଠାରୁ ଏପରି ସତର୍କବାଣୀ ଶୁଣି ଫ୍ରାଇଗେଟ୍ ଭିତରେ ବିଶୃଙ୍ଖଳା ଖେଳିଗଲା । ଇଂଲଣ୍ଡ ଉପରେ ଜର୍ମାନୀର ଅନବରତ ବୋମାମାଡ଼ ଓ ଯୁଦ୍ଧ-ଜନିତ ଅନ୍ୟାନ୍ୟ କାରଣରୁ ସେତେବେଳେ ଇଂଲଣ୍ଡରେ ଉତ୍କଟ ଖାଦ୍ୟାଭାବ ଦେଖାଦେଇଥାଏ । କିନ୍ତୁ ତା'ଠାରୁ ବଳି ଆହୁରି କରୁଣ ଓ ଦୟନୀୟ ଅବସ୍ଥା ଦୁର୍ଭିକ୍ଷ-ପ୍ରପୀଡ଼ିତ ବଙ୍ଗଦେଶବାସୀ ଭୋଗୁଥା'ନ୍ତି । ଉଭୟ ଶାରୀରିକ ଓ ମାନସିକ ଯନ୍ତ୍ରଣା ଭୋଗିବା ସତ୍ତ୍ୱେ ଓଡ଼ିଶା ସୀମାର ଅନ୍ୟପଟୁ ଯୁବତୀ ଝିଅମାନେ ତାଙ୍କର ସବୁକିଛି ବିନିମୟରେ ମାତ୍ର ସେରେ ଅଧେ ଚାଉଳ ପାଇଁ କଟକ ପର୍ଯ୍ୟନ୍ତ ଟ୍ରେନ୍‌ରେ ଚାଲିଆସୁଥା'ନ୍ତି । ଏହା ଶୁଣା କଥା ନୁହେଁ, ଆଖିଦେଖା କଥା ।

ଫ୍ରାଇଗେଟର କର୍ମଚାରୀମାନେ ଉପସ୍ଥିତ ଅବସ୍ଥାର ଯଥାବିଧି ବିଚାରକରି ଜାହାଜ ଭେଳାକୁ କଲିକତା ଫେରେଇ ନେବା ପାଇଁ କ୍ୟାପ୍‌ଟେନଙ୍କୁ ଅନୁରୋଧ କଲେ । କିନ୍ତୁ ଏହି ଦୁର୍ଦ୍ଦାନ୍ତ ବ୍ରିଟିଶ୍ କ୍ୟାପ୍‌ଟେନ କେବଳ ଯେ ଏ ଅନୁରୋଧକୁ ଏଡ଼ାଇଦେଲେ ତା' ନୁହେଁ, କ୍ରୁଇଜରକୁ ଲକ୍ଷ୍ୟ କରି ଫାୟାରିଙ୍ଗ୍ କଲେ । ଦେଖାଗଲା, ଜାପାନୀ କ୍ରୁଇଜର୍ ଆଖିପିଛୁଳାକେ ସେଠୁ ଅନ୍ତର୍ହିତ ହୋଇଗଲା । ଏହାପରେ କ୍ୟାପଟେନ ଜାହାଜଗୁଡ଼ିକର ଗତି ବଢ଼େଇ ଦେବାପାଇଁ ନିର୍ଦ୍ଦେଶ ଦେଲେ । ନିର୍ଦ୍ଦେଶ ପାଳିତ ହେଲା । କିନ୍ତୁ ସେମାନେ ଆସି ମାତ୍ର କୁଜଙ୍ଗ ଉପକୂଳବର୍ତ୍ତୀ ସମୁଦ୍ରରେ ପହଞ୍ଚିଛନ୍ତି କି ନାହିଁ, ହଠାତ୍ ଅଦୂରରୁ କମାଣର ଗର୍ଜନ ଶୁଣାଗଲା । ତା' ପରେ ଜାପାନର ତୋପବାହୀ ଯୁଦ୍ଧ-ଜାହାଜ ସବୁ ବିଭିନ୍ନ ଦିଗରୁ ଏମାନଙ୍କର ଜାହାଜଭେଳାକୁ ଘେରିଯାଇ କମାଣ ବର୍ଷଣ ଆରମ୍ଭ କରିଦେଲେ । ପ୍ରାୟ ସକାଳ ନ' ଘଣ୍ଟାଠାରୁ ଅପରାହ୍ଣ ପର୍ଯ୍ୟନ୍ତ ଅନବରତ କମାଣବର୍ଷଣ ଚାଲିଥିଲା । ଉପକୂଳବର୍ତ୍ତୀ ଅଞ୍ଚଳରେ ଏ କମାଣ ବର୍ଷଣ ପ୍ରତିଧ୍ୱନିରେ ମାଟିକାନ୍ଥ ଭୁସୁଡ଼ି ପଡ଼ିଥିଲା ଓ ପକ୍‌କାଘର ସବୁ ଦୋହଲି ଯାଇଥିଲା । କଟକ ସହରକୁ ମଧ୍ୟ ଏ କମାଣବର୍ଷଣର ଶବ୍ଦ ରହି ରହି ଶୁଣାଯାଉଥିଲା । ପ୍ରାୟ ଅପରାହ୍ଣ ସୁଦ୍ଧା, କ୍ରୁଇଜର ଯାହା କହିଥିଲା—ଫ୍ରାଇଗେଟ ସହିତ ସାତଗୋଟି ଜାହାଜ ଧ୍ୱସ୍ତ ବିଧ୍ୱସ୍ତ ହୋଇଗଲା ଓ ଜାହାଜରେ ଥିବା ସମସ୍ତ ଖାଦ୍ୟସାମଗ୍ରୀ କୁଜଙ୍ଗ ସମୁଦ୍ରର ଅତଳ ଗର୍ଭରେ ଲୀନ ହୋଇଗଲା । କିନ୍ତୁ ସମୁଦ୍ର ଉପର ପାଣି ଉପରେ ଇଏ କି କରୁଣ ବିକଟାଳ ଦୃଶ୍ୟ ! ଅଗଣିତ ମୃତ ଦେହ ଭାସୁଚି—ସେହିପରି ଅଗଣିତ ଆହତ ବ୍ୟକ୍ତିଙ୍କ ଆକୁଳ ଚିତ୍କାର । ଜାହାଜର ଚିହ୍ନବର୍ଣ୍ଣ ନାହିଁ । ଏଠି ସେଠି କିଛି ପଟା ଆଦି ଯାହା ଭାସୁଥାଏ । ବ୍ରିଟିଶ ସାମ୍ରାଜ୍ୟ ଭିତରେ ହିଁ ଭାରତର ବଙ୍ଗୋପସାଗର, ଯେଉଁଠି କି ଜାପାନର ପ୍ରବେଶ ଅଧିକାର ସୁଦ୍ଧା ନାହିଁ । ସେହି ବଙ୍ଗୋପସାଗରରେ ଜାପାନ ଏଭଳି ବିପର୍ଯ୍ୟୟ ଘଟାଇଦେଲା, ଅଥଚ ମିତ୍ର ଶକ୍ତି

ପକ୍ଷରୁ ଏହାର ସାମାନ୍ୟତମ ବିରୋଧ କାହିଁକି ଯେ କରାଗଲା ନାହିଁ, ତାର କୌଣସି ସୂଚନା ସେତେବେଳେ କେହି ଦେଇପାରି ନ ଥିଲେ । ଏପରିକି ନୌବାହିନୀର ବିମାନ ଘାଟି ଓ ଯୁଦ୍ଧ-ଘାଟି ପକ୍ଷରୁ ମଧ୍ୟ ଏହାର କୌଣସି ବିରୋଧ କରାଯାଇ ନ ଥିଲା ।

କଟକରୁ କୁଜଙ୍ଗ ରାଜରାସ୍ତା ରହିଛି । ସେତେବେଳେ କଟକର କଲେକ୍ଟର ଥା'ନ୍ତି, ଏଲ. ପି. ସିହ୍ନା, ଆଇ. ସି. ଏସ୍. ଓ ଏସ୍. ପି. ଥା'ନ୍ତି ମି. ହରିଗ୍ରେଭ ଆଇ. ପି. । ଯଥାସମୟରେ କୁଜଙ୍ଗ ଉପକୂଳର ଏଇ ଘଟଣା କଲେକ୍ଟରଙ୍କ ଗୋଚରକୁ ଆସିଲା । ଉଦ୍ଧାର କାର୍ଯ୍ୟପାଇଁ ଜିଲ୍ଲା କର୍ତ୍ତୃପକ୍ଷ ତତ୍ପର ହୋଇଉଠିଲେ । କଟକ ବଡ଼ଡାକ୍ତରଖାନାର ତିନୋଟି ମୁଖ୍ୟ ଓ୍ୱାର୍ଡ଼ ଖାଲି କରିଦିଆଗଲା । କୁଜଙ୍ଗ ଉପକୂଳରୁ ଆହତ ବ୍ୟକ୍ତିମାନଙ୍କୁ କଟକ ଡାକ୍ତରଖାନାକୁ ଅଣାଗଲା । ଗୋଟିଏ ଓ୍ୱାର୍ଡରେ ରହିଲେ କେବଳ ଆମେରିକାନ ଶ୍ୱେତାଙ୍ଗମାନେ । ଦ୍ୱିତୀୟ ଓ୍ୱାର୍ଡରେ ରହିଲେ ଇଂରେଜ ବା ବ୍ରିଟିଶ ଶ୍ୱେତାଙ୍ଗମାନେ । ଅନ୍ୟ ଓ୍ୱାର୍ଡ଼ଟିରେ ରହିଲେ ଭାରତୀୟ ଓ ଅନ୍ୟ ଅଶ୍ୱେତ ରୋଗୀମାନେ । ଏମାନଙ୍କ ମଧ୍ୟରେ ଥିଲେ ଜଣେ ପ୍ରାୟ ଛ' ଫୁଟରୁ ଊର୍ଦ୍ଧ୍ୱ ଦୀର୍ଘକାୟ ସବଳ ଆମେରିକାନ ନିଗ୍ରୋ ।

## ଆମେରିକାନ୍ ନିଗ୍ରୋ

ଏଇ ନିଗ୍ରୋଟି ହେଉଛନ୍ତି ଜଣେ "ଆମେରିକୀୟ" ବା ଆମେରିକାର ନେଚୁରାଲ ସିଟିଜେନ ଅର୍ଥାତ୍ ସ୍ଥାୟୀ ଅଧିବାସୀ । କିନ୍ତୁ ତାଙ୍କୁ ଅନ୍ୟ ଦେଶର କୃଷ୍ଣାଙ୍ଗ ରୋଗୀମାନଙ୍କ ସହିତ ଗୋଟିଏ ଓ୍ୱାର୍ଡ଼ରେ ରଖାଯାଇଥିଲା । ଏକଥା ଅନ୍ୟ କେହି କୃଷ୍ଣାଙ୍ଗ ରୋଗୀ ହୁଏତ ଉପଲବ୍ଧି କରି ନ ଥିବେ । କିନ୍ତୁ କୃଷ୍ଣକାୟ ଆମେରିକାନ ରୋଗୀଟି ଏଥିରେ ସନ୍ତୁଷ୍ଟ ହୋଇପାରି ନ ଥିଲା । ଏମାନଙ୍କ ଭିତରେ ଥିଲେ ଜଣେ ଭାରତୀୟ ବଙ୍ଗାଳୀ ରୋଗୀ । ଏଇ ବଙ୍ଗାଳୀ ରୋଗୀଟିର ମୁହଁରୁ କାହିଁକି ଓ କେଉଁ ପରିସ୍ଥିତିରୁ ଏପରି ଦୁର୍ବିଷହ ଘଟଣା ଘଟିଲା, ତାହାର ଏକ ବିସ୍ତୃତ ବିବରଣୀ ଶୁଣି-ବାର ସୁଯୋଗ ମତେ ମିଳିଥିଲା । ଏକଥା ମଧ୍ୟ ତାଙ୍କଠାରୁ ଶୁଣିବାକୁ ମିଳିଲା ଯେ, ଫ୍ରାଇଗେଟର ବ୍ରିଟିଶ କ୍ୟାପଟେନ ଯେତେବେଳେ ଅନ୍ୟ କାହାର ପରାମର୍ଶକୁ ଗ୍ରହଣ ନ କରି ଜାହାଜକୁ ଆଗେଇନେବା ପାଇଁ ଜିଦ୍ ଧରି ବସିଲେ, ସେତେବେଳେ ଅନ୍ୟମାନେ ଜାହାଜରେ ବିଦ୍ରୋହ କରି କ୍ୟାପ୍ଟେନଙ୍କୁ ବନ୍ଦୀ କରିବାର ଉପକ୍ରମ କରୁଥିଲେ । ମାତ୍ର ଠିକ୍ ସେଇ ମୁହୂର୍ତ୍ତରେ ହିଁ ଜାପାନୀ ପକ୍ଷରୁ କମାଣ ବର୍ଷଣ ଆରମ୍ଭ ହୋଇଗଲା । ଫଳରେ ଜାହାଜ ଓ ଯାତ୍ରୀ କେହି ରକ୍ଷା ପାଇ ପାରିଲେ ନାହିଁ । ...ଆହତ ନୌଯାତ୍ରୀମାନେ କଟକ ମେଡ଼ିକାଲରେ

ରହିବାର କିଛିଦିନ ପରେ କଟକର କମିଶନର ସାହେବ ଓ ତାଙ୍କ ପତ୍ନୀ ଏଇ ସବୁ ଓ୍ୱାର୍ଡ ପରିଦର୍ଶନ କରିବାକୁ ଆସିଲେ । କମିଶନର ହେଉଛନ୍ତି ଶ୍ୱେତାଙ୍ଗ ଆଇ. ସି. ଏସ୍ ଓ ପତ୍ନୀ ଶ୍ୱେତାଙ୍ଗିନୀ । ସେମାନେ ଆସି ପ୍ରଥମେ ଆମେରିକାନ ଶ୍ୱେତାଙ୍ଗମାନେ ରହିଥିବା ଓ୍ୱାର୍ଡକୁ ଗଲେ ଓ ପରେ ବ୍ରିଟିଶ ଟମିମାନେ ରହିଥିବା ଓ୍ୱାର୍ଡକୁ ଆସିଲେ । ଏଇ ଦୁଇଟି ଓ୍ୱାର୍ଡରେ କମିଶନର ରୋଗୀମାନଙ୍କ ସହିତ କରମର୍ଦ୍ଦନ କରୁଥା'ନ୍ତି ଓ ଶ୍ରୀମତୀ କମିଶନର ସେବେଳର ଅତି ଦୁର୍ଲଭ ପଦାର୍ଥ ଗୋଟିଏ ଗୋଟିଏ ସିଗ୍ରେଟ ପ୍ୟାକେଟ ସେମାନଙ୍କ ହାତକୁ ବଢ଼ାଇ ଦେଉଥା'ନ୍ତି । ଅଦୂରରେ ତୃତୀୟ ଓ୍ୱାର୍ଡରେ ରହିଥିବା ଅଶ୍ୱେତ ରୋଗୀମାନେ ଅତି ଲୋଭାତୁର ଦୃଷ୍ଟିରେ ସେ ଦୃଶ୍ୟକୁ ଚାହିଁ ରହିଥା'ନ୍ତି— କେତେବେଳେ ଏକାନ୍ତ ବିରଳ ଗୋଟିଏ ସିଗ୍ରେଟ ପ୍ୟାକେଟ ତାଙ୍କ ହାତକୁ ଆସିବ । କମିଶନର ସସ୍ତ୍ରୀକ ଏଇ ତୃତୀୟ ଓ୍ୱାର୍ଡକୁ ଆସିଲେ । ପ୍ରଥମ ରୋଗୀ ହେଲା ଜଣେ ଦକ୍ଷିଣ ଭାରତୀୟ । କିନ୍ତୁ ଏ କ'ଣ ? କମିଶନର ତା' ସହିତ କରମର୍ଦ୍ଦନ କଲେ ନାହିଁ । ପୁଣି ତା' ହାତକୁ ଯାହା ବଢ଼ାଇଲେ ତାହା ତ ସିଗ୍ରେଟ ନୁହେଁ, ଗୋଟିଏ ବିଡ଼ି ବଣ୍ଡିଲ । ଅବଶ୍ୟ ବିଡ଼ି ବଣ୍ଡିଲଟି ଆକାରରେ ଖୁବ୍ ବଡ଼ । ଆଶଙ୍କା କରାଯାଉଥିଲା, ଏ ଭାରତୀୟ ରୋଗୀଟି ଏଥିରେ ହୁଏତ ଦୁଃଖ ପ୍ରକାଶ କରିବ ! କିନ୍ତୁ ତାହା ହେଲାନି । ସେ ଦୁଃସାହସ ତାର କାହିଁ ? ସେ କୃତକୃତ୍ୟ ହୋଇ କମିଶନରଙ୍କ ଠାରୁ ବିଡ଼ି ବଣ୍ଡିଲଟି ଗ୍ରହଣ କରି ବିନମ୍ର ପ୍ରଣତି ଜଣାଇଲା । ଏହିପରି ଆଉ କେତେଜଣ କୃଷ୍ଣାଙ୍ଗ ରୋଗୀଙ୍କୁ ବିଡ଼ି ପ୍ରଦାନ କରି କମିଶନର ଦମ୍ପତି ସେହି ଦୀର୍ଘ ସବଳକାୟ ଆମେରିକାନ ନିଗ୍ରୋଟି ପାଖକୁ ଗଲେ ।

## ଶ୍ୱେତାଙ୍ଗଙ୍କୁ ସିଗ୍ରେଟ୍ ଓ କୃଷ୍ଣାଙ୍ଗଙ୍କୁ ବିଡ଼ି

ଏ ଓ୍ୱାର୍ଡରେ ଅନ୍ୟ ରୋଗୀମାନଙ୍କ ପାଖରେ କମିଶନର କିଛି ଦୂରତ୍ୱ-ରକ୍ଷା କରି ଅଟକୁଥିଲେ; କିନ୍ତୁ ଏଠି ତା'ର ବ୍ୟତିକ୍ରମ ଦେଖାଗଲା—କମିଶନର ଦମ୍ପତି ନିଗ୍ରୋ ରୋଗୀଟିର ବେଡ୍ ପାଖକୁ ଯାଇ ତା' ସହିତ କିଛି କଥାବାର୍ତ୍ତା ଆରମ୍ଭ କରିଦେଲେ । ସେ ବେଡ୍‌ରୁ ଉଠି ବସିଲାଣି । ସେ କ'ଣ କହୁଥାଏ, ଅବଶ୍ୟ ଜଣାପଡ଼ୁ ନଥାଏ । କିନ୍ତୁ ଏ ଦୁହେଁ ଅତି ହର୍ଷୋତ୍‌ଫୁଲ୍ଲ ମନରେ ତା' ସହିତ କଥାବାର୍ତ୍ତା କରୁଥା'ନ୍ତି । କିଛିକ୍ଷଣ ପରେ ଏଥର ମିସେସ କମିଶନର ତା ହାତକୁ ବିଡ଼ି ବଣ୍ଡିଲଟି ବଢ଼ାଇ ଦେଲେ । ସେ ବଣ୍ଡିଲ୍‌ଟିକୁ ଗ୍ରହଣ କଲା । କମିଶନର ଦମ୍ପତି ଓ୍ୱେଭ୍ କରି ତା'ଠାରୁ ବିଦାୟ ନେଇ ପାଦେ କି ଦୁଇପାଦ ଯାଇଚନ୍ତି କି ନାହିଁ, ଇଏ ତାଙ୍କୁ କ'ଣ କହିଲା । ସେ ଦୁହେଁ ଅଟକି ଯାଇ ପଛକୁ

ଫେରି ଗୁହିଁଲେ, ମାତ୍ର ଏଇଠି ଗୋଟାଏ ସେକେଣ୍ଡରେ ସେ ଆମେରିକାନ୍ ନିଗ୍ରୋ ସୈନିକଟିର ସମସ୍ତ ଶରୀର ରାଗ ଓ କ୍ରୋଧରେ ପ୍ରଜ୍ୱଳିତ ହୋଇ ଉଠିଲା । ହାତରେ ଧରିଥିବା ବଡ଼ ବଡ଼ ବଣ୍ଡିଲ୍‌ଟିକୁ ସେ ଏତେ ଜୋର୍‌ରେ ମିସେସ୍ କମିଶନରଙ୍କ ମୁହଁକୁ ଲକ୍ଷ୍ୟ କରି ମାରିଲା ଯେ, ସିଏ ଏ ଆଘାତ ସହିପାରିଲେ ନାହିଁ । ତାଙ୍କ ମୁହଁରେ ରକ୍ତ ଜମାଟ ବାନ୍ଧିଗଲା । ପାଦ ଟଳମଳ ହୋଇଗଲା । କମିଶନର ତାଙ୍କୁ ଅଟକାଇ ଦେଇ ନ ଥିଲେ ସେ ହୁଏତ ତଳେ ପଡ଼ିଯାଇଥାନ୍ତେ ।

ଓ୍ୱାର୍ଡ଼ ଭିତରେ ଯେମିତି ଗୋଟାଏ ଭୟଙ୍କର ନିସ୍ତବ୍‌ଧତା । ହସ୍‌ପିଟାଲ ଷ୍ଟାଫ୍, ପୋଲିସ, ସେପଟର ବ୍ରିଟିଶ ଟମି, ସମସ୍ତେ ନୀରବରେ ଏ ଦୃଶ୍ୟ ଦେଖୁଚନ୍ତି । ସବୁଆଡ଼େ ଗୋଟାଏ ଆତଙ୍କର ଛାୟା ଖେଳିଯାଇଚି । କିନ୍ତୁ କାହାରି ପାଟିରେ କଥା ନାହିଁ ।···ଜଣେ କୃଷ୍ଣାଙ୍ଗ ନିଗ୍ରୋ ଜଣେ ଶ୍ୱେତାଙ୍ଗିନୀ ମହିଳାଙ୍କୁ ସର୍ବଜନ ସମକ୍ଷରେ ଆଘାତ କଲା । ଯେଉଁ କଥାଟି ଶ୍ୱେତ ବ୍ରିଟିଶ ଭୂଖଣ୍ଡରେ କଳ୍ପନାତୀତ, ସେମିତି ଏ ଅଘଟଣ ସେଇ ବ୍ରିଟିଶ ସାମ୍ରାଜ୍ୟର ଏକ ହସ୍‌ପିଟାଲରେ ଘଟିଲା କାହିଁକି ? ଗୋଟାଏ ପ୍ୟାକେଟ ସିଗ୍ରେଟ ଓ ଗୋଟିଏ ବଣ୍ଡିଲ ବିଡ଼ି ମଧ୍ୟରେ ଥିବା ତାରତମ୍ୟ ପାଇଁ ତ ? ଅଶ୍ୱେତମାନଙ୍କୁ ସିଗ୍ରେଟ ଦିଆ ନଯାଇ ବିଡ଼ି ଦିଆଯିବ, ଏ ନିଷ୍ପତ୍ତି କିଏ ନେଇଥିଲେ ? ନିଶ୍ଚୟ ଓଡ଼ିଶାର କମିଶନର । ସାଧାରଣ ଦୃଷ୍ଟିକୋଣରୁ କମିଶନରଙ୍କ ପ୍ରତି ନିଗ୍ରୋ ରୋଗୀଟିର ଏତାଦୃଶ ଆଚରଣର ପରିଣାମ କ'ଣ, ସେ କଥା କ'ଣ ତାକୁ ଜଣା ନ ଥିଲା ? ଥିଲା, ବେଶ୍ ଭଲଭାବରେ ଥିଲା । କିନ୍ତୁ ଏକଥା ମଧ୍ୟ ତାକୁ ଆହୁରି ଭଲଭାବରେ ଜଣାଥିଲା ଯେ, ଏ ଘଟଣାଟି ଏଠି ନ ଘଟି ଯଦି ଖାସ୍ ଲଣ୍ଡନ ସହରର କୌଣସି ହସ୍‌ପିଟାଲରେ ଘଟି ଥା'ନ୍ତା, ସେଠି ମଧ୍ୟ ତାର କେଶାଗ୍ର କେହି ସ୍ପର୍ଶ କରିପାରି ନ ଥା'ନ୍ତେ । କାହିଁକି ?

## ଆଟ୍‌ଲାଣ୍ଟିକ ଚାର୍ଟାର

ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେଲା ପରେ ଇଂଲଣ୍ଡକୁ ଯୁଦ୍ଧରେ ସାହାଯ୍ୟ କରିବା ପାଇଁ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲଙ୍କ ଅନୁରୋଧ କ୍ରମେ ଚର୍ଚ୍ଚିଲ ଓ ଆମେରିକାର ପ୍ରେସିଡେଣ୍ଟ ରୁଜ୍‌ଭେଲ୍‌ଟଙ୍କ ମଧ୍ୟରେ ଏକ ଚୁକ୍ତି ସ୍ୱାକ୍ଷରିତ ହେଲା । ଏ ଚୁକ୍ତିର ନାମ ଥିଲା "ଆଟଲାଣ୍ଟିକ ଚାର୍ଟାର" । ତଦନୁସାରେ ଆମେରିକାନ କଂଗ୍ରେସରେ ଏକ ବିଲ ପାଶ୍ ହେଲା—ଏ ବିଲ୍‌ଟିର ନାମକରଣ ଥିଲା—ଲିଜ ଆଣ୍ଡ ଲେଣ୍ଡ୍ ବିଲ । ଇଂଲଣ୍ଡକୁ ଆମେରିକାର ସାହାଯ୍ୟ ପ୍ରଦାନ ଉପଲକ୍ଷେ ଗୃହୀତ ଏଇ ବିଲ୍‌ଟିକୁ ଆମ ଓଡ଼ିଆ ସମ୍ବାଦପତ୍ରମାନଙ୍କରେ କୁହାଯାଉଥିଲା "ଉଧାରି ପଇଠା ବିଲ୍" ।

...ସିଗ୍ରେଟ ପ୍ୟାକେଟ ଓ ବଡ଼ ବଣ୍ଡିଲ ଉପାଖ୍ୟାନ ବେଳେ ଓଡ଼ିଶାର କମିଶନର ହୁଏତ ଏ ବିଲ୍ ଓ ଗୁର୍ଣ୍ଣର ସମ୍ବନ୍ଧରେ ସଚେତନ ନ ଥିଲେ; କିନ୍ତୁ ଆମେରିକାନ୍ ନିଗ୍ରୋ ସୈନିକଟି ? ସେ ଠିକ୍ ଜାଣିଥିଲା, ଯୁଦ୍ଧରେ ଇଂଲଣ୍ଡକୁ ଆମେରିକା ଯେଉଁ ସାହାଯ୍ୟ ପ୍ରଦାନ କରୁଛି, ଜଣେ ଆମେରିକୀୟ ସୈନିକ ଭାବରେ ସେ ନିଗ୍ରୋଟି ହେଉଛି ଏଇ ଦାନର ଏକ ଅଂଶ । ସେଇଥିପାଇଁ, ଅର୍ଥାତ୍ ଇଂଲଣ୍ଡକୁ ସାହାଯ୍ୟ କରିବା ପାଇଁ ସେ ଏଠିକି ଆସିଛି । ସିଏ ଦାତା, ସିଏ ଗ୍ରହୀତାର ଏ ଅବମୂଲ୍ୟ-କାରିତାକୁ ସହ୍ୟ କରିବ କାହିଁକି ?

## ଜାପାନ ଆକ୍ରମଣ ଭୟରେ ରାଜଧାନୀ କଟକରୁ ସେକ୍ରେଟେରିଏଟ୍ ସମ୍ବଲପୁରକୁ ସ୍ଥାନାନ୍ତରିତ

କୁହାଯାଏ କଟକ ସହର ଏକ ଲକ୍ଷ୍ମୀ ସହର । ଲକ୍ଷ୍ମୀ ସହର ଏଇ ଅର୍ଥରେ କୁହାଯାଏ ଯେ, କଟକ ସହର ଗଳି, କନ୍ଦି, ଛକ ଓ ବଜାର ଯେଉଁ ସ୍ଥାନରେ ହେଉ ନା କାହିଁକି, ଗୋଟିଏ ଏଣୁ ତେଣୁ ଶ୍ରେଷ୍ଠ ବ୍ୟବସାୟ ଖୋଲି କିଷ୍ଟାର ସହିତ ବସିଗଲେ ଦିନେ ସେ ବ୍ୟବସାୟ ଏକ ଲକ୍ଷ୍ମୀ ଭଣ୍ଡାରରେ ପରିଣତ ହେବ—ଏହାର ବହୁ ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳେ । କିନ୍ତୁ ସେଦିନ କୁଜଙ୍ଗ ଉପକୂଳରେ ସାତୋଟି ବ୍ରିଟିଶ୍ ଜାହାଜକୁ ଜାପାନ ଧ୍ୱଂସକରିଦେବା ପରେ ଏଇ ଲକ୍ଷ୍ମୀସହର ଯେମିତି ଏକ ଶ୍ରୀହୀନ ସହରରେ ପରିଣତ ହେଇଗଲା । ନ ହେବ କେମିତି ? ସେଦିନ କଟକ ସହରଠୁ ମାତ୍ର ପଚିଶ ମାଇଲ ଦୂର କୁଜଙ୍ଗ ଉପକୂଳରେ ଘଣ୍ଟା ଘଣ୍ଟା ଧରି ବ୍ରିଟିଶ ଜାହାଜ ଉପରେ ତୋପବର୍ଷଣ ହେବା-ବେଳେ ଭାରତ ସରକାରଙ୍କ ପକ୍ଷରୁ ସାମାନ୍ୟତମ ପ୍ରତିରୋଧ ହୋଇ ପାରି ନଥିଲା । ଆମେ ଲକ୍ଷ୍ୟ କରିଚୁ, ସେଦିନ ଯେତିକି ସମୟ ଧରି ଜାପାନର ତୋପ ବର୍ଷଣ ଚାଲିଥିଲା, ସେ ସମୟ ଭିତରେ ଚାରିବାଟିଆ ବିମାନଘାଟିରୁ ଗୋଟିଏ ବି ବିମାନ ଉଡ଼ିନାହିଁ । ସତେ ଯେପରି ଏ ଯୁଦ୍ଧଘାଟିଟିକୁ ମୃତକଳ୍ପ ଅବସ୍ଥା ଘୋଟିଛି । ଏତିକିବେଳେ ପୁଣି ଆମ ସରକାର ଗୋରାଙ୍କ ପରି ଏକ ପଳାୟନପନ୍ଥୀ ନୀତି ଧରିଲେ । ନିଜ ଭୂମିରେ ରହି (ସେତେବେଳେ ଭାରତବର୍ଷ ବ୍ରିଟିଶ୍ ଶାସନାଧୀନରେ ଥିବାରୁ କଟକସହରକୁ ବ୍ରିଟିଶ୍ ସରକାରଙ୍କ ନିଜ ଭୂମି ବୋଲି ଏଠି କୁହାଗଲା ।) ଇଂରେଜ ସରକାର ବା ମିତ୍ରଶକ୍ତି କାହାରି ଜାପାନର ଆକ୍ରମଣକୁ ପ୍ରତିହତ କରିବାର ସାହସ ବା ଶକ୍ତି ନ ଥିଲା । ସେଥିପାଇଁ ସେମାନେ ସେକ୍ରେଟେରିଏଟ୍ ଓ ତତ୍ସଂଲଗ୍ନ ଅନ୍ୟ ଅଫିସ୍ ସବୁକୁ କଟକରୁ ସମ୍ବଲପୁରକୁ ଉଠାଇନେଲେ । ଅନ୍ୟ ସବୁ ଅଫିସ୍‌ର ଯେଉଁ କର୍ମଚାରୀମାନେ ସପରିବାର କଟକରେ ରହୁଥିଲେ, ସେମାନଙ୍କୁ ଅନ୍ୟ ନିରାପଦ ସ୍ଥାନକୁ ପଠାଇଦେବା ପାଇଁ କର୍ମଚାରୀମାନଙ୍କୁ ଦୁଇମାସର ଦରମା ଅଗ୍ରିମସ୍ୱରୂପେ ପ୍ରଦାନ କରାଗଲା । ମୋ' ହାତରେ ମୁଁ

ଏଇ ଟଙ୍କା ଧରି ଏଇସିଦ୍ଧାନ୍ତରେ ପହଞ୍ଚିଲି ଯେ, ଆଜିଠୁ ଭାରତର ପୂର୍ବାଞ୍ଚଳରେ ବ୍ରିଟିଶ ଶାସନର ପରାଜୟ ଦଟି ଏହା ଜାପାନ୍ ଅଧୀନରେ ରହିଲା । ପରାଜୟ ଘଟି ନ ଥିଲେ ସେକ୍ରେଟେରିଏଟ୍ ସମ୍ବଲପୁରକୁ ସ୍ଥାନାନ୍ତରିତ ହୋଇଥା'ନ୍ତା କାହିଁକି ? ଆଉ କଟକରୁ ଜାପାନ୍ ଆକ୍ରମଣ ଭୟରେ ସେକ୍ରେଟେରିଏଟ୍ ଉଠିଗଲା ପରେ କଟକ ସହରରେ ଆଉ କିଏ ବା କାହିଁକି ରହିବ ? ସହରର ପ୍ରାୟ ଅର୍ଦ୍ଧେକ ଜନବସତି ଶୂନ୍ୟ ହୋଇଗଲା । ଏହାର ପ୍ରଭାବ ମୋ' ଉପରେ ମଧ୍ୟ ପଡ଼ିଥିଲା । ଚୌଧୁରୀ ବଜାର ଧର୍ମଶାଳା ନିକଟରେ ନନ୍ଦୀସାହିର ଗୋଟିଏ ଘର ଭଡ଼ାନେଇ ଆମେ କେତେଜଣ ମେସ୍ କରି ରହୁଥିଲୁ । ଅଧିକାଂଶ ସେକ୍ରେଟେରିଏଟ୍ କର୍ମଚାରୀ । ସେମାନେ ସମ୍ବଲପୁର ଚାଲିଗଲେ । ରହିଗଲୁ ମାତ୍ର ଆମେ ଦୁଇଜଣ । ମୁଁ ଏବଂ ଆଉ ଜଣେ କଲେଜଛାତ୍ର ଶ୍ରୀ ରାମକୃଷ୍ଣ ଦାଶ । ଚାକର, ପୂଝାରୀ ମଧ୍ୟ ଚାଲିଗଲେ । ଆମେ ଯିବାପାଇଁ ପ୍ରସ୍ତୁତ ହେଉଚୁ, ଘରର ମାଲିକ ଜଗମୋହନବାବୁ କାନ୍ଦ କାନ୍ଦ ହୋଇ ଆସି ମୋ' ହାତ ଧରି କହିଲେ-- ଗୋପାଳବାବୁ, ଦୟାକରି ଆପଣ ଏ ଘର ଛାଡ଼ନ୍ତୁ ନାହିଁ । କଟକ ସହରରେ ମୋର ଚଉଦଟି ଘର ଭଡ଼ା ଲାଗିଥିଲା । ସେଥିରୁ ତେରଟି ଘର ଖାଲି ହୋଇଗଲାଣି । ଏଇଟା ଆମର ପୈତୃକ ବ୍ୟବସାୟ । ଆପଣ ଏ ଘର ଛାଡ଼ି ଚାଲିଗଲେ ଆମେ ଲକ୍ଷ୍ମୀଛଡ଼ା ହୋଇଯିବୁ । ମନେ ମନେ ଭାବିଲି, ଲକ୍ଷ୍ମୀଙ୍କ ସହର ଏଇ କଟକ । ନନ୍ଦୀବାବୁଙ୍କୁ ଲକ୍ଷ୍ମୀଛଡ଼ା କରି ମୁଁ ଏ ଘରଛାଡ଼ି ଯିବିନି । ଯଦି ଜାପାନ୍ ଆସେ, ଆମ ଭାରତୀୟମାନଙ୍କୁ ସେମାନେ କେବେ ସ୍ପର୍ଶ କରିବେ ନାହିଁ । ଯେତିକି ଶ୍ୱେତାଙ୍ଗ ଏବେ କଟକ ସହରରେ ରହିଯାଇଚନ୍ତି, ଜାପାନ୍ ସେଇମାନଙ୍କ ସହିତ ବୁଝାମଣା କରିବ । ଏହାପରେ ଆଉ କଟକ ସହରରେ ବୋମା ପଡ଼ିବନି । ମୁଁ ଏବଂ କଲେଜଛାତ୍ରଟି ନନ୍ଦୀବାବୁଙ୍କର ସେଇ ଚତୁର୍ଦ୍ଦଶ ଭଡ଼ାଘରେ ରହିଲୁ । ମିତ୍ରଶକ୍ତିର ଏକ ସହଯୋଗୀ ଇଂଲଣ୍ଡ ଏଇ କୁଜଙ୍ଗ ଘଟଣା ପରେ ଏମିତି ଭାଙ୍ଗିପଡ଼ିଚି ଓ ତାର ନୈତିକ ଶକ୍ତିର ଏମିତି ଅପଚୟ ଘଟିଚି ଯେ, ଭାରତର ବ୍ରିଟିଶ୍ ଶାସନକର୍ତ୍ତା ବୁଝିପାରିଚନ୍ତି, ଜାପାନ୍ ଭାରତ ଆକ୍ରମଣ କଲେ ପ୍ରତିରୋଧ କରିବାର ଶକ୍ତି ସେମାନ-ଙ୍କର ରହିବ ନାହିଁ । ସେଥିପାଇଁ ସେମାନେ ପ୍ରତିରୋଧ ପ୍ରତି-ଆକ୍ରମଣ କଥା ଭୁଲିଯାଇ ବୋମା ପଡ଼ିଲେ କଟକ ସହରବାସୀ କିପରି ବୋମା ମାଡ଼ରୁ ରକ୍ଷା ପାଇବେ, ସେଥିପାଇଁ ଏ. ଆର୍. ପି. ସଂସ୍ଥା ଗଢ଼ି ସମସ୍ତ କଟକ ସହରରେ ଟ୍ରେଞ୍ଚ୍ (trench) ଓ ବ୍ୟାଫ୍‌ଲ୍‌ଓ୍ୱାଲ ତିଆରି ଦେଇଚନ୍ତି । ବୋମା ପଡ଼ିଲେ ଲୋକମାନେ ଟ୍ରେଞ୍ଚ୍ ଭିତରେ କିମ୍ବା ବ୍ୟାଫ୍‌ଲ୍‌ଓ୍ୱାଲ୍ ଉଢ଼ାଳରେ ଆଶ୍ରୟ ନେବେ । ଏ ଅବସ୍ଥା ପ୍ରାୟ ଦୁଇବର୍ଷ ଧରି ଲାଗିରହିଥିଲା । ତା' ଉପରେ ପୁଣି ସମସ୍ତ ରାତି ବ୍ଲାକ୍‌ଆଉଟ୍ ।

ଆମେ ଜାଣିଥିଲୁ ଯେ, ଜାପାନ୍ ଏଡ଼େ ନିର୍ବୋଧ ନୁହେଁ ଯେ, କଟକ ସହରରେ ଯେଉଁଠି କିଛି ଟାରଗେଟ୍ ନାହିଁ—ତା' ଉପରେ ବୋମା ପକେଇବ । କିନ୍ତୁ ହେ ଭଗବାନ୍ ! ମୁଁ ନିଜେ ଜାପାନୀ ବୋମା ମାଡ଼ର ଶିକାର ହୋଇପଡ଼ିଲି । ସେଦିନ ସକାଳ ପ୍ରାୟ ଆଠଟା । ମୁଁ ନିମିଚଉଡ଼ି ଛକପାଖ ଶ୍ରୀଯୁକ୍ତ ମଧୁମହାନ୍ତିଙ୍କ (ବାରିଷ୍ଟର ରଣଜିତ ମହାନ୍ତିଙ୍କ ପିତା) ବାସଭବନ ପରିସର ମଧ୍ୟରେ ସସ୍ତ୍ରୀକ ରହୁଥାଏ । ବଜାରରୁ ଫେରି ନିମିଚଉଡ଼ି ଛକରେ ହେଇଚି, ଏୟାର୍‌ରେଡ୍‌ର ସାଇରନ୍ ବାଜି ଉଠିଲା । ବୋମା ପଡୁ କି ନ ପଡୁ, ଏଇ ଏୟାର୍‌ରେଡ୍ ସାଇରନ୍ ଶୁଣିଲେ ଲୋକର ରକ୍ତ ପାଣି ହୋଇଯିବ । ସରକାର ନିୟମ କରିଚନ୍ତି—ବୋମା ପଡ଼ିଲେ ଯେଉଁମାନେ ବାହାରେ ଥିବେ, ସେମାନେ ସଙ୍ଗେ ସଙ୍ଗେ ଭିତରକୁ ପଶିଯିବେ, ନ ହେଲେ ବାଫଲ୍‌ଓ୍ୱାଲ୍ ଉହାଡ଼ରେ ଆଶ୍ରୟ ନେବେ । ନ ହେଲେ ମୁହଁମାଡ଼ି ଭୂଇଁରେ ଲମ୍ବହୋଇ ଶୋଇପଡ଼ିବେ । ଭୟରେ କୁଆଡ଼େ ଧାଁ ଧଉଡ଼ି କରିବେ ନାହିଁ । କଲେ ଏ. ଆର୍. ପି. ଆଇନ୍ ଅନୁସାରେ ଦଣ୍ଡିତ ହେବେ । ମୁଁ ନିମିଚଉଡ଼ି ଛକରେ ଅଛି ।

## କଟକ ଆକାଶରେ ବୋମାଭୟ, ମୁଁ ନିମିଚଉଡ଼ି ଛକରେ ଧରାଶାୟୀ

ଛକରୁ ଦୌଡ଼ି ଦୌଡ଼ି ଗଲେ ମୋ' ଘର ଏକ ମିନିଟ୍‌ର ବାଟ । ଘରେ ପତ୍ନୀ ଏକାକିନୀ । ମୁଁ ପାଖରେ ଥିବା ବାଫଲ୍‌ଓ୍ୱାଲ୍‌କୁ ଆଡେଇ ଦେଇ ମୋ' ଘର ଅଭିମୁଖେ ଦୌଡ଼ିବା ଆରମ୍ଭ କରିଚି, ଏତିକିବେଳେ ସାମ୍ନା ଗଳି ଭିତରୁ ଯମଦୂତ ପରି ଗୋଟାଏ କଳା ମଚ୍ ମଚ୍ ମିଲିଟାରୀ ପୋଲିସ୍ ବାହାରି ଆସି ମୋ' ବାହୁଧରି "'ଶୋ' ଯା'ବେ ଶାଲା" କହି ମତେ ରାସ୍ତା ଉପରେ ଧକ୍କାମାରି ଶୁଆଇ ନିଜେ ମୁହଁ ମାଡ଼ି ଶୋଇପଡ଼ିଲା । ପୁଣି ଭଙ୍ଗା ହିନ୍ଦୀରେ ମତେ ସବୁ କ'ଣ କହି ଗାଲିଥାଏ । ତା' ଧକ୍କା ମାଡ଼ରେ ମୋ' ଆଣ୍ଠୁ ଓ କହୁଣି ଛିଡ଼ି ଛିଡ଼ି ଗଲାଣି । ରାଗରେ ମୋ' ଦେହ ଜଳୁଚି । କିନ୍ତୁ ଯେହେତୁ ସେ ମିଲିଟାରୀ ପୋଲିସ୍‌ର ଲୋକ, ତାକୁ କହିବାର କିଛି ନାହିଁ । ସମୟ ବିତିଯାଉଚି । ସେ ଶୋଇଚି । ମୁଁ ଶୋଇଚି । ରାସ୍ତାଘାଟ ଶୂନ୍‌ଶାନ୍ । ସବୁଆଡ଼େ ନୀରବ ନିସ୍ତବ୍ଧ । ଏଇ ପରିବେଶରେ ଆମେ ଦୁହେଁ କହୁଣିରେ ଭରାଦେଇ ମୁହଁ ତଳକୁ କରି ଶୋଇଚୁ । ସମୟ ବିତିଯାଉଚି । ପାଞ୍ଚମିନିଟ୍, ଦଶମିନିଟ୍, ବୋମା ପଡୁନି । ଜୀବନରେ ଏ. ଆର୍. ପି. ର ଅଭିଜ୍ଞତା କେବେ ହୋଇ ନ ଥିଲା । ମନେ ମନେ ଭଗବାନଙ୍କୁ ପ୍ରାର୍ଥନା କରୁଥାଏ, ପ୍ରଭୁ ଏ ଅଭିଜ୍ଞତା ତ ହେଲା । ଏବେ ଟିକେ

ଦୂରେଇ କରି ଗୋଟାଏ ବୋମା କେଉଁଠି ପକେଇ ଦିଅ, ସେ ଅଭିଜ୍ଞତା ଟିକେ ହେଉ । କିନ୍ତୁ ନା, ବୋମା ପଡ଼ିଲା ନାହିଁ କି ଧର୍ମଘଟ କଲାପରି କଟକ ଆକାଶରେ ଗୋଟିଏ ହେଲେ ପ୍ଲେନ୍‌ର ଦେଖାନାହିଁ । ହେଇପାରେ ଏୟାର୍‌ରେଡ୍ ସାଇରନ୍ ଯେତେବେଳେ ବାଜିଚି, ଜାପାନ୍ ପ୍ଲେନ୍ ଭୟରେ ଆମ ଗୁରବାଟିଆ ଘାଟୀରେ ପ୍ଲେନ୍‌ସବୁ ଲୁଚି ରହିଚନ୍ତି । ପ୍ରାୟ ପଇଁତରିଶି ମିନିଟ୍ ପରେ ଅଲ୍ କ୍ଲିୟର୍ ସାଇରନ୍ ବାଜିଲା—ତା' ଅର୍ଥ ସାଇରନ୍ କହୁଚି—ଶତ୍ରୁପକ୍ଷର ପ୍ଲେନ୍ ସବୁ ଆମ ଭୟରେ କୁଆଡ଼େ ଲୁଚି ପଳେଇଲେଣି । ଅତଏବ ହେ ପ୍ରିୟ କଟକବାସୀ, ତମେମାନେ ଏଥର ସ୍ୱଚ୍ଛନ୍ଦରେ ଯାତାୟାତ କରିପାର । ମୁଁ ଉଠିଲି । ପ୍ରକୃତରେ ମୋ' ଆଣ୍ଠୁ ଟିକେ ଛିଡ଼ି ଅଳ୍ପ ରକ୍ତ ବାହାରିଚି । ମୁଁ ଘରେ ଯାଇ ପହଞ୍ଚିଲି । ମୋ' ଅବସ୍ଥା ଦେଖି ମୋ' ସ୍ତ୍ରୀ ଏକାନ୍ତ ଭୟଭୀତ ଅବସ୍ଥାରେ ମତେ ପଚାରିଲା—ବୋମା ପରି ପଡ଼ିଲା ନାହିଁ ! କହିଲି—ନାଇଁ ତ, ପଡ଼ିନି । ଏକାବେଳେକେ ଡରିଯାଇ କହିଲା—ଆଉ ତମର ଏ ଅବସ୍ଥା ? ଡେଟଲ୍ ପାଣିରେ ଧୋଇହେଲା-ବେଳେ ତାକୁ ସବୁକଥା ବୁଝାଇଦେଲି । ···ସେଦିନ ସନ୍ଧ୍ୟାବେଳେ ଜଣାପଡ଼ିଲା, ଏ. ଆର୍. ପି. ସୁଇଚ୍‌ବୋର୍ଡରେ ଜଣେ କର୍ମଚାରୀ ଗୋଟିଏ ଭୁଲ୍ ସୁଇଚ୍ ଅନ୍ କରିଦେଇଥିବାରୁ ଏ ଅବସ୍ଥା ସୃଷ୍ଟି ହେଲା । ସେଥିପାଇଁ ସେମାନେ ଦୁଃଖିତ ।

## କଟକ ଜିଲ୍ଲାବୋର୍ଡ଼ର ଅଣଓସାରିଆ ରାସ୍ତା, ବଡ଼ ମିଲିଟାରୀ ଟ୍ରକ୍ ଓ ଜିଲ୍ଲାବୋର୍ଡ଼ ଚେୟାରମ୍ୟାନ୍ ଶ୍ରୀ ନୀଳମଣି ପ୍ରଧାନ

ଦିନ ଗଡ଼ି ଚାଲିଚି—ଭୁଜଙ୍ଗ ଦୁର୍ଘଟଣାର ସ୍ମୃତି ମଉଳିଗଲାଣି । କିନ୍ତୁ ଆମ ସରକାରଙ୍କ ଯୁଦ୍ଧ ବିଭାଗ ଆଖିବୁଜି ବସିଥା'ନ୍ତି । ଖୁବ୍ ଦୂରରୁ ଶତ୍ରୁ ପକ୍ଷରୁ ଜାହାଜ ଆସୁଥିବାବେଳେ ତାଙ୍କୁ ସ୍ପଟ୍ ବା ଲକ୍ଷ୍ୟ କରିବା ପାଇଁ କୌଣସି ଯାନ୍ତ୍ରିକ ସରଞ୍ଜାମ ଏମାନଙ୍କ ପାଖରେ ନ ଥିବାରୁ ଜାପାନ୍‌ର କମାଣ ବାହିନୀ ଜାହାଜ ସବୁ ଆସି ମିତ୍ରପକ୍ଷର ସାତଗୋଟି ଜାହାଜକୁ ବିନା ପ୍ରତିରୋଧରେ ବିଧ୍ୱସ୍ତ କରିଦେଲେ । ବର୍ତ୍ତମାନ୍ ଗୁର୍‌ବାଟିଆର ସାମରିକ କେନ୍ଦ୍ର ନିଷ୍ପତ୍ତି ଗ୍ରହଣ କଲେ ଯେ, ଜଗତ୍‌ସିଂପୁର—ଜୟପୁର୍ ରାସ୍ତାର ନାଲିବରଠାରେ ଗୋଟିଏ ମିଲିଟାରି ଅବ୍‌ଜର୍‌ଭେଟରି ପୋଷ୍ଟ ସ୍ଥାପନ କରାଯିବ । ଏଇ ପୋଷ୍ଟରୁ ବଙ୍ଗୋପସାଗରର ଅବସ୍ଥା ବେଶ୍ ନିରୀକ୍ଷଣ କରିହେବ । କର୍ତ୍ତୃପକ୍ଷ ତତ୍ପର ହୋଇ ଉଠିଲେ । ଗୁର୍‌ବାଟିଅରୁ ବରଟକାୟ ମିଲିଟାରି ଟ୍ରକ୍ ସବୁ ବାହାରିପଡ଼ିଲେ । କିନ୍ତୁ ଯିବେ କେମିତି ? ସେବେଳାର ଜଗତ୍‌ସିଂପୁରରୁ ନାଲିବର ପର୍ଯ୍ୟନ୍ତ ରାସ୍ତାରେ ଅତି ଅଣଓସାରିଆ କଲଭର୍ଟ୍ ଓ ସାଇଫନ୍ ସବୁ ଥିଲା । ମିଲିଟାରି ଟ୍ରକ୍ ସେ ରାସ୍ତାରେ

ଯିବାର ପ୍ରଶ୍ନ ଉଠୁନ୍ନ । କାରଣ ଏ ରାସ୍ତା ଦ୍ୱାପ୍‌ଟନ୍ ବସ୍ ଓ ବଳଦଗାଡ଼ୀ ପାଇଁ ଉଆଣ ହୋଇଥିଲା । ସେମାନେ ଜାଣିପାରିଲେ ଯେ, ଏଇ ରାସ୍ତାଟିର ମାଲିକ ହେଉଛନ୍ତି କଟକ ଜିଲ୍ଲାବୋର୍ଡ । ଜିଲ୍ଲାବୋର୍ଡ ଶାସନ କ୍ଷମତା ରହିଛି କଂଗ୍ରେସ ହାତରେ ଓ ବୋର୍ଡର ଚେୟାର୍‌ମ୍ୟାନ୍ ହେଉଛନ୍ତି ଜଣେ ନିଷ୍ଠାପର କଂଗ୍ରେସ ନେତା ଶ୍ରୀ ନୀଳମଣି ପ୍ରଧାନ ।

## ଚୁପ୍ ସେ ବୈଠ୍ ରହୋ

ସେଦିନ ଆମ ଅଫିସ୍ ଚାଲିଛି । କଲେକ୍ଟରଙ୍କ ଅଫିସ୍‌ର ଜଣେ ପିଅନ ଗୋଟିଏ ଚିଠି ନେଇ ଆମ ଜିଲ୍ଲାବୋର୍ଡ଼ ଅଫିସ୍‌କୁ ଆସିଲା । ଲମ୍ବା କାଗଜର ଖୋଲା ଚିଠି । ଚିଠିରେ ପିନ୍ ଦ୍ୱାରା ସଂଯୁକ୍ତ ହୋଇ ରହିଛି ପ୍ରାୟ ପାଞ୍ଚ ଇଞ୍ଚ ଲମ୍ବର ଫ୍ଲାଗ୍ ଓ ଫ୍ଲାଗ୍‌ରେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଛି "ଓ୍ୱାର୍" ! ଅଫିସ୍ ଫାଇଲ୍‌ମାନଙ୍କରେ ସାଧାରଣତଃ ପ୍ରାୟ ଇଞ୍ଚେ ଦେଢ଼ଇଞ୍ଚ ଲମ୍ବର ଫ୍ଲାଗ୍ ସଂଯୁକ୍ତ ହୋଇଥାଏ ଓ ସେଥିରେ ଫାଇଲ୍‌ର ପୃଷ୍ଠାନମ୍ବର ବା ଅର୍‌ଜେଣ୍ଟ ଇତ୍ୟାଦି ଚିହ୍ନିତ ହୋଇଥାଏ । କିନ୍ତୁ ବ୍ରିଟିଶ ସରକାର ଯେତେବେଳେ ଏକ ବିଶ୍ୱବ୍ୟାପିକାମସ୍ତ ମହାସଂଗ୍ରରେ ଜଡ଼ିତ ହୋଇ ପଡ଼ିଛନ୍ତି, ସେତେବେଳେ ଏମିତି "ଓ୍ୱାର୍" ଚିହ୍ନିତ ପତ୍ର ଆସିବାର ମର୍ମ ହେଉଛି—ଆମେ ଓ୍ୱାର୍ ବା ଯୁଦ୍ଧ ଆସିଲୁ, ଆମକୁ ବାଟ ଛାଡ଼ିଦିଅ । ଚିଠିଟି ଆଣି ପିଅନ ଆମ ଅଫିସ୍ ଡାଏରିଷ୍ଟ ପାଖକୁ ଗଲା । ଡାଇରିଷ୍ଟ ପିଅନବୁକ୍‌ରେ ଦସ୍ତଖତ କରି ଚିଠିଟି ନେଇ ଡାଏରୀଭୁକ୍ତ ବା ପଞ୍ଜୀକରଣ କରିବା କଥା । ମୁଁ ଏ ପାଖ କୋଠରିରେ ଥାଇ ଦେଖୁଛି—ସେ ବିରାଟ ଓ୍ୱାର୍‌ଫ୍ଲାଗ୍‌କୁ ଦେଖି ଚିଠି ଗ୍ରହଣ ନ କରି ବିଚରା ଡାଏରିଷ୍ଟ ଡରିମରି କାକୁତି ମିନତି ଢଙ୍ଗରେ ବଡ଼ବାବୁଙ୍କ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କଲା । ପିଅନ ଚିଠିଟି ନେଇ ବଡ଼ବାବୁଙ୍କ ପାଖକୁ ଆସିଲା । ବଡ଼ବାବୁ କିଛି କହୁ ନ ଥାନ୍ତି । ମୁଁ ପ୍ରଶ୍ନବାଚକ ଦୃଷ୍ଟିରେ ବଡ଼ବାବୁଙ୍କ ଆଡ଼କୁ ଚାହିଁଥାଏ । ବଡବାବୁ ନୀରବତା ଭଙ୍ଗ କରି ମତେ କହିଲେ—ଆପଣ ଚିଠିଟି ରିସିଭ୍‌କରି ସଙ୍ଗେ ସଙ୍ଗେ ଚେୟାରମ୍ୟାନଙ୍କ ନିକଟକୁ ନେଇଯାଆନ୍ତୁ । ପିଅନଠାରୁ ଚିଠି ଗ୍ରହଣ କରି ମୁଁ ପଢ଼ିଲି । ···ଜିଲ୍ଲାବୋର୍ଡ ଅଧୀନସ୍ଥ କଟକ ଜଗତ୍‌ସିଂହପୁର ନାଲିବର ରାସ୍ତାକୁ ମିଲିଟାରୀ ଟ୍ରକ୍‌ସବୁର ସୁବିଧାରେ ଯାତାୟାତ ସକାଶେ ତୁରନ୍ତ ଉପଯୋଗୀ କରିବା ପାଇଁ ଓ ଏଥିନିମନ୍ତେ କି ବ୍ୟବସ୍ଥା କରାଯାଉଛି, ସେ କଥା ସାତଦିନ ମଧ୍ୟରେ ସରକାରଙ୍କୁ ଜଣାଇବା ପାଇଁ କଲେକ୍ଟରଙ୍କ ଜରିଆରେ ଜିଲ୍ଲାବୋର୍ଡ଼କୁ ସାମରିକ କର୍ତ୍ତୃପକ୍ଷଙ୍କ ଓ୍ୱାର୍ ଫ୍ଲାଗ୍ ସଂଯୁକ୍ତ କଡ଼ା ନିର୍ଦ୍ଦେଶ ଏ ଚିଠିରେ ଆସିଛି ।

ବୋର୍ଡ ଅଫିସ୍‌ରେ ମୁଁ ପୂର୍ତ୍ତବିଭାଗ ଦାୟିତ୍ୱରେ ଥାଏ ବୋଲି ବଡ଼ବାବୁ ମୋ' ପାଖକୁ ପଠାଇଦେଇଚନ୍ତି । ଚିଠିଟି ନେଇ ମୁଁ ଚେୟାର୍‌ମ୍ୟାନ୍‌ଙ୍କ ପାଖକୁ ଗଲି । ଚେୟାର୍‌ମ୍ୟାନ୍ ଶ୍ରୀ ନୀଳମଣି ପ୍ରଧାନ ବସିଛନ୍ତି । ନୀରବରେ ଚିଠିଟି ନେଇ ତାଙ୍କ ସମ୍ମୁଖରେ ରଖିଲି । ମୁଁ ଦେଖୁଚି, ଚିଠି ପଢ଼ିବା ଅବସରରେ ତାଙ୍କର ଭ୍ରୁକୁଞ୍ଚିତ ହୋଇଯାଉଛି । ହୁଏତ ଚିଠିରେ ଯେଉଁ ଅବାସ୍ତବ କଥା ସବୁର ଉଲ୍ଲେଖ ରହିଚି, ସେଇଥିପାଇଁ ଚିଠି ପଢ଼ିସାରି କିଛିଟା ଗମ୍ଭୀର ଦୃଷ୍ଟିରେ ମୋତେ ଚାହିଁଲେ । ତା'ପରେ ହଠାତ୍ ରାଗରେ ଜଳିଉଠି ଚିଠିଟା ଚିରିଦେବାକୁ ଉଦ୍ୟତ ହେଲାବେଳେ ମୁଁ ଅତି ବିନୀତ ଭାବରେ ବାରଣ କଲି—ନାହିଁ ସାର୍, ଚିଠି ଚିରନ୍ତୁ ନାହିଁ । ···ସଙ୍ଗେ ସଙ୍ଗେ ମୋ' କଥାର ପ୍ରତିବାଦ କରି କହିଲେ—କାହିଁକି ? ତମେ କି ଜାଣ ଏ. ଆଇ. ସି. ସି. କହିଚି ଏ ଯୁଦ୍ଧ ସହିତ କଂଗ୍ରେସ୍‌ର କୌଣସି ସହଯୋଗ ରହିବ ନାହିଁ । କହିଲି—ମୁଁ ସେଇ କଥା କହୁଚି ସାର୍, ଜିଲ୍ଲାବୋର୍ଡ଼ ଏ ଚିଠି ଉପରେ କିଛି ହେଲେ ଆକସନ୍ ନେବେ ନାହିଁ । ଆପଣ ସ୍ପେକ୍‌ଟୋକ୍ ସେଇ ଅର୍ଡ଼ର ଦିଅନ୍ତୁ, ସେଇଟା ଆମର ରେକର୍ଡ ହୋଇ ରହିଯିବ । ···ଟିକିଏ ଚିନ୍ତା କରି 'ବେଶ୍' ବୋଲି କହି ହାତରେ କଲମ ଧରିଲେ । ମୁଁ ମନେ ମନେ ଭାବିଲି, ସାଧାରଣ ଅଫିସିଏଲ୍ ଧାରା ଅନୁଯାୟୀ ସେ ହୁଏତ ଏଇ ଅର୍ଡ଼ର ଦେବେ "ଜିଲ୍ଲାବୋର୍ଡ ଏ ନିର୍ଦ୍ଦେଶ-ନାମାକୁ ସ୍ୱୀକାର କରିବ ନାହିଁ, ଏ କଥା ସେମାନଙ୍କୁ ଜଣାଇଦିଅ !" ···କିନ୍ତୁ ନା, ସେ ବେଶ୍ ଭାବିଚନ୍ତି, ସେଇ ଚିଠି ଉପରେ ଅର୍ଡ଼ର ଲେଖିଲେ—"ଚୁପ୍‌ସେ ବୈଠ ରହୋ" । ସହଜେ ତ ତାଙ୍କ ଅକ୍ଷର ଖୁବ୍ ସୁନ୍ଦର, ମୋର ମନେ ହେଲା ଆଜି ଯେମିତି ସିଏ ଏ ଶବ୍ଦ କେତୋଟି ଆହୁରି ସୁନ୍ଦର ଅକ୍ଷରରେ ଲେଖିଛନ୍ତି । ମୋ ମନ ଭିତରେ ଯେତେ ଯାହା ଆଶଙ୍କା ଉଦ୍‌ବେଗ ଥିଲା, ସବୁ କୁଆଡ଼େ ଉଭେଇଗଲା । ମୋ ଆଖି ସେଇ ଗୋଟିଏ ଧାଡ଼ି ଲେଖା ଉପରେ । ଭାଷା ହିନ୍ଦୀ ଲିପି ଓଡ଼ିଆ—'ଚୁପ୍‌ସେ ବୈଠ ରହୋ' । ବିଦେଶୀ ଶାସନ ଅଧୀନରେ ସରକାରୀ ଚାକିରି କରିବ ନାହିଁ ବୋଲି ସେ ଚାକିରିରୁ ଇସ୍ତଫା ଦେଇ ଏକ ସ୍ୱାୟତ୍ତଶାସନ ସଂସ୍ଥା ଏ ଜିଲ୍ଲାବୋର୍ଡ଼ରେ ଚାକିରି କରିଚି । ଯଦି ମୁଁ ଏଠି ନ ଥାଇ ଇଂରେଜ ଶାସନାଧୀନ କୌଣସି ସରକାରୀ ଦପ୍ତରରେ ଥା'ନ୍ତି, ତେବେ ଏ ନାଟକଟି ଦେଖିବାର ସୌଭାଗ୍ୟ ମୋର ହୋଇପାରି ନ ଥାନ୍ତା । ବାସ୍ତବରେ ଏଇ ଘଟଣା ପାଇଁ ଗ୍ରୁତି ମୋର ଗର୍ବରେ ଫୁଲି ଉଠିବା ସଙ୍ଗେ ସଙ୍ଗେ ଏକ ଉଚ୍ଚିତ ସାମରିକ ଦପ୍ତରର ଏଭଳି ଇଙ୍ଗିତପୂର୍ଣ୍ଣ ପତ୍ର ଉପରେ ଜିଲ୍ଲାବୋର୍ଡ଼ ଚେୟାର୍‌ମ୍ୟାନ୍‌ଙ୍କ ଏଇ ସ୍ପେକ୍‌ଟୋକ୍ ଜବାବ୍ ତଥା ଆମୋଦପୂର୍ଣ୍ଣ ଆଦେଶଟି ପଢ଼ି ମୁଁ ମୋର ଉଦ୍‌ଗତ ଚାପା ହସକୁ ଏଡ଼ାଇବା ପାଇଁ ମୁହଁ ବୁଲେଇ ନେଲି ।

ଟିକଏ ପରେ ଗ୍ରହି ଦେଖିଲି, ଆଦେଶଟି ଦେଇ ସାରିଲା ପରେ କଠୋର ଆଦର୍ଶବାଦୀ ଓ ନୀତିପ୍ରବଣ ଶ୍ରୀଯୁକ୍ତ ନୀଳମଣି ପ୍ରଧାନଙ୍କ ମୁଖମଣ୍ଡଳରେ ସନ୍ତୋଷର ଲହରୀ ଖେଳିଯାଇଚି ।

## ଓଡ଼ିଶା କଂଗ୍ରେସର ଭୀଷ୍ମଦେବ ନୀଳମଣି ପ୍ରଧାନ

ହଁ, ଶ୍ରୀ ନୀଳମଣି ପ୍ରଧାନ, ଓଡ଼ିଶାର ସର୍ବବୃହତ୍ କଟକ ଜିଲ୍ଲାବୋର୍ଡ଼ର ସର୍ବୋଚ୍ଚ କର୍ତ୍ତା ଅର୍ଥାତ୍ ଚେୟାରମ୍ୟାନ୍ ପଦବୀକୁ ସେ ବହୁକାଳ ଧରି ମଣ୍ଡିତ କରିଆସୁଥିଲେ । ଜିଲ୍ଲାବୋର୍ଡ଼ ଚେୟାରମ୍ୟାନ୍ ପଦ ଏକ ଚାକିରି ନୁହେଁ । ଚେୟାରମ୍ୟାନ୍ ହେଉଚନ୍ତି ଏକ ନିର୍ବାଚିତ ଲୋକପ୍ରତିନିଧି । ଏହା ଏକ ମର୍ଯ୍ୟାଦା-ସମ୍ପନ୍ନ ଅବୈତନିକ ପଦ—ଏଥିଲାଗି ଏଥିରେ କିଛି ଅନରେରିୟମ୍ ବା ଭତ୍ତା ମିଳେ ନାହିଁ । ଚେୟାରମ୍ୟାନ୍ ଯେତେବେଳେ ଟୁର୍ ବା ଗସ୍ତରେ ଯିବେ, ସେଥିପାଇଁ ତାଙ୍କର ପ୍ରାପ୍ୟ ଗସ୍ତଖର୍ଚ୍ଚ ମାତ୍ର ପା'ନ୍ତି । ହଁ, ପଦମର୍ଯ୍ୟାଦାରେ ତାଙ୍କ ପଦ ଜିଲ୍ଲା କଲେକ୍ଟରଙ୍କ ସମତୁଲ୍ୟ ।···ପ୍ରଚଣ୍ଡ ଖରାଦିନ । ନୀଳମଣିବାବୁ ଚେୟାରମ୍ୟାନ୍ ଥା'ନ୍ତି । ସେଦିନ ସେ ଟୁର୍‌ରୁ ଫେରିଲେ । ମୁଁ ଜିଲ୍ଲାବୋର୍ଡ଼ ପୂର୍ତ୍ତବିଭାଗ ସିନିୟର ଅଫିସ୍ କର୍ମଚାରୀ । ଚେୟାରମ୍ୟାନ୍‌ଙ୍କଠାରୁ ଖଣ୍ଡେ ଚ୍ଛୋଟିଆ କାଗଜ ମୋ ପାଖକୁ ଆସିଲା । ସେଥିରେ ଲେଖାଅଛି ଦି' ଧାଡ଼ି କବିତା—

> "କଳସୀ କାଖେଇ ପଲ୍ଲୀବଧୂଏ ଚାଲନ୍ତି ପାଣି ପାଇଁ
> ଦୁଇ ମାଇଲ୍ ସୀମା ଭିତରେ ପାଣି କେଉଁଠି ନାହିଁ" ।

ଟିକଏ ତଳକୁ ଲେଖା ଅଛି—ଆଳପିଙ୍ଗଳ ନୂଆପାଟଣା ଗ୍ରାମରେ ତିନିଦିନ ଭିତରେ କୂଅ ଖୋଳାହେବ ।···ତା ତଳକୁ ଚେୟାରମ୍ୟାନ୍‌ଙ୍କ ଦସ୍ତଖତ । କାଗଜ ଖଣ୍ଡିକ ପାଇ ମୁଁ କିଛି ମୁହୂର୍ତ୍ତ ସ୍ଥିର ହେଇ ବସିଲି । ଚେୟାରମ୍ୟାନ୍ ଅର୍ଡ଼ର ଦେଇଚନ୍ତି ତିନିଦିନ ଭିତରେ କୂଅ ଖୋଳା ହେବ । କିନ୍ତୁ କେମିତି ? ମୁଁ ଜାଣେ, ବଜେଟ୍‌ରେ ଅର୍ଥ ବ୍ୟବସ୍ଥା ନାହିଁ । କଣ୍ଟିଜେନ୍‌ସିରେ ଏତେ ଟଙ୍କା ନାହିଁ । ଚେୟାରମ୍ୟାନ୍ ଏସବୁ ଅସୁବିଧା କଥା କିଛି ବୁଝିବେନି । ନୂଆ ପାଟଣା ଅତି ଗରିବ ଗାଁ । କୂଅଖୋଳା ହେବହିଁ ହେବ । ଇଞ୍ଜିନିୟର ବାସୁବାବୁଙ୍କ ପାଖକୁ ଗଲି । ସେ କେବଳ ଜଣେ ଭଲ ଇଞ୍ଜିନିୟର ନୁହନ୍ତି, ଜଣେ ଭଦ୍ରଲୋକ । ତାଙ୍କ ସହିତ ସବୁକଥା ଆଲୋଚନା ହେଲା । ଯଦି ଟେଣ୍ଡର ଇତ୍ୟାଦି ମଗାଯାଇ ନିୟମ ମୁତାବକ କାମ ହେବ, ତେବେ ତିନିଦିନ ନୁହେଁ, ତିନିମାସରେ ହୁଏତ କୂଅଟି ଖୋଳା ହୋଇ ପାରିବ ନାହିଁ। କିନ୍ତୁ ଚେୟାରମ୍ୟାନ୍ ଚାହୁଁଛନ୍ତି, ତିନିଦିନ ମଧ୍ୟରେ କୂଅ

ଖୋଲା ହେବ ! କେଉଁ ଚେୟାରମ୍ୟାନ ? ଇଏ ଆଉ କେହି ନୁହଁନ୍ତି । ବରିଷ୍ଠ କଂଗ୍ରେସ ନେତା ଚେୟାରମ୍ୟାନ୍ ନୀଳମଣି ପ୍ରଧାନ, ଯିଏ ସାଇକେଲ୍‌ଟିରେ ବୁଲୁଥିଲେ—ସାଇକେଲ ପଛରେ ସାମାନ୍ୟ ସତରଞ୍ଜି ଓ ଗୁଦଡ଼ର ବିଛଣାଟିଏ ବନ୍ଧାହୋଇଥାଏ । କେତେବେଳେ କେନାଲ ବନ୍ଧରେ, କେତେବେଳେ ପକାଉଠା କଚ୍ଚା ରାସ୍ତାରେ, ପୁଣି କେତେବେଳେ ଗଛର ବଲ ହିଡ଼ ଉପରେ । ମୁଣ୍ଡରେ କେବଳ ଖଦଡ଼ କନାର ଟୋପିଟିଏ । ସେଦିନ ଏ ପ୍ରଚଣ୍ଡ ଖରାରେ ସେଇ ଗାଁଟିର ନାରୀମାନେ ଶୁଖିଲା ମାଠିଆ ଧରି ପାଣି ମୁନ୍ଦାଏ ଖୋଜି ବୁଲିବାର କରୁଣ ଦୃଶ୍ୟ ନିଜ ଆଖିରେ ଦେଖି, ସେଇଠୁ ଝୀଲ ନାଳ ହୋଇ ସିଧାସଳଖ ଜିଲ୍ଲାବୋର୍ଡ଼ ଅଫିସ୍‌କୁ ଫେରିଆସି ଆଦେଶ ଦେଇଛନ୍ତି "ସେ ଉଦ୍ୟାନ ଭିତରେ କୂଅ ଖୋଲା ହେବ । ଏ ଘଟଣାରେ ତାଙ୍କର ମର୍ଯ୍ୟାଦା ଆମକୁ ରଖିବାକୁ ପଡ଼ିବ । ବାସୁବାବୁ ମୋତେ କହିଲେ ଆପଣ ଏ ଲେଖାଟିକୁ ମେମୋ ନମ୍ବର ପକାଇ "ମୋ ପାଖକୁ ଇସୁ କରିଦିଅନ୍ତୁ । ବାକି ଦାୟିତ୍ୱ ମୋର । ସେଇଠି ମୋ ଆଖି ଆଗରେ ମୁଁ ଦେଖିଲି, ପ୍ରଥମ ଶ୍ରେଣୀ ଇଞ୍ଜିନିୟର ବାସୁଦେବ ମହାନ୍ତି ତାଙ୍କ ଗାଡ଼ି ଧରି ସେଇ ଖରାରେ ବାହାରିଗଲେ । ସମସ୍ତ ଅଫିସିଆଲ ଆଦବ କାଇଦାକୁ ଯଥାଯୋଗ୍ୟ ସମ୍ମାନ ସହି ଆଡ଼େଇ ରଖି, ଗ୍ରାମବାସୀମାନଙ୍କ ସାହଚର୍ଯ୍ୟରେ ଠିକ୍ ଉଦ୍ୟାନ ଭିତରେ କୂପଖନନ କାର୍ଯ୍ୟ ଶେଷ ହେଲା । ଆନନ୍ଦର କଥା, କୂପଟିରେ ନିର୍ମଳ ଜଳର ସନ୍ଧାନ ମିଳିଲା । ବାସୁବାବୁ ତାଙ୍କ ଜଳପାତ୍ରରେ ସେଇ କୂପର କିଛି ଜଳ ଆଣି କଟକ ଫେରିଲେ ।

ନୀଳମଣି ପ୍ରଧାନ ନିଶ୍ଚିତ ଭାବେ ଜଣେ ସାଧୁ, ସଜ୍ଜନ ଓ ନିର୍ବିବାଦରେ ଏକ କଳଙ୍କଶୂନ୍ୟ ବ୍ୟକ୍ତି ଥିଲେ । ସେଇ ସଙ୍ଗେ ସଙ୍ଗେ ଅତି ସାଧାରଣ ସରଳପ୍ରାଣ ବ୍ୟକ୍ତିଭାବେ ତାଙ୍କର ସୁଖ୍ୟାତି ଥିଲା । କୌଣସି ବାଦବିବାଦର ସୀମା ସ୍ପର୍ଶ କରୁ ନ ଥିଲେ । ବ୍ୟକ୍ତିଗତ ଭାବେ କୌଣସି ମାନ-ଅପମାନକୁ ସେ ଏମିତି ଏଡ଼ାଇ ଦେଉଥିଲେ । କିନ୍ତୁ କଟକ ଜିଲ୍ଲାବୋର୍ଡ଼ ଚେୟାରମ୍ୟାନଙ୍କ ପଦମର୍ଯ୍ୟାଦା ପ୍ରତି ସେ ଅନୁକ୍ଷଣ ସଚେତନ ଥିଲେ । ଓଡ଼ିଶାରେ ରେଭିନ୍ୟୁ ବୋର୍ଡ଼ ଗଠିତ ହେଲା । ବୋର୍ଡ଼ର ପ୍ରଥମ ମେମ୍ବର ହେଲେ ଶ୍ରୀଯୁକ୍ତ ନୀଳମଣି ସେନାପତି, ଆଇ.ସି.ଏସ୍. । ପ୍ରଥମ ଓଡ଼ିଆ ଆଇ.ସି ଏସ୍ ଅଫିସର । ଜଣେ କର୍ମଠ ଅଫିସର ଭାବେ ତାଙ୍କର ସୁଖ୍ୟାତି ଥିଲା ।

## ଚିଠି ନୁହେଁ, ମେମୋ

ସେଦିନ ରେଭିନ୍ୟୁ ବୋର୍ଡ଼ ଅଫିସରୁ ଶ୍ରୀଯୁକ୍ତ ସେନାପତିଙ୍କ ଦସ୍ତଖତରେ ଜିଲ୍ଲାବୋର୍ଡ଼ ଚେୟାରମ୍ୟାନଙ୍କ ନିକଟରେ ଏକ ମେମୋ ପହଞ୍ଚିଲା । ଜିଲ୍ଲାବୋର୍ଡ଼ର

କିଛି ରାସ୍ତା ସମସ୍ୟା ହେଲା ମେମୋଟିର ବିଷୟବସ୍ତୁ । ମେମୋଟି ମୋ ନିକଟକୁ ଆସିଲା । ମେମୋଟି ଦେଖି ଓ ପଢ଼ି ମୋର ବିସ୍ମୟର ସୀମା ରହିଲା ନାହିଁ । ଜଣେ ଉପରିସ୍ଥିତ ଅଫିସର ତାଙ୍କର କୌଣସି ନିମ୍ନସ୍ତରର କର୍ମଚାରୀଙ୍କୁ ଏପରି ମେମୋ ଲେଖିଥା'ନ୍ତି । କିନ୍ତୁ ଜିଲ୍ଲାବୋର୍ଡ଼ର ଚେୟାରମ୍ୟାନ ରେଭିନ୍ୟୁବୋର୍ଡ଼ ମେମ୍ବରଙ୍କ ଅଧୀନସ୍ଥ ବା ତଳିଆ ଅଫିସର୍ ନୁହଁନ୍ତି । ତାଙ୍କ ପାଖକୁ ଏଭଳି ମେମୋ ଲେଖିବା ଅର୍ଥ ତାଙ୍କ ପଦବୀକୁ ଅପମାନିତ କରିବା । ପୁଣି ଜିଲ୍ଲାବୋର୍ଡ଼ ହେଉଛି ଏକ ସ୍ୱୟଂଶାସିତ ଅନୁଷ୍ଠାନ ଓ ଏହାର ଚେୟାରମ୍ୟାନ୍ ହେଉଛନ୍ତି ବାଧ୍ୟବାଧ ଭାବରେ ଜଣେ ନିର୍ବାଚିତ ବ୍ୟକ୍ତି । ପଦମର୍ଯ୍ୟାଦା ଅନୁସାରେ ସେ ଜିଲ୍ଲା କଲେକ୍ଟରଙ୍କ ସହିତ ସମପଦବୀର ଅଧିକାରୀ । ପୁଣି ଯେହେତୁ ଜିଲ୍ଲାବୋର୍ଡ଼ ହେଉଛି ଏକ ସ୍ୱୟଂଶାସିତ ପ୍ରତିଷ୍ଠାନ, ଚେୟାରମ୍ୟାନ୍‌ମାନଙ୍କର କୌଣସି ଉପରିସ୍ଥ ଅଫିସର ନାହାନ୍ତି । ଅତଏବ ତାଙ୍କ ନିକଟକୁ ରେଭିନ୍ୟୁ ବୋର୍ଡ଼ ମେମ୍ବରଙ୍କର ଏପରି ମେମୋ ପ୍ରେରଣ କରିବାର କୌଣସି ଅଧିକାର ନାହିଁ । ତାଙ୍କ ସହିତ ପତ୍ରାଳାପ କରିବାକୁ ହେଲେ ସମସ୍ତ ଆଦବ କାଇଦା ରକ୍ଷା କରି ପତ୍ର ଲେଖିବାକୁ ହେବ । ମେମୋଟି ନେଇ ମୁଁ ଚେୟାରମ୍ୟାନ୍‌ଙ୍କ ନିକଟକୁ ଗଲି । ପଢ଼ୁ ପଢ଼ୁ ତାଙ୍କର ଭ୍ରୂ-କୁଞ୍ଚିତ ହୋଇ ଯାଉଥାଏ । ଅଳ୍ପ ହସି କହିଲେ—ନୀଳମଣି ସେନାପତି ଏମିତି ଗୋଟିଏ କାମ କଲେ କିପରି ?···ଟିକେ ରହି କହିଲେ—ଆମେ ତେବେ କ'ଣ କରିବା ?···ମୁଁ କହିଲି, ରେଭିନ୍ୟୁବୋର୍ଡ଼ର ମେମ୍ବର ହେଉଛନ୍ତି ଓଡ଼ିଶା ରାଜସ୍ୱ ବିଭାଗର ସର୍ବୋଚ୍ଚ କର୍ତ୍ତା । ଏଇ କଥା ବିଚାର କରି ଆପଣ ଯାହା ଆଦେଶ ଦେବେ । ଟିକେ ଚିନ୍ତା କରି କହିଲେ—ଏ ମେମୋ ଆମେ ଫେରେଇ ଦେବା, କ'ଣ କହୁଛ ?···· କହିଲି, ହଁ ସାମି, ତାଙ୍କୁ ଚିଠି ଲେଖି ଜଣେଇଦେବା, ଯେହେତୁ ତାଙ୍କ ମେମୋରେ ଅଫିସିଆଲ୍ ପତ୍ରାଳାପର ଡେକୋରମ୍ ରକ୍ଷା ହୋଇନି ।····ମୋ କଥାରେ ବାଧାଦେଇ କହିଲେ—ନା, ଚିଠି ଲେଖି ନୁହେଁ । ସିଏ ଯେମିତି ତାଙ୍କ ଅଫିସ ମେମୋ ଫର୍ମରେ ଲେଖିଛନ୍ତି—"ଚେୟାରମ୍ୟାନ ଜିଲ୍ଲାବୋର୍ଡ଼ କଟକ, କଟକ ନିଆଳୀ ରାସ୍ତା ଛକରେ ବହୁଲୋକ ବେଆଇନ ଗୃହ ନିର୍ମାଣ କରିଛନ୍ତି, ସେ ସମସ୍ତ ତୁରନ୍ତ ଉଠାଇ ଦିଅ ଇତ୍ୟାଦି ଇତ୍ୟାଦି ।" ତମେ ସେମିତି ଆମ ଅଫିସ ମେମୋ ଫର୍ମରେ ତାଙ୍କୁ ଲେଖ "ମେମ୍ବର, ରେଭିନ୍ୟୁବୋର୍ଡ଼, ଯେହେତୁ ଆପଣ ଚେୟାର-ମ୍ୟାନ୍‌ଙ୍କ କୌଣସି ପଦମର୍ଯ୍ୟାଦା ରକ୍ଷା ନ କରି ମେମୋଟିଏ ପଠାଇଛନ୍ତି, ନିମ୍ନ ସ୍ୱାକ୍ଷରକାରୀ ଏ ମେମୋ ଉପରେ କୌଣସି କାର୍ଯ୍ୟପନ୍ଥା ଗ୍ରହଣ କରିବେ ନାହିଁ । ମେମୋଟି ଫେରସ୍ତ କରାଗଲା" ।····ତାହାହିଁ ହେଲା । ଏ ଘଟଣାର ପ୍ରାୟ ଏକ

ମାସ ପରେ ସରକାରଙ୍କ ସ୍ୱାୟତ୍ତଶାସନ ବିଭାଗ ଜରିଆରେ କଟକ—ନିଆଳୀ ରାସ୍ତା ସମ୍ପର୍କରେ ଗୋଟିଏ ବିଧିବଦ୍ଧ ସରକାରୀ ପତ୍ର ଆମ ନିକଟକୁ ଆସିଲା ।

କେବଳ ଏତିକ ନୁହେଁ । ଏମିତି ବହୁଘଟଣା ତାଙ୍କୁ କେନ୍ଦ୍ରକରି ଘଟି ଯାଇଚି । ଦୀର୍ଘକାଳ ଧରି ସେ କଟକ ଜିଲ୍ଲାବୋର୍ଡ଼ର ଚେୟାରମ୍ୟାନ୍ ଥିଲେ । ଜିଲ୍ଲାବୋର୍ଡ଼କୁ ତାଙ୍କ ଜୀବନର ଏକ ପବିତ୍ର କର୍ମସ୍ଥଳୀ ବୋଲି ସେ ଗ୍ରହଣ କରି-ନେଇଥିଲେ । କଟକ ଜିଲ୍ଲାର ଏ ପ୍ରାନ୍ତରୁ ସେ ପ୍ରାନ୍ତ ପର୍ଯ୍ୟନ୍ତ ସମସ୍ତେ କହିବେ ଯେ, କୂପ ପୁଷ୍କରଣୀ ଖନନ, ରାସ୍ତାଘାଟ ନିର୍ମାଣ, ବିଦ୍ୟାଳୟ ଓ ସ୍ୱାସ୍ଥ୍ୟକେନ୍ଦ୍ର ସ୍ଥାପନ ଆଦି ଅସଂଖ୍ୟ ଅସୁମାରି ଜନମଙ୍ଗଳ କର୍ମ ସହିତ ଏକଦା ସତ୍ୟବାଦୀ ବନ ବିଦ୍ୟାଳୟର ଛାତ୍ର, ବାହାରଣା ଗ୍ରାମନିବାସୀ କଟକ ଜିଲ୍ଲାବୋର୍ଡ଼ର ଚେୟାରମ୍ୟାନ୍ ନୀଳମଣି ପ୍ରଧାନ କପରି ଏକାତ୍ମା ଏକ ପ୍ରାଣ ହୋଇଯାଇଥିଲେ । ବନ୍ୟା ଜଳରେ ଚିର ପ୍ରପୀଡ଼ିତ ଧୋୟାଞ୍ଚଳ ବିୟାଳିଶ ମୌଜା ଚିରଦିନ ପାଇଁ ତାଙ୍କର ପ୍ରଚେଷ୍ଟାରେ ହିଁ ବନ୍ୟା ଦାଉରୁ ମୁକ୍ତ ହୋଇ ପାରିଛି । କଟକ ନିଆଳୀ ରାସ୍ତା ତାଙ୍କର ଅନ୍ୟଏକ ଅମର କୀର୍ତ୍ତି । କଟକ ଜିଲ୍ଲାବୋର୍ଡ଼ରୁ ନୀଳମଣି ପ୍ରଧାନଙ୍କ ପୃଥକୀକରଣ କେହି କେବେ କରିପାରିବେ ନାହିଁ । ଯେତେବେଳେ ଓଡ଼ିଶା ବିଧାନସଭାରେ ଏକ ବିଲ୍ ଗୃହୀତ ହୋଇ ଜିଲ୍ଲାବୋର୍ଡ଼ମାନଙ୍କର ବିଲୋପ-ସାଧନ କରାଗଲା, ତାଙ୍କ ଆଖିରୁ ଲୁହ ଝରି ଆସୁଥିଲା । କାହିଁକ ? ସିଏ ତ କଟକ ଜିଲ୍ଲାବୋର୍ଡ଼ର ଅକଳାନ୍ତ ଉନ୍ନତି ସାଧନ ପାଇଁ ନିଜର ଜୀବନକୁ ଉତ୍ସର୍ଗ କରିଥିଲେ, କିନ୍ତୁ ବିନିମୟରେ ଗୋଟିଏ ପାହୁଲାର ସ୍ୱାର୍ଥ ସାଧନ କରି ନ ଥିଲେ ।····ଏଇ ଆଖି ଦେଖିଚି, ଜଣେ କଣ୍ଟ୍ରାକ୍ଟର କଟକ ଜିଲ୍ଲାବୋର୍ଡ଼ର ଗୋଟିଏ ରାସ୍ତା ନିର୍ମାଣ କାର୍ଯ୍ୟରେ ନିମ୍ନମାନର ଗୋଡ଼ି ଯୋଗାଇଥିବାରୁ ତତ୍କାଳୀନ ଚେୟାର-ମ୍ୟାନ୍ ଶୈଳେନ୍ଦ୍ରନାରାୟଣ ଭଞ୍ଜଦେଓ ସେ କଣ୍ଟ୍ରାକ୍ଟରର ବିଲ୍ ପାସ୍ କରି ନ ଥିଲେ । ଭଞ୍ଜଦେଓଙ୍କ ପରେ ଅନ୍ୟ ଜଣେ ଚେୟାରମ୍ୟାନ୍ ଆସିଲେ । ସେ ହେଉଚନ୍ତି କଟକ ସହରର ଜଣେ ବିଶିଷ୍ଟ ବ୍ୟକ୍ତି । ସେ କଣ୍ଟ୍ରାକ୍ଟର ରାସ୍ତାର ନିମ୍ନମାନର ଗୋଡ଼ି ନ ବଦଳାଇ ଗୋଟିଏ ସିଡେନ୍ ବଡ ନୂଆ ମଟରକାର ନେଇ ନୂଆ ଚେୟାରମ୍ୟାନଙ୍କୁ ଭେଟି ଦେଲେ । ତାର ଦୁଇଦିନ ପରେ ସେ କଣ୍ଟ୍ରାକ୍ଟର ତାର ଅଟକ ରହିଥିବା ବିଲ୍ର ସମସ୍ତ ଟଙ୍କା ନେଇ ଚାଲିଗଲା । ଯଦି ସେଇ ଚେୟାରମ୍ୟାନଙ୍କ କାର୍ଯ୍ୟକାଳ ବେଳେ ଜିଲ୍ଲାବୋର୍ଡ଼ର ବିଲୋପ ସାଧନ ହୋଇଥା'ନ୍ତା, ତେବେ ହୁଏତ ପ୍ରଧାନଙ୍କ ପରି ଆଖିରୁ ମାତ୍ର କେତେ ବିନ୍ଦୁ ଲୁହ ନ ଝରି ତାଙ୍କ କ୍ରନ୍ଦନର ଉଚ୍ଛ୍ୱାସରେ କଟକ ଜିଲ୍ଲାବୋର୍ଡ଼ କାର୍ଯ୍ୟାଳୟ ହୁଏତ ଲୁହରେ ଭାସିଯାଇଥା'ନ୍ତା ।

## କଟକ ଜିଲ୍ଲାବୋର୍ଡ଼ ଚେୟାରମ୍ୟାନ୍ ପଦଚ୍ୟୁତ

ହଁ, ଜିଲ୍ଲାବୋର୍ଡ ରାସ୍ତାରେ ଯେତେ ଅଣଓସାରିଆ କଲ୍‌ଭର୍ଟ୍‌ ଅଛି, ତାକୁ ତୁରନ୍ତ ଚଉଡ଼ା କରିବା ପାଇଁ ଯେଉଁ ଚିଠି ସେଦିନ ମିଲିଟାରୀ କର୍ତ୍ତୃପକ୍ଷଙ୍କଠାରୁ "ଓ୍ୱାର୍‌ଫ୍ଲାଗ୍‌" ମରାହୋଇ ଆମ ଅଫିସ୍‌କୁ ଆସିଲା, ତାକୁ ନେଇ ମୁଁ ଫାଇଲ୍‌ରେ ରଖିଲି । ଏ ଚିଠିରେ ତ ଚେୟାରମ୍ୟାନ ନୀଳମଣି ପ୍ରଧାନ ଅର୍ଡର ଦେଇଚନ୍ତି—"ଚୁପ୍ ସେ ବୈଠ୍ ରହୋ ।" ମୁଁ ମନେ ମନେ ଭାବୁଥାଏ, ଆମେ ସିନା ଏଠି ଚୁପ୍ ସେ ବୈଠ୍ ରହିବୁ, କିନ୍ତୁ ଚାର୍‌ବାଟିଆରେ ସେମାନେ ! ସେମାନେ କ'ଣ ବୈଠ୍ ରହିପାରିବେ ? ଏ ଯୁଦ୍ଧରେ କଂଗ୍ରେସ ତଥା ଭାରତବାସୀ ଇଂରେଜ ସରକାର ସହିତ ସହଯୋଗ କରିବେ ନାହିଁ ବୋଲି ଜାତୀୟ କଂଗ୍ରେସ ଯେଉଁ ଐତିହାସିକ ନିଷ୍ପତ୍ତି ନେଇଚି, ସେଥିରୁ କଂଗ୍ରେସ ଶାସିତ କଟକ ଜିଲ୍ଲାବୋର୍ଡ ଯେ ଲବେ ମାତ୍ର ହଟିବ ନାହିଁ, ଏହା ଦୃଢ଼ ନିଶ୍ଚିତ ।...ସାତଦିନ ଭିତରେ ମିଲିଟାରୀ କର୍ତ୍ତୃପକ୍ଷ ଉତ୍ତର ଚାହିଁଚନ୍ତି । ଉତ୍ତର ନ ପାଇଲେ...ମୁଁ ଯାହା ଆଶଙ୍କା କରୁଥିଲି ତାହା ହିଁ ହେଲା । ଠିକ୍ ସାତଦିନ ପରେ ସରକାରଙ୍କ ଏଲ୍. ଏସ୍. ଜି. ଅର୍ଥାତ୍ ସ୍ୱାୟତ୍ତ ଶାସନ ବିଭାଗର ଏକ ସ୍ପେଶାଲ ଗେଜେଟ୍ ନୋଟିଫିକେସନ୍ ବାହାରିଲା—"କଟକ୍ ଡିଷ୍ଟ୍ରିକ୍ଟବୋର୍ଡ ଇଜ୍ ସୁପରସିଡ଼େଡ୍ "ବାଇ ଗଭର୍ଣ୍ଣମେଣ୍ଟ୍" ହଁ, କଟକ ଜିଲ୍ଲାବୋର୍ଡ ଶାସନକୁ ସରକାର ନିଜ ହାତକୁ ନେଇଛନ୍ତି । ଚେୟାର୍‌ମ୍ୟାନ୍‌ଙ୍କ ସ୍ଥାନରେ ସ୍ପେଶାଲ ଅଫିସର ନିଯୁକ୍ତ ହେଲେ ଜଣେ ପ୍ରଥମ ଶ୍ରେଣୀ ଡେପୁଟୀ ମାଜିଷ୍ଟ୍ରେଟ୍ ରାୟସାହେବ ଯଦୁନାଥ ମହାପାତ୍ର । ଏପରି ଆଶଙ୍କା ଅବଶ୍ୟ କରାଯାଉଥିଲା । କିନ୍ତୁ ପ୍ରଦେଶର ବୃହତ୍ତମ ସ୍ୱାୟତ୍ତଶାସନ ପ୍ରତିଷ୍ଠାନ ଏହି କଟକ ଜିଲ୍ଲାବୋର୍ଡର ପ୍ରାୟ ସତୁରିବର୍ଷର ଗୌରବମୟ ଇତିହାସରେ ଏଭଳି ଏକ ପରିସ୍ଥିତି ଓ ଏପରି ଏକ ଘଟଣା ଏଇ ପ୍ରଥମ ଘଟିଲା । ଚେୟାର୍‌ମ୍ୟାନ୍ ନାହାନ୍ତି, ଟୁର୍‌କୁ ଯାଇଚନ୍ତି । ଆମେ ସବୁ ସ୍ତବ୍ଧ ହୋଇଗଲୁ । କିଛି ସମୟ ପରେ ନବନିଯୁକ୍ତ ସ୍ପେଶାଲ୍ ଅଫିସର ନିଜେ ଆସି ଦାୟିତ୍ୱ ଗ୍ରହଣ କଲେ । ଗୋରା ତକ୍ ତକ୍ ସୁଗଠିତ ଦୀର୍ଘକାୟ ବପୁ । ପ୍ରଥମେ ସରକାରଙ୍କଠୁଁ ଆସିଥିବା ସେ ଚିଠି ଖଣ୍ଡିକ ଦେଖିବାକୁ ଚାହିଁଲେ । ଚିଠି ନେଇ ମୁଁ ତାଙ୍କୁ ଦେଲି । ଚିଠି ଉପରେ ଆଖି ବୁଲେଇ ଆଣିଲେ । କପୋଳ କୁଞ୍ଚିତ ହୋଇଉଠିଲା । କେମିତି ଏକ ଅସ୍ଥିର ଗଳାରେ କହିଲେ—"ଓ ମାଇଁ ଗଡ୍ । ଏ ସବୁ କ'ଣ ହୋଇଛି । ଏଇଟା କ'ଣ ଗୋଟାଏ ଅଫିସ ?" ...ଏଇଠି ରହିଯାଇ ମୋତେ ଚାହିଁ ପଚାରିଲେ—"ଏ ଫାଇଲ୍ ତୁମେ ଡିଲ କରୁଚ ?" କହିଲି, ଆଜ୍ଞା ।...ଲକ୍ଷ୍ୟ କଲି—ସେଇ ଅସ୍ଥିର ଭାବରୁ ନିଜକୁ ସେ ମୁକ୍ତ କରି ପାରୁନାହାନ୍ତି, ସେଇ ଅବସ୍ଥାରେ ମୋତେ

କହିଲେ—ଆଚ୍ଛା, ତୁମେ ଚୁହ, ମୁଁ କଲେକ୍ଟରଙ୍କ ପାଖରୁ ଆସୁଛି ।" ଚଚିଟିକୁ ହାତରେ ଧରି ବାହାରିଗଲେ । ଆମ ଅଫିସ୍‌ରୁ କଲେକ୍ଟରେଟ୍ ମାତ୍ର ଗୋଟିଏ ମିନିଟ୍‌ର ବାଟ । ···ସେଦିନ ସ୍ପେଶାଲ ଅଫିସର୍ କାନୁ ଜିଲ୍ଲାବୋର୍ଡ ଅଫିସ୍‌କୁ ଆଉ ଫେରି ନାହାନ୍ତି ।

## ଚେୟାରମ୍ୟାନ୍ ବନ୍ଦୀ

ତା' ପରଦିନ ସମ୍ବାଦ ମିଳିଲା, ଯାଜପୁରରୋଡ଼ଠାରେ ପୋଲିସ୍ ଶ୍ରୀଯୁକ୍ତ ନୀଳମଣି ପ୍ରଧାନଙ୍କୁ ଗିରଫ କରି କଟକ ଜେଲ୍‌କୁ ପଠାଇ ଦେଇଛି । ଇଏ ଆଉ ନୂଆ କଥା କ'ଣ ? ପୋଲିସ୍—ଗିରଫ—ଜେଲ୍, ଏସବୁ ସହିତ ଆମ ସ୍ୱାଧୀନତା-ସଂଗ୍ରାମୀମାନଙ୍କ ନିତ୍ୟ ରାଜନୈତିକ ରାସଲୀଳା ଲାଗି ରହିଛି । ଦେଶ-ପାଇଁ ଏମାନଙ୍କ ଜେଲ୍‌ଯାତ୍ରା ଓ ଶୁଦ୍ଧ ମନ ଶୁଦ୍ଧ ଶରୀରରେ ଦେବାଳୟକୁ ଯାତ୍ରା ଭିତରେ କିଛି ପାର୍ଥକ୍ୟ ନାହିଁ । ଚେୟାରମ୍ୟାନଙ୍କ ପିଅନ ଆସିଲା । ତା'ଠୁ ବୁଝିଲି, ସେ ସକାଳୁ ଉଠି ନିତ୍ୟକର୍ମ ଶେଷ କରିବା ସଙ୍ଗେ ସଙ୍ଗେ ସେମାନେ ତାଙ୍କୁ ଗିରଫ କରି ନେଇଯାଇଚନ୍ତି । ଗ୍ଲାସେ ଲେମ୍ବୁପାଣି ପିଇବାର ସମୟ ସେ ପାଇ ନାହାଁନ୍ତି । ···ତାଙ୍କ ସହିତ ମୋର ଯେତିକ ବ୍ୟକ୍ତିଗତ ସମ୍ପର୍କ, ସେଥିରୁ ମୁଁ ଜାଣିଚ, ସକାଳେ ନିତ୍ୟକର୍ମ ଶେଷକରି ସେ ଗୋଟିଏ ଗ୍ଲାସ୍ ଲେମ୍ବୁପାଣି ପିଅନ୍ତି । ସବୁଦିନର ଅଭ୍ୟାସ । ସେଦିନ ପିଇପାରିଲେ ନାହିଁ । କ'ଣ କରିଥିବେ ? ସେ କ'ଣ କେବେହେଲେ ଲେମ୍ବୁପାଣି କଥା ପୋଲିସ୍‌କୁ କହିଥିବେ ? ଯଦି କହିଥିବେ, ପୋଲିସ୍ କ'ଣ ତାଙ୍କ କଥା ରଖିଥିବ ? କେଜାଣି !! ମୋ' ଆଖିପତା ଓଦା ହୋଇ ଆସିଲା ।

## ଓଡ଼ିଶାରେ ଫୁଟ୍‌ବଲ ଖେଳ ବ୍ଲୁ, ବଚନ, ଗୋପାଳ ଓ ଦୁଇଟି ଇଂଲିଶ୍ ଟିମ୍

ଦ୍ୱିତୀୟ ମହାଯୁଦ୍ଧ ଚାଲିଚ । ଏଇ ଯୁଦ୍ଧ କେବେ କୋଉଠି କି ପରିସ୍ଥିତିରେ ଶେଷ ହେବ, ତାର ପୂର୍ବାଭାସ ଦେବା ସହଜ ନୁହେଁ କି ସମ୍ଭବ ନୁହେଁ ।···ଏ ଯୁଦ୍ଧରେ କଟକ ସହରର କିଛି କ୍ଷତି ହୋଇନ । ସେକ୍ରେଟେରିଏଟ୍ ସମ୍ବଲପୁର ଯାଇଥିଲା । ଯଥା ସମୟରେ କଟକ ଫେରିଆସିଲା । ସେକ୍ରେଟେରିଏଟ୍ କର୍ମଚାରୀମାନଙ୍କର ଆର୍ଥିକ ଲାଭ ହେଲା । କାରଣ, ସେମାନେ ଭତ୍ତା ଆକାରରେ କିଛି କିଛି ପାଇଲେ । ଯେଉଁ ସହରବାସୀମାନେ କଟକ ଛାଡ଼ି ଚାଲିଯାଇଥିଲେ, ସେମାନେ ପୁଣି ସେମିତି ଫେରି ଆସିଲେ ଏଇ ଲକ୍ଷ୍ମୀ ସହର କଟକକୁ । ପୁଣି

ଏଇ ଯୁଦ୍ଧପାଇଁ ଜନପଦର ଯାହା ଅଭାବ ପଡ଼ିଲା, ସେଥିରେ "କଳାପୋତେଇ" ଓ "କଳାବଜାର" ପ୍ରଭୃତି କେତେକ ପନ୍ଥା ସୃଷ୍ଟି ହୋଇ ବ୍ୟବସାୟ ମହଲର ଶ୍ରୀବୃଦ୍ଧି ଘଟିବାରେ ଲାଗିଲା । ଆଉ ଆମ କଟକସହରବାସୀ ତ ସବୁଦିନେ ଫୁଟ୍‌ବଲଖେଳ ପ୍ରିୟ । କିନ୍ତୁ ଏଇ ଫୁଟ୍‌ବଲ୍ ଖେଳର ସ୍ରଷ୍ଟା ଯେଉଁ ଇଂରେଜ ଜାତି, ସେଇ ଇଂରେଜ ଟିମ୍‌ର କୌଣସି ଫୁଟ୍‌ବଲ ଖେଳ ଆମେ କଟକରେ ଦେଖିନୁ । ବସ୍ତୁତଃ ସେ ସମୟରେ କୌଣସି ବିଦେଶୀ ଫୁଟ୍‌ବଲ ଟିମ୍ ଏଠିକି ପ୍ରାୟ ଆସୁ ନ ଥିଲେ । ଅବଶ୍ୟ ତୃତୀୟ ଦଶକରେ ଗୋଟିଏ ଇଂଲଣ୍ଡ ଫୁଟ୍‌ବଲ ଟିମ୍ କଲିକତା ଆସିଲା । ଏଠି ଆମର ଫୁଟ୍‌ବଲ ଉଦ୍ୟୋକ୍ତାମାନେ ସେ ଟିମ୍‌କୁ କଟକ ଆସି ଗୋଟିଏ ମ୍ୟାଚ୍ କଟକ ଏକାଦଶ ସହିତ ଖେଳିବାର ବ୍ୟବସ୍ଥା କରିବାକୁ କଲିକତା ଗଲେ । କିନ୍ତୁ ସେ ଟିମ୍‌ଟି କଲିକତାରେ ଚାରିପାଞ୍ଚଟି ମ୍ୟାଚ୍ ଖେଳି ସବୁଥିରେ ଜିତି କଟକ ନ ଆସି ଢାକା ଚାଲିଗଲା । ଆମ କଟକର କେତେକ ଖେଳପ୍ରେମୀ ଏଥିରେ ଦୁଃଖ କରି କାନ୍ଦି ସେଇ ଇଂଲଣ୍ଡ ଟିମ୍‌କୁ ଅଭିଶାପ ଦେଲେ ଯେ, ତୁମେ କଲିକତାରେ ଜିତି କଟକ ନ ଆସି ଢାକା ଗଲ, ସେଇଠି ତୁମେ ହାରିଯାଅ । ଆଶ୍ଚର୍ଯ୍ୟର କଥା, ଯୋଉ ଟିମ୍ କଲିକତାର ମୋହନ୍‌ବାଗାନ୍, ଇଷ୍ଟବେଙ୍ଗଲ୍ ମହମଡାନ୍ ସ୍ପୋର୍ଟିଙ୍ଗ୍ ଓ ଓ୍ୱାରି ପ୍ରଭୃତି ଦୁର୍ଦ୍ଧର୍ଷ ଫୁଟ୍‌ବଲ୍‌ଟିମ୍-ମାନଙ୍କୁ ହରାଇଥିଲା, ସେଇ ଟିମ୍ ଢାକାର ଏକ ଅନାମଧେୟ ଫୁଟ୍‌ବଲ୍‌ଟିମ୍ "ବରହମ୍‌ପୁର୍ କ୍ଲବ୍" ଠାରୁ ହାରିମାନେ, ମାନେ ନିଜ ଦେଶକୁ ଫେରିଗଲା । ଏଥିରେ ସେଇ ଶ୍ୱେତାଙ୍ଗ ଟିମ୍‌ର ଖେଳ ଦେଖିପାରିଲୁ ନାହିଁ ବୋଲି ଆମ ମନରେ ଯେଉଁ ଗ୍ଲାନି ଜମିଥିଲା, ତାକୁ ଆମେ ଭୁଲିଗଲୁ । ଖାଲି ଭୁଲିଗଲୁ ନୁହେଁ, ଏଇ କଟକ ସହରରେ କେବଳ ଗୋଟିଏ ନୁହେଁ, ଦୁଇ ଦୁଇଟି ଇଂରେଜ ଫୁଟ୍‌ବଲ୍‌ଟିମ୍‌ର ଖେଳ ଆମେ ମାସ ମାସ ଧରି ଦେଖିବାକୁ ପାଇଲୁ, କେବଳ ଏଇ ଦ୍ୱିତୀୟ ବିଶ୍ୱଯୁଦ୍ଧ ପାଇଁ । ଚାରବାଟିଆରେ ତ ମିତ୍ରଶକ୍ତିମାନଙ୍କର ଏକ ବିରାଟ ସୈନ୍ୟ-ଛାଉଣି ପ୍ରତିଷ୍ଠିତ ହୋଇଥାଏ । ସେ ବର୍ଷ ଯେମିତି କଟକର ଫୁଟ୍‌ବଲ୍-ଲିଗ୍‌ର ସିଜନ୍ ଆରମ୍ଭ ହୋଇଗଲା, ଚାରବାଟିଆରୁ ଦୁଇଟି ଶ୍ୱେତାଙ୍ଗ ଫୁଟ୍‌ବଲ୍‌ଟିମ୍ ଆସି ଏ ଲିଗ୍ ମ୍ୟାଚ୍‌ରେ ଯୋଗଦେଲେ । ଏଥିରେ ଆମ କଟକ ସହରର ଫୁଟ୍‌ବଲ୍‌ପ୍ରେମୀ ଦର୍ଶକମାନଙ୍କ ମନରେ କି ଆନନ୍ଦ—କି ଉତ୍ସାହ ! ସେତେବେଳେ କଟକ ସହରର ଫୁଟ୍‌ବଲ୍ ସିଜନ୍ ପ୍ରତିବର୍ଷ ନିୟମିତ ଭାବେ ମେ—ଜୁନ୍‌ରୁ ଆରମ୍ଭହୋଇ ଦଶହରା ପର୍ଯ୍ୟନ୍ତ ଚାଲୁଥାଏ । ଫୁଟ୍‌ବଲ୍ କର୍ମକର୍ତ୍ତାମାନେ ଅତି ନିଷ୍ଠା ଓ ନିୟମର ସହିତ ଫୁଟବଲ୍ ଖେଳ ସବୁର ପରିଚାଳନା କରୁଥିଲେ । ଏଇ ସିଜନ୍‌ରେ ଦୁଇଟି

ପ୍ରଧାନ ଖେଳ ହେଲା—ଗୋଟିଏ କଟକ ଫୁଟ୍‌ବଲ ଲିଗ୍‌ମ୍ୟାଚ୍ ଓ ଅନ୍ୟଟି ଆର୍ଟ ଓ୍ୱାର୍ ସିଲ୍ଡ଼ ମ୍ୟାଚ୍। ଲିଗ୍‌ମ୍ୟାଚ୍‌ରେ କଟକସହରର କେବଳ କେତେକ ପ୍ରତିଷ୍ଠିତ କ୍ଲବ୍ ଅଂଶ ଗ୍ରହଣ କରିଥା'ନ୍ତି । ଏଇ ସବୁ କ୍ଲବ୍ ହେଲା ଟାଉନ୍ କ୍ଲବ୍, ରେଭର୍ସ କ୍ଲବ୍ ଓ ସନ୍‌ରାଇଜ୍ କ୍ଲବ୍ ପ୍ରଭୃତି । ସେ ବେଳରେ ଲିଗ୍‌ମ୍ୟାଚ୍ ପାଇଁ ବିଭିନ୍ନ ଡିଭିଜନ ନ ଥିଲା । କେବଳ ଗୋଟିଏ ଡିଭିଜନ୍, ଯାହାକୁ ଆମେ 'ଏ' ଡିଭିଜନ୍ କହିପାରୁ । ପରେ ଅବଶ୍ୟ 'ବି' ଡିଭିଜନର ସୃଷ୍ଟି ହେଲା । ସିଲ୍ଡ଼ମ୍ୟାଚ୍ ପାଇଁ ରେଭେନ୍‌ସା କଲେଜ, ମେଡ଼ିକାଲ ସ୍କୁଲ (ପରେ କଲେଜ), ଇଞ୍ଜିନିୟରିଂ ସ୍କୁଲ୍, ବି. ଏନ୍. ଆର୍. ଓ ବାରିପଦା ପ୍ରଭୃତି କଟକ ବାହାରର କେତେକ ଟିମ୍ ଆସୁଥିଲେ । କଟକ ସହରର ଏଇ ସବୁ ଟୁର୍ଣ୍ଣାମେଣ୍ଟ ଅତି ନିଷ୍ଠା ଓ ଶୃଙ୍ଖଳାର ସହିତ ଅନୁଷ୍ଠିତ ହେଉଥିଲା । କଟକ ସହରର ସମସ୍ତ ହାଇସ୍କୁଲର ସହଯୋଗରେ ଯେଉଁ ଫୁଟ୍‌ବଲ୍ ଟୁର୍ଣ୍ଣାମେଣ୍ଟଟି ହେଉଥିଲା, ତାହା ମଧ୍ୟ ଖ୍ୟାତି ଓ ଲୋକପ୍ରିୟତା ଅର୍ଜନ କରିଥିଲା । ହଁ, ଆର୍ଟ ଓ୍ୱାର୍ ସିଲ୍ଡ଼ ଖେଳପାଇଁ ଯେଉଁ ମର୍ଯ୍ୟାଦାସୂଚକ ସିଲ୍ଡ଼ଟି ପ୍ରଦାନ ହୋଇଥିଲା, ସେଇ ସିଲଡ଼କୁ ପ୍ରଦାନ କରିଥିଲେ କଟକର ପୃଥିବୀବିଖ୍ୟାତ ତାରକସି କଳାର ପ୍ରାଣପ୍ରତିଷ୍ଠାତା ଉତ୍କଳଗୌରବ ମଧୁସୂଦନ ଦାସ । ବହୁବର୍ଷ ଧରି ଏ ଆର୍ଟ ଓ୍ୱାର୍ ସିଲ୍ଡ଼ ଖେଳ ପ୍ରଚଳିତ ହେଲାପରେ ହଠାତ୍ ଦେଖାଗଲା, ଏହା କଟକ ସହର ଫୁଟ୍‌ବଲ୍ ପାଞ୍ଜିରୁ ଏକାବେଳେକେ ନିଶ୍ଚିହ୍ନ ହୋଇଯାଇଛି ।

ଊଣେଇଶ' ତିରିଶ୍ ମସିହାରୁ ଷାଠିଏ ମସିହା ପର୍ଯ୍ୟନ୍ତ ମୁଁ ଆମ କଟକ ସହରର କେବଳ ଜଣେ ନିୟମିତ ଫୁଟ୍‌ବଲ ଖେଳର ଦର୍ଶକ ଥିଲି ବୋଲି ନୁହେଁ, ସହରର ଜଣେ ସାଧାରଣ ନାଗରିକ ଭାବରେ ମଧ୍ୟ ଏଥିପାଇଁ ମୋ' ମନପ୍ରାଣରେ ଅତି ଦାରୁଣ ଆଘାତ ଲାଗିଥିଲା । ଆର୍ଟ ଓ୍ୱାର୍ ସିଲ୍ଡ଼ ସ୍ଥାନରେ ଆସିଲା "କଳିଙ୍ଗ ସିଲ୍ଡ଼୍" । କିନ୍ତୁ ଜଳର ବୁଦ୍ ବୁଦ ପରି ଏଇ କ୍ଷଣଜୀବୀ କଳିଙ୍ଗ ସିଲ୍ଡ଼ କୁଆଡ଼େ ହିଡ଼ିଭେଇଯାଇ ପୁଣି ଏବେ ଆସିଛି ।

## ଗୋଲ୍‌କିପର୍ କେ. ଦତ୍ତ

ଗୋଲକିପର ' ଏଇ ଗୋଲ୍‌କିପର୍ କଥାରୁ ମନେ ପଡ଼ିଯାଏ ସେକାଳର କଲିକତା ମୋହନ୍‌ବାଗାନ୍ ଫୁଟ୍‌ବଲ ଟିମ୍ ! ଯେଉଁ ମୋହନ୍ ବାଗାନ୍ ଦେଶ-ବିଦେଶ ସବୁଠି ଖ୍ୟାତି ଅର୍ଜନ କରିଛି—ସେଇ ମୋହନ୍‌ବାଗାନ୍‌ର ଗୋଲ୍‌କିପର୍ କେ. ଦତ୍ତଙ୍କ ଯାଦୁକରୀ କାହାଣୀ ! ସିଏ ତ ଗୋଲ୍‌କିପର ନ

ଥିଲେ, ଥିଲେ ଗୋଟିଏ ରକ୍ । ଏଇ ମୋହନ୍‌ବାଗାନ୍ କ୍ଲବର ଜଣେ ପୂର୍ବସୂରି ବ୍ୟାକ୍ ଗୋଷ୍ଠପାଳଙ୍କୁ ଯେମିତି କୁହାଯାଉଥିଲା—ଗ୍ରେଟ୍ ଗ୍ୱାଇନା ଓ୍ୱାଲ୍, ସେମିତି କେ· ଦତ୍ତଙ୍କୁ କୁହାଯାଏ—ଦି ରକ୍ । କେ· ଦତ୍ତ ଗୋଲ୍‌ପୋଷ୍ଟରେ ଥିଲେ, ତାଙ୍କୁ ଟପି ବଲ୍ ପୋଷ୍ଟ ଭିତରକୁ ପଠାଇବା ଷ୍ଟ୍ରାଇକରଙ୍କ ପକ୍ଷରେ ଏକ ଅସାଧାରଣ କୃତିତ୍ୱ ବୋଲି କୁହାଯାଉଥିଲା । ···ଆମ କଟକ ସହରରେ ଫୁଟ୍‌ବଲ୍-ଖେଳର ଏକ ନିଖୁଣ ପରମ୍ପରା ରହିଆସିଛି । ସେଇ ଦୃଷ୍ଟିରୁ ଆମ ପଡ଼ୋଶୀ କଲିକତା ସହରର ଫୁଟ୍‌ବଲ ଖେଳ ଇତିହାସ ସହିତ ଆମେ ନିବିଡ଼ଭାବେ ସମ୍ପୃକ୍ତ । ଆଉ ମୋହନ୍‌ବାଗାନ୍ ! ମୋହନ୍‌ବାଗାନ୍ ଦଳର ଆମ କଟକ ସହିତ ଅତି ମଧୁର ସମ୍ପର୍କ ଥିଲା । ପ୍ରାୟ ପ୍ରତିବର୍ଷ ମୋହନ୍‌ବାଗାନ ଟିମ୍ କଟକକୁ ପ୍ରଦର୍ଶନୀ ମ୍ୟାଚ୍ ଖେଳିବା ପାଇଁ ଆସନ୍ତି । ଏଇ ସୂତ୍ରରୁ କଟକ ଖେଳ-ପ୍ରେମୀମାନେ ମୋହନ୍‌ବାଗାନ୍ ଦଳର କେ ଦତ୍ତ, ମାନ୍ନା, ଚୂନୀ ଗୋସ୍ୱାମୀ, ମେଓ୍ୱାଲର୍ ଜର୍ଣ୍ଣେଲ୍ ସିଂ, ସତ୍ତାର, ଗୌତମ ଓ ହବିବ୍ ପ୍ରଭୃତି ଉଜ୍ଜ୍ୱଳ ତାରକା-ମାନଙ୍କର କ୍ରୀଡ଼ା ପ୍ରଦର୍ଶନ ଦେଖିପାରୁଥିଲେ । ଗୋଲ୍‌କିପର୍ ଭାବେ କେ· ଦତ୍ତ ଥିଲେ ଏକ ଯାଦୁକର । କଲିକତା ମୈଦାନ୍‌ରେ ଏକ ଶ୍ୱେତାଙ୍ଗ ଫୁଟ୍‌ବଲ୍‌ଦଳର କ୍ୟାପ୍‌ଟେନ କେ· ଦତ୍ତଙ୍କ ଗୋଲ୍‌ରକ୍ଷାର କୌଶଳ ଦେଖି କହିଥିଲେ—ଏ ଭଦ୍ରଲୋକ ହେଉଛନ୍ତି ହିମାଳୟାନ୍ ରକ୍—ଯାଙ୍କୁ ଟପି ଗୋଲପୋଷ୍ଟ ଭିତରକୁ ବଲ୍ ଯିବା କିଛି ସହଜ କଥା ନୁହେଁ । ଏହା ଅବଶ୍ୟ ଏକ ନିର୍ଭୁଲ ସତ୍ୟବଚନ । କିନ୍ତୁ କଟକରେ ଥରେ ମୋହନବାଗାନ୍ ସହିତ କଟକ ଏକାଦଶର ଏକ ଫୁଟ୍‌ବଲ ଖେଳରେ କଟକର ବୁଲୁଙ୍କ ସାମର୍ଥ୍ୟକୁ କେ, ଦତ୍ତ ମୁକ୍ତକଣ୍ଠରେ ସ୍ୱୀକାର କରି ତାଙ୍କୁ ଅଭିନନ୍ଦନ ଜଣାଇଥିଲେ । ଘଟଣାଟି ଏହିପରି ଘଟିଥିଲା : ସେଥର ମୋହନବାଗାନ୍ ଓ କଟକ ଏକାଦଶଙ୍କ ମଧ୍ୟରେ ପ୍ରଦର୍ଶନୀ ଖେଳ ଟାଉନ୍‌କ୍ଲବ ପଡ଼ିଆରେ ଚାଲିଥାଏ । ବୁଲୁ କଟକ ଟିମ୍‌ର ରାଇଟ୍‌ଇନ୍ ସ୍ଥାନରେ ଖେଳୁଥା'ନ୍ତି । ଦଳର ହାଫ୍ ବ୍ୟାକ୍ ବଲ୍‌କୁ ଟିକେ ଉଠାଇ ବୁଲୁଙ୍କୁ ଏକ ଫସ୍-ପାସ୍ ଯୋଗାଇଦେଲେ । ସେତେବେଳେ ଅର୍ଥାତ୍ ଏ ଶତାବ୍ଦୀର ଚତୁର୍ଥ/ପଞ୍ଚମ ଦଶକରେ ଫର୍‌ଓ୍ୱାର୍ଡ଼ ଲାଇନ୍‌ର ପଛକୁ ତିନିଜଣ ହାଫ୍‌ବ୍ୟାକ୍ ରହୁଥିଲେ । ବଲ୍ ସେତେବେଳେ ବିପକ୍ଷ ଦଳର ପେନାଲ୍‌ଟି ଏରିଆ ବାହାରେ । ସମ୍ମୁଖରେ ମୋହନ୍‌ବାଗାନ୍ ଦଳର କିମ୍ବଦନ୍ତୀ ମର୍ଯ୍ୟାଦା ଲାଭ କରିଥିବା ବ୍ୟାକ୍ ଶୈଲେନ୍‌ମାନ୍ନା ଓ ତାଙ୍କଠୁ ପ୍ରାୟ ଚାରି/ପାଞ୍ଚଫୁଟ ସମାନ୍ତରାଳ ଦୂରତ୍ୱ ରକ୍ଷା କରି ଅଛନ୍ତି ଟିମ୍‌ର ଦ୍ୱିତୀୟ ବ୍ୟାକ୍ । ପଛରେ ଯଥାସ୍ଥାନରେ ଅଛନ୍ତି ମୋହନ୍‌ବାଗାନ୍ ଦଳର ଚିର ଜାଗ୍ରତ ଗୋଲକିପର୍ କେ· ଦତ୍ତ । ହାଫ୍‌ବ୍ୟାକ୍ ଦେଇଥିବା ଫସ୍‌ପାସ୍

ବଲ୍‌ଟି ବୁଲୁଙ୍କ ସାମ୍‌ନାରେ ଆସି ପଡ଼ି ଡ୍ରପ୍ ଖାଇଲା—ଡ୍ରପ୍ ଖାଇଲା ଠିକ୍ ବୁଲୁଙ୍କ ଡାହାଣ ପାଦ ସମ୍ମୁଖରେ । ଆଉ ଏହାର ଆଖି ପିଛୁଳାକେ ଯାହା ଘଟିଗଲା, ତାହା ଯେମିତି ସମସ୍ତଙ୍କର ଅବଧାରଣାର ବାହାରେ । ବଲ୍ ଆସି ବୁଲୁର ପାଦ ପାଖରେ ଡ୍ରପ୍ ଖାଇବାର ସ୍ପ୍ଲିଟ୍ ସେକେଣ୍ଡରେ ବୁଲୁ ହାପ୍ ଭଲି ଢଙ୍ଗରେ ବଲ୍‌କୁ ମାରି ବିଜୁଳି ଗତିରେ ଗୋଲ୍ ଭିତରକୁ ପଠାଇଦେଲେ । ଅଗଣିତ ଦର୍ଶକ ଶୁଣିଲେ ରେଫରିଙ୍କ ହୁଇସିଲ୍—ସେମାନେ ଦେଖିଲେ—କ୍ରୀଡ଼ାଙ୍ଗନରେ ବୁଲୁ ଅଣ୍ଟା ଦୁଇ ପାଖରେ ଦୁଇପାପୁଲି ରଖି ସଗର୍ବରେ ଠିଆ ହୋଇଚନ୍ତି । ବ୍ୟାକ୍ ଶୈଲେନ୍ ମାନ୍ନା ଓ ଗୋଲ୍ କିପର୍ କେ. ଦତ୍ତ ଜାଗ୍ରତ ପ୍ରହରୀ ଭଳି ଯଥା ସ୍ଥାନରେ ଉପସ୍ଥିତ । କିନ୍ତୁ ବୁଲୁଙ୍କ ତୀବ୍ର ସଟ୍‌କୁ ରୋକିବାର ସାମାନ୍ୟତମ ଅବସର ସେମାନେ ପାଇପାରିଲେ ନାହିଁ । ····ଏଇ ଘଟଣାର ବେଶ୍ କିଛି ଦିନ ପରେ କଲିକତାର 'ଏ' ଡିଭିଜନ୍ ଟିମ୍, ରାଜସ୍ଥାନ ଏକ ପ୍ରଦର୍ଶନୀ ମ୍ୟାଚ୍ ଖେଳିବା ପାଇଁ କଟକ ଆସିଲେ । ସେତେବେଳେ କେ. ଦତ୍ତ ମୋହନ୍‌ବାଗାନ୍ ଦଳ ଛାଡ଼ି ରାଜସ୍ଥାନରେ ଯୋଗ ଦେଲେଣି । ଅତୀତରେ ସେ ମୋହନ୍‌ବାଗାନ୍ ଦଳରେ ଥିଲାବେଳେ ବୁଲୁ କିପରି ଏଇ କଟକରେ ଉପରୋକ୍ତ ବଲ୍‌ଟି ସ୍କୋର୍ କରିଥିଲେ, ସେ କଥା ସ୍ମରଣ କରାଇ କହିଥିଲେ—ବୁଲୁ ଯଦି ଡାହାଣ ପାଦରେ ହାପ୍‌ଭଲି ସଟ୍ ମାରିବାର ସୁଯୋଗ ପାଇବେ, ତେବେ ସେ ବଲ୍, ବଲ୍ ନ ହୋଇ ବୁଲେଟ୍ ଗତିରେ ନେଟ୍ ଭିତରକୁ ଚାଲିଯିବ ।

**ବୁଲୁ ଓ ବିଚନଙ୍କ ବିଦେଶ ଯାତ୍ରା**

**ସନ୍ତୋଷଟ୍ରଫି**

ଭାରତୀୟ କ୍ରୀଡ଼ା ମାନଚିତ୍ରରେ ଓଡ଼ିଶାର ଫୁଟ୍‌ବଲ ଖେଳ ଓ କିଛି ମାତ୍ରାରେ ହେଲେ ବି ଉଲ୍ଲେଖନୀୟ ସ୍ଥାନ ଲାଭ କରିଚି । ଥରେ ଭାରତର ଏକ ଫୁଟ୍‌ବଲ୍ ଟିମ୍ କାବୁଲ ଯାତ୍ରା କରିଥିଲେ । ସେଠି ଗୋଟିଏ ଖେଳରେ ଆମ ଓଡ଼ିଶାର ବୁଲୁ ଗୋଟିଏ ଗୋଲ୍ ସ୍କୋର କରି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରି ପାରିଥିଲେ । ଓଡ଼ିଶାର ବିଚନ ମଧ୍ୟ ଥରେ ପ୍ରିଅଲମ୍ପିକ୍ ରାଉଣ୍ଡ ଖେଳ ପାଇଁ ଭାରତୀୟ ଫୁଟ୍‌ବଲ ଦଳରେ ପ୍ୟାରିସ୍ ଯାଇଥିଲେ । ସେଠି ଏକ ଖେଳରେ ସେ ଗୋଲ୍ ମଧ୍ୟ ସ୍କୋର କରିଥିଲେ । ଭାରତୀୟ ଫୁଟ୍‌ବଲ୍ ପାଇଁ "ସନ୍ତୋଷଟ୍ରଫି" ହେଉଚି ଏକ ଉଚ୍ଚ ମର୍ଯ୍ୟାଦାସମ୍ପନ୍ନ ପୁରସ୍କାର ତଥା ସମ୍ମାନ । ଓଡ଼ିଶା ଏଇ ପ୍ରତିଯୋଗିତାରେ କେବେ ବିଜୟୀ ହେବାର ଗୌରବ ଲାଭ କରିନାହିଁ ସତ, କିନ୍ତୁ

ଏକାଧିକ ବାର ସେମିଫାଇନାଲ ପର୍ଯ୍ୟାୟକୁ ଉତ୍ତୀର୍ଣ୍ଣ ହୋଇଛି । ଥରେ ତ ସର୍ବଭାରତୀୟ ସ୍ତରରେ ଓଡ଼ିଶା ତୃତୀୟ ସ୍ଥାନ ଅଧିକାର କରିଥିଲା ।...ସେଥର ଉଣେଇଶିଶହ ପଚାଶ ସନ୍ତୋଷଟ୍ରଫି ପ୍ରତିଯୋଗିତା କଲିକତାରେ ଅନୁଷ୍ଠିତ ହେଉଥାଏ । କ୍ୱାର୍ଟର ଫାଇନାଲ୍‌ରେ ଓଡ଼ିଶା ମହୀଶୂରକୁ ଭେଟିବ । ସେତେବେଳେ ମହୀଶୂରର ଏକ ପ୍ରଥମ ଶ୍ରେଣୀ ଫୁଟ୍‌ବଲ୍ ଟିମ୍ ରୂପେ ଖ୍ୟାତି ଥିଲା । ଖେଳ ଆରମ୍ଭ ହେଲା । (ମୁଁ ଏହି ଖେଳଟି ଦେଖିବା ପାଇଁ ସେଦିନ କ୍ରୀଡ଼ାଙ୍ଗନରେ ଉପସ୍ଥିତ ଥିଲି) ମନେ ପଡ଼ୁଛି, ଓଡ଼ିଶା ଟିମ୍‌ରେ ବଚନ, ବୁଲୁ, ପୁରୀର ଯୁବରାଜ ସାହେବ ବୀରକିଶୋର ଓ ଜଗାରାଓ ପ୍ରଭୃତି ଖେଳୁଥିଲେ । ପ୍ରଥମାର୍ଦ୍ଧରେ ଓଡ଼ିଶା ଦୁଇ ଗୋଲ୍‌ରେ ଅଗ୍ରଣୀ ରହିଥାଏ । ମଧ୍ୟାନ୍ତର ପରେ ମହୀଶୂର, ଯାହା କୁହନ୍ତି, ସିଂହ ବିକ୍ରମରେ ଆକ୍ରମଣ ଆରମ୍ଭ କରିଦେଲା ଓ ଗୋଲ୍ ଦୁଇଟି ଶୁଝାଇ ଦେଲା । ଏହା ପରେ ଓଡ଼ିଶା ଟିମ୍ ସଚେତ ହୋଇ ଉଠିଲେ ଓ କିଛି ସମୟ ଧରି ଉତ୍କୃଷ୍ଟ କ୍ରୀଡ଼ା ପ୍ରଦର୍ଶନ କଲେ । ଏତିକିବେଳେ ଓଡ଼ିଶା ଦଳର ବାମପଟରୁ ଏକ କ୍ରସ୍ ପାସ୍ ମହୀଶୂର ଗୋଲ୍ ଏରିଆ ଭିତରକୁ ଆସିଲା । ସମ୍ମୁଖରେ ଅଛନ୍ତି ବଚନ୍‌ଜୀ । ବଲ୍‌ଟି କିନ୍ତୁ ଭୂମି ସ୍ପର୍ଶ କରି କରି ନ ଆସି କିମ୍ବା ଉଚ୍ଚରେ ନ ଆସି ଭୂମି ଉପରୁ ମାତ୍ର ଦେଢ଼ କି ଦୁଇଫୁଟ ଉଚ୍ଚରେ ଆସିଲା । ବଚନ ଏବେ କରିବେ କ'ଣ ? ଭୂମିରେ ଆସିଥିଲେ ଗୋଡ଼ରେ ସ୍କୋର କରିଥା'ନ୍ତେ, ଉଚ୍ଚରେ ଆସିଥିଲେ ମଥାରେ ହେଡ୍ କରିଥା'ନ୍ତେ । କିନ୍ତୁ ବଲ୍‌ଟି ଏତେ ନୀଚରେ ଆସୁଛି, ନା ପାଦ ନା ହେଡ୍ କିଛି କାମ ଦେବନି । ଆଖିପିଛୁଳାକେ ଉପସ୍ଥିତ ବୁଦ୍ଧି ଖର୍ଚ୍ଚ କରି ବଚନ ହାତ ଭରା ଦେଇ ଭୂମିରେ ଆଣ୍ଠେଇ ପଡ଼ିଲେ ଓ ସେହି ଅବସ୍ଥାରେ ବଲ୍‌ଟିକୁ ହେଡ୍ କରି ଗୋଲ୍ ଭିତରକୁ ପଠାଇଥିଲେ । ସେଦିନ ଓଡ଼ିଶା ମହୀଶୂର ବିପକ୍ଷରେ ୩—୨ ଗୋଲରେ ବିଜୟୀ ହେଲା । ହଜାର ହଜାର ଓଡ଼ିଆ ଦର୍ଶକ ପଡ଼ିଆ ଭିତରକୁ ପଶିଆସି ସମ୍ବର୍ଦ୍ଧନା ଜଣାଇଲେ ।...ଗୋଲ୍ ସ୍କୋର କରିବାରେ ବଚନଙ୍କର ଏକ କଳାପୂର୍ଣ୍ଣ ଦକ୍ଷତା ଥିଲା । ସେ ଗୋଲ୍ ପୋଷ୍ଟକୁ ବଲ୍ ମାରିଲା ବେଳେ ବେଳେ ବଲ୍‌ର ଗତି ନିରୀକ୍ଷଣ କରି ବହୁ ସମୟରେ ଗୋଲ୍‌ରକ୍ଷକ-ମାନେ ଭ୍ରମରେ ପଡ଼ିଯା'ନ୍ତି । ତାଙ୍କର ଆଉ ଏକ ନୈପୁଣ୍ୟ ହେଲା ଗୋଲ୍ ପାଇଁ ଉଦ୍ଦିଷ୍ଟ ତାଙ୍କର ବଲ୍ ପ୍ରାୟତଃ ଦୁଇ ଗୋଲପୋଷ୍ଟ ବାହାରେ ଯାଏ ନାହିଁ । ଗୋଲ୍ ଭିତରକୁ ଯାଏ—ହୁଏ ତ ଗୋଲ୍ ହୁଏ, ନାହିଁ ତ ଗୋଲ୍‌କିପର୍ ହାତକୁ ଯାଏ । ଏପରିକି ଖୁବ୍ କମ୍ କ୍ଷେତ୍ରରେ କ୍ରସ୍‌ବାର୍ ଉପରେ ତାଙ୍କ ବଲ୍ ଯାଇ ଆଉଟ୍ ହୁଏ ।

## ଫୁଟ୍‌ବଲ୍ ଓ ଫେଲୁବାବୁ, ବଚନ, ବୁଲୁ ଓ ଗୋଳ

ଯେଉଁ ସମୟର କଥା ଏଠି ଉଲ୍ଲେଖ କରାଯାଉଚ, (ବିଗତ ଚତୁର୍ଥ ଓ ପଞ୍ଚମ ଦଶକ) ସେତେବେଳେ ଓଡ଼ିଶା ଫୁଟ୍‌ବଲ୍ ଜଗତରେ ଜଣେ ଯୁଗପୁରୁଷ ଥିଲେ ଶ୍ରୀ ନନ୍ଦନନ୍ଦନ ମହାପାତ୍ର—ତାଙ୍କ ନାମ ଫେଲୁ। କଲିକତାର ଏରିଆନ୍ ଫୁଟ୍‌ବଲ୍ କ୍ଲବ ଥରେ କଟକ ଆସିଥିଲେ। ଏରିଆନ୍‌ର ରାଇଟ୍ ଆଉଟ୍, ତାଙ୍କର ଦୁଇ ପାଦର ଧାର ସାହାଯ୍ୟରେ ବଲ୍‌କୁ ଡ୍ରିବ୍ଲିଂ କରି ମିଡ୍ ଫିଲ୍ଡରୁ ବିପକ୍ଷ ଦଳର ଗୋଲ୍ ଏରିଆ ପର୍ଯ୍ୟନ୍ତ ନିରାପଦରେ ନେଇଯାଉଥିଲେ । ତାଙ୍କର ଏଇ ଗୁଣ ପାଇଁ ତାଙ୍କର ଶ୍ରଦ୍ଧାନାମ ଥିଲା "ମିକି ମାଉସ୍" । ଆମ ଫେଲୁବାବୁ ସେମିତି ବଲ୍ ଡ୍ରିବ୍ଲିଂରେ ସିଦ୍ଧିଲାଭ କରିଥିଲେ। ସେ ଡ୍ରିବ୍ଲିଂ କରି ସାରା ଫୁଟ୍‌ବଲ୍ ପଡ଼ିଆ ଘୂରୁଥିବେ। ତାଙ୍କଠାରୁ ବଲ୍ ଛଡ଼େଇବା ପାଇଁ ବିପକ୍ଷଦଳର ଖେଳାଳି ତାଙ୍କ ପଛେ ପଛେ ଧାଉଁଥିବେ ସିନା, ସାଫଲ୍ୟ ଲାଭ କରିବା ସହଜ ହୁଏ ନାହିଁ। ପୂର୍ବରୁ ତ କହିଚ, ଆମ କଟକ ସହର ହେଉଚ ଏକ ଫୁଟ୍‌ବଲ୍-ପ୍ରେମୀ ସହର! ନା, ପ୍ରେମୀ କହିଲେ ବୋଧହୁଏ ଠିକ୍ ହେଉ ନାହିଁ, ସେଥିପାଇଁ ସଂଶୋଧନ କରି କହୁଚି ଫୁଟ୍‌ବଲ୍-ଧର୍ମୀ ସହର। ବହୁ ବିଦଗ୍ଧ ଦର୍ଶକ ଓ ସେଇପରି ବହୁ ଦକ୍ଷ ଫୁଟ୍‌ବଲ୍‌ଖେଳାଳିଙ୍କର ଫୁଟ୍‌ବଲ୍ ପଡ଼ିଆରେ ଆତଯାତ ଲାଗି ରହିଥାଏ। ଫେଲୁବାବୁ ଓ ତାଙ୍କ ସମଧର୍ମୀଙ୍କ ଯୁଗ କ୍ରମେ ମଉଳିଆସିଲା । ସେମାନଙ୍କ ସ୍ଥାନ ପୂରଣ କଲେ ଅନ୍ୟ ନୂତନ ପ୍ରତିଭାମାନଙ୍କ ସହିତ ବୁଲୁ, ବଚନ ଓ ଗୋପାଳ । ବୁଲୁ ତ କଟକରେ ଚାକିରି କରିଥା'ନ୍ତି। କଟକ ଛାଡ଼ି ଅନ୍ୟ କୁଆଡ଼େ ଯାଇ-ପାରିବେ ନାହିଁ । କଲେଜରେ ପଢୁଥିବା ଅବସ୍ଥାରେ ବଚନ କଲିକତାର ସୁବିଖ୍ୟାତ ମହମଡାନ ସ୍ପୋର୍ଟିଂ ଦଳରେ ଯୋଗ ଦେଲେ ଓ ଗୋପାଳ କଲିକତାର କଷ୍ଟମସ ଫୁଟ୍‌ବଲ୍ ଟିମ୍‌ରେ ଯୋଗଦେଲେ। ଦୁହେଁ ସୁନାମ ଅର୍ଜନ କଲେ। ବିଶେଷତଃ ବଚନଙ୍କର ଗୋଲ୍‌ସ୍କୋର୍ କରିବାର ବିଚକ୍ଷଣ କୌଶଳ ଦେଖି କଲିକତାର ଅତି ପ୍ରଭାବଶାଳୀ ଫୁଟ୍‌ବଲ୍ ଟିମ୍ ସବୁ ଆତଙ୍କିତ ହୋଇ ଉଠିଲେ। ସମସ୍ତଙ୍କ ମୁହଁରେ ସେଇ ଗୋଟିଏ କଥା—ଏ ପିଲା ଗୋଲ୍‌ସ୍କୋର କରିବାର ଜନ୍ମଗତ ପ୍ରତିଭା ଆଣି ଆସିଛି···ସେଦିନ କଲିକତା ମଇଦାନରେ ଫୁଟ୍‌ବଲ୍ ଜଗତର ଅନ୍ୟତମ ଲିଜେଣ୍ଡ ଇଷ୍ଟବେଙ୍ଗଲ ଦଳ ସହିତ ମହମଡାନ୍ ସ୍ପୋର୍ଟିଂର ଖେଳ ଚାଲିଥାଏ। ସ୍ପୋର୍ଟିଂ ଫର୍‌ଓ୍ୱାର୍ଡ୍‌ରେ ଖେଳୁଥା'ନ୍ତି ବଚନ—ଇଷ୍ଟବେଙ୍ଗଲର ଫୁଲ୍‌ବ୍ୟାକ୍ ସେମିତି ଲିଜେଣ୍ଡାର ତାଜ୍ ମହମ୍ମଦ । ବଚନଙ୍କ ଆକ୍ରମଣରେ ଇଷ୍ଟବେଙ୍ଗଲର ରକ୍ଷଣ ଭାଗ ବିବ୍ରତ ହୋଇ ପଡ଼ିଲା ପରି ଜଣାଯାଉ

ଆଏ । ଏଥିକବେଳେ ବଚନଙ୍କ ସହିତ ତାଜ୍ ମହମ୍ମଦଙ୍କର ସଂଘର୍ଷ ବା ଧକ୍କା ହେଲା । ଦୁହେଁ ତଳେ ପଡ଼ିଗଲେ । ଯେହେତୁ ରେଫରିଙ୍କ ହୁଇସିଲ୍ ବାଜିଲା ନାହିଁ, ଜଣାଗଲା ବା ବୁଝାଗଲା କାହାରି ଫାଉଲ୍ ହୋଇ ନାହିଁ । ତାଜ୍ ମହମ୍ମଦ ଉଠି ଠିଆ ହେଲେ, କିନ୍ତୁ ବଚନ ? ନା, ସେ ଉଠିପାରୁ ନାହାନ୍ତି । ଉଠିବାକୁ ଚେଷ୍ଟା କରୁଚନ୍ତି, ପାରୁ ନାହାଁନ୍ତି । ମୁହଁରେ ଯନ୍ତ୍ରଣାର ଦୁଃଖଦ ଚିହ୍ନ ସୁସ୍ପଷ୍ଟ । ଅନ୍ୟମାନେ ସାହାଯ୍ୟ ଦେବାକୁ ଧାଇଁ ଆସିଲେ । କିନ୍ତୁ ତାଙ୍କୁ ଧରି ପଡ଼ିଆ ବାହାରକୁ ଆଣିବା ସମ୍ଭବ ହେଲା ନାହିଁ । ଷ୍ଟ୍ରେଚର୍‌ରେ କ୍ଲବ୍ ଟେଣ୍ଟ୍‌କୁ ଆସିଲେ । ତା'ପରେ ସେଇଠୁ ହସ୍‌ପିଟାଲ । ଜଣାଗଲା ତାଙ୍କ ଗୋଡ଼ର ହାଡ଼ ଗମ୍ଭୀରଭାବେ ଫ୍ରାକ୍‌ଚର ହୋଇଚି । ଯଥା ସମୟରେ ସୁସ୍ଥ ହୋଇ କଟକ ଫେରିଲେ । ଫୁଟ୍‌ବଲ୍ ଖେଳିଲେ—କିନ୍ତୁ ତାଙ୍କର ଯେଉ଼ ଫୁଟ୍‌ବଲ୍ ଖେଳ ଦେଖି କଲିକତାର ମହମ୍ମଡିଆନ୍ ସ୍ପୋର୍ଟିଙ୍ଗ ତାଙ୍କ ଟିମ୍‌ରେ ଖେଳିବା ପାଇଁ ତାଙ୍କୁ କଲିକତା ନେଇଯାଇଥିଲେ, ସେଇ ଖେଳ ପ୍ରଦର୍ଶନ କରିବା ପାଇଁ ତାଙ୍କର ସେ ସୁନାଗୋଡ଼ ଆଉ ନାହିଁ, ଯେଉଁ ସୁନାଗୋଡ଼ରେ ଖେଳି ସେ କଲିକତାର ମୈଦାନରେ ଝଡ଼ ବହେଇ ଦେଉଥିଲେ, ସେ ଗୋଡ଼ ଆଜି ଅଚଳ ହୋଇଯାଇଚି କହିଲେ ଚଳେ । ବଚନ କଟକ ଆସିଲେ, କଟକରେ ଅବଶ୍ୟ ଫୁଟବଲ୍ ଖେଳିଲେ । କିନ୍ତୁ ଯେଉଁ ଗୋଡ଼ରେ ଫ୍ରାକ୍‌ଚର ହୋଇଥିଲା ସେଇ ଯାଦୁକରୀ ଗୋଡ଼ର ସାମର୍ଥ୍ୟ ଆଉ ରହିଲା ନାହିଁ । ସେ ଥରଟିଏ ମାତ୍ର ଭାରତ ବାହାରକୁ ଖେଳିବାକୁ ଯାଇଚନ୍ତି । ଆଶା କରାଯାଉଥିଲା କଟକ ସହରର ଏଇ ତରୁଣ ଫୁଟବଲ କ୍ରୀଡ଼ାବିତ୍ଟି ଅଚିରେ ଆନ୍ତର୍ଜାତିକ ସ୍ତରରେ ପ୍ରସିଦ୍ଧି ଲାଭ କରିବେ । କିନ୍ତୁ ତାଜ୍ ମହମ୍ମଦଙ୍କ ଧକ୍କା ଫଳରେ ଏ ଆଶାର ଅତି ଦୁଃଖଦାୟକ ପରିଣତି ଘଟିଲା । ବିନା ଫାଉଲ୍‌ରେ ତାଜ ମହମ୍ମଦଙ୍କ ସହିତ ଧକ୍କାରେ କିପରି ବଚନଙ୍କ ଗୋଡ଼ ଭାଙ୍ଗିଲା, ଏ ରହସ୍ୟ ଉଦ୍‌ଘାଟିତ ହୋଇପାରିଲା ନାହିଁ । ତେବେ ଏ କଥାଟି ଶ୍ରୁତିଗୋଚର ହେଉଥିଲା ଯେ, ଇଷ୍ଟବେଙ୍ଗଲର ଶକ୍ତିଶାଳୀ ଓ ଅଭିଜ୍ଞ ବ୍ୟାକ୍ ଏପରି କୌଶଳ ପ୍ରୟୋଗ କରି ବଚନର ଗୋଡ଼ଟିକୁ ଭାଙ୍ଗି-ଦେଇଥିଲେ, ସେ କଥା ରେଫରି ବା ଅନ୍ୟ କେହି ହୃଦୟଙ୍ଗମ କରିପାରି ନ ଥିଲେ । ବଚନ୍ ଆଉ କଲିକତା ଫେରିଲେ ନାହିଁ । ....ଆଜି ସେ ଆଉ ଇହଧାମରେ ନାହାଁନ୍ତି—ଅଳ୍ପ ବୟସରେ ତାଙ୍କର ଦେହାନ୍ତ ହୋଇଯାଇଚି । ସେ ଆମର ଚିର ନମସ୍ୟ । ....ବଚନ୍‌ଙ୍କ ସତୀର୍ଥ ଗୋପାଳ କଲିକତା କଷ୍ଟମସ୍ ଫୁଟବଲ ଟିମ୍‌ରେ ନ ଖେଳି କଷ୍ଟମସ୍ ହକି ଟିମ୍‌ରେ ଯୋଗଦେଲେ ଓ କଷ୍ଟମସ୍‌ରେ ଚାକିରି କରି ରହିଲେ ।

## ୧୯୫୦ ଭାରତୀୟ ଅଲମ୍ପିକ୍ ଓ ଡିକାଥଲନ୍‌ରେ ଓଡ଼ିଶାର ନନ୍ଦକୃଷ୍ଣ ଦାସ

ଶ୍ରୀ ନନ୍ଦକୃଷ୍ଣ ଦାସ ! ଓଡ଼ିଶା କ୍ରୀଡ଼ା ଜଗତର ବିଶେଷତଃ ଆଥ୍‌ଲେଟିକ୍ ବିଭାଗରେ ଏକ ଚିରସ୍ମର କିମ୍ବଦନ୍ତୀ । ସୁନ୍ଦର ସୁଗଠିତ ଶରୀର । ନନ୍ଦକୃଷ୍ଣ ତାଙ୍କ ସ୍କୁଲ ଓ କଲେଜ ଜୀବନରେ ଏକ ଆଥ୍‌ଲେଟ ଭାବେ ଅସଂଖ୍ୟ ଅସୁମାରି ପୁରସ୍କାର ଲାଭ କରିଛନ୍ତି । କଲେଜ ଜୀବନ ପରେ ତାଙ୍କର ଆଥ୍‌ଲେଟିକ୍ କୃତିତ୍ୱ ଆହୁରି ପ୍ରସାରିତ ହେଲା । ଏକଶହ ଓ ଦୁଇଶହ ମିଟର ଦୌଡ଼ ହର୍ଡ଼ଲସ, ହାଇଜମ୍ପ୍ ଓ ଲଙ୍ଗଜମ୍ପ ପ୍ରଭୃତିରେ ସେ କ୍ରମାଗତ ତାଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ କରି ଆସୁଥିଲେ, କିନ୍ତୁ ସେ ପର୍ଯ୍ୟନ୍ତ ସେ ବେଳର ଇଣ୍ଡିଆନ୍ ଅଲମ୍ପିକସ୍ ଗେମ୍‌ରେ (ବର୍ତ୍ତମାନର ନ୍ୟାସନାଲ ଗେମ୍‌ସ) କୌଣସି ପଦକଲାଭ ତାଙ୍କଠାରୁ ଦୂରେଇ ଦୂରେଇ ରହୁଥିଲା । ଉଣେଇଶିଶହ ପଚାଶ ମସିହାରେ ଯେତେବେଳେ ବମ୍ବେଠାରେ ଚତୁର୍ଦ୍ଦଶ ଭାରତୀୟ ଅଲମ୍ପିକ୍ ଗେମ୍‌ସ ଅନୁଷ୍ଠିତ ହେଲା, ସେତେ-ବେଳେ ଓଡ଼ିଶା କ୍ରୀଡ଼ା ଅନୁଷ୍ଠାନର ତୁଙ୍ଗ କର୍ମକର୍ତ୍ତାଗଣ—ସ୍ୱର୍ଗତ ଭୈରବ ମହାନ୍ତି ଓ ଜେ. ଏଫ୍. ହାଇଡ୍ ତଥା ଶୈଲେନ ରାୟ ପ୍ରଭୃତିଙ୍କ ଦୃଷ୍ଟି ନନ୍ଦକୃଷ୍ଣଙ୍କ ଉପରେ ପଡ଼ିଲା । ଯଥାରୀତି ବିସ୍ତୃତ ଆଲୋଚନା ପରେ ସେମାନେ ସ୍ଥିର କଲେ ଯେ, ବମ୍ବେ ପ୍ରତିଯୋଗିତାରେ ଓଡ଼ିଶାର ନନ୍ଦକୃଷ୍ଣ ଦାସ ଡିକାଥଲନ ଇଭେଣ୍ଟରେ ଯୋଗଦେବେ । ଡିକାଥଲନ !! କିଛି କମ୍ କଥା ନୁହେଁ । ଏଥିରେ ଦଶଟି ଇଭେଣ୍ଟରେ ପ୍ରତିଯୋଗିତା କରିବାକୁ ପଡ଼େ । ଏଇଥିରୁ ଜଣାପଡ଼େ ଯେ, ଡେକାଥଲନ୍ ହେଉଛି ଜଣେ କ୍ରୀଡ଼ାବିତ୍‌ର "ଏ ଷ୍ଟାର୍ଣ୍ଣ ଟେଷ୍ଟ ଫର୍ ସ୍ପିଡ୍, ଷ୍ଟ୍ରେଙ୍ଗଥ୍ ଆଣ୍ଡ ଷ୍ଟାମିନା" ଅର୍ଥାତ୍ କ୍ରୀଡ଼ାବିତ୍‌ର ଗତି, ଶକ୍ତି ଓ ସ୍ଥିତିର ଏକ ଅତ୍ୟନ୍ତ କଷ୍ଟସାଧ୍ୟ ପରୀକ୍ଷା, ଯାହାକୁ ଦୁଃସାଧ୍ୟ ମଧ୍ୟ କୁହାଯାଇପାରେ । ଏଇ ଦୃଷ୍ଟିରୁ ସମଗ୍ର ବିଶ୍ୱରେ ଡେକାଥଲନ୍ ବିଜେତାକୁ କ୍ରୀଡ଼ାଜଗତର ସର୍ବାଧିକ ସମ୍ମାନ ମିଳିଥାଏ । ....ବମ୍ବେ ବ୍ରାବୋର୍ନ୍ ଷ୍ଟାଡ଼ିୟମ୍‌ରେ ଏଇ ଚତୁର୍ଦ୍ଦଶ ଭାରତୀୟ ଅଲମ୍ପିକ୍ କ୍ରୀଡ଼ା ଅନୁଷ୍ଠିତ ହେଉଥାଏ । କ୍ରୀଡ଼ା ଜଗତର ଆଜୀବନ ଉପାସୀ, ନିଷ୍ଠାପର ଓ ଏକାଗ୍ର ସାଧକ ନନ୍ଦକୃଷ୍ଣ ଓଡ଼ିଶାର ପ୍ରତିଯୋଗୀ ଭାବେ ଡିକାଥଲନ ଇଭେଣ୍ଟରେ ଯୋଗଦେଲେ । ଯଥାରୀତି ଧାରା ଓ ପରମ୍ପରା ଅନୁଯାୟୀ କ୍ରୀଡ଼ାଙ୍ଗନ ଉଦ୍‌ଘାଟିତ ହେଲା । ଡିକାଥଲନ ଇଭେଣ୍ଟ ଆରମ୍ଭ ହୋଇ ଶେଷ ହେଲା । ଫଳାଫଳ ଘୋଷିତ ହେଲା । ଓଡ଼ିଶାର ଏନ୍. କେ. ଦାସ ଡିକାଥଲେନରେ ଦ୍ୱିତୀୟ ସ୍ଥାନ ଲାଭ କରି ରଜତପଦକ ବିଜୟୀ ହେଲେ । ଓଡ଼ିଶାର କ୍ରୀଡ଼ାମହଲ ଓ କ୍ରୀଡ଼ାପ୍ରେମୀମାନଙ୍କ ମଧ୍ୟରେ ଆନନ୍ଦର ଲହରୀ ଖେଳିଗଲା । ନିଜେ ଏନ୍. କେ.

ମଧ୍ୟ ଆନନ୍ଦ ବିହ୍ୱଳିତ ହୋଇପଡ଼ିଲେ । ଡିକାଥ୍‌ଲେନରେ ରଜତପଦକ, ପୁଣି ଭାରତୀୟ ଅଲମ୍ପିକ୍‌ସରେ । କିଛି କମ ଗୌରବର କଥା ନୁହେଁ । ପୁଣି ଓଡ଼ିଶା ପାଇଁ ଏହା ପ୍ରଥମ ଜାତୀୟ ଅଲମ୍ପିକ ପଦକଲାଭ !

## ସ୍ୱର୍ଣ୍ଣପଦକ ବିଜେତାଙ୍କୁ ରଜତ ପଦକ !!

ଏହାପରେ କିଛିଦିନ ଅତିବାହିତ ହୋଇଗଲାଣି । ସେଦିନ ରବିବାର । ଇଲଷ୍ଟ୍ରେଟେଡ଼ ଉଇକ୍ଲି ଆସିପହଞ୍ଚିଲା । ଉଇକ୍ଲିରେ ପ୍ରତି ସପ୍ତାହରେ ନିୟମିତ କ୍ରୀଡ଼ା ସମ୍ପର୍କୀୟ ଲେଖା ସବୁ ପ୍ରକାଶିତ ହୁଏ । ଏଇ କ୍ରୀଡ଼ା ବିଭାଗର ପରିଚାଳକ ଥିଲେ ଜେ. ଇ. । (ଏହା ଏକ ଛଦ୍ମନାମ । ତାଙ୍କର ପ୍ରକୃତ ନାମ ହେଲା ଜାଲ ଇଞ୍ଜିନିୟର) ସେ ଜଣେ ଚମତ୍କାର କ୍ରୀଡ଼ା-ସ୍ତମ୍ଭ ଲେଖକ । ଊଣେଇଶିଶହ ପଚିଶ ଜୁନ ଏଗାର ତାରିଖର ଉଇକ୍ଲି । ଜେ. ଇ. ଙ୍କ ପୃଷ୍ଠାରେ ପହଞ୍ଚି ସେଦିନ ତାଙ୍କ ଲେଖାର ଶିରୋନାମରେ ଆଖି ପଡ଼ିଲା ମୁହୂର୍ତ୍ତିରେ ହିଁ ମୋର ଆଖି ଯେମିତି ଝାପ୍‌ସା ହୋଇଗଲା—ସମସ୍ତ ଅଙ୍ଗରେ ଏକ ରୋମାଞ୍ଚକର ଶିହରଣ । ଊଣେଇଶି-ଶହ ପଚିଶ ଚତୁର୍ଦ୍ଦଶ ଭାରତୀୟ ଅଲମ୍ପିକ୍‌ସ ଖେଳ ଆଲୋଚନାର ଶିରୋନାମରେ ସେ ଲେଖିଥିଲେ—"ଡିକାଥଲନ୍ ୱିନର୍ ପ୍ଲେସ୍‌ଡ୍ ସେକେଣ୍ଡ" ! ତା' ଅର୍ଥ ? ଆମ ଓଡ଼ିଶାର ଏନ୍. କେ. ଦାସ ଡିକାଥଲନରେ ପ୍ରଥମ ସ୍ଥାନର ଅଧିକାରୀ, ଅଥଚ ତାଙ୍କୁ ଦ୍ୱିତୀୟ ସ୍ଥାନ ମିଳିଛି ! ଚକ୍ଷୁ ଆର୍ଦ୍ର ହୋଇ ଆସୁଚି । ସବୁ ପଢ଼ି ସବୁ ବୁଝି ମଧ୍ୟ ଯେପରି କିଛି ବୁଝିହେଉ ନାହିଁ । ସେ ମୁହୂର୍ତ୍ତର ଉତ୍ତେଜନା ଆଉ ଟେନସନ୍‌କୁ ଆଜି ଏତେ ଦିନପରେ ଏଠି ଠିକ୍ ଠିକ୍ ବର୍ଣ୍ଣନା କରିବା ମୋ' ପକ୍ଷରେ ସମ୍ଭବ ନୁହେଁ, ସେଥିପାଇଁ ସେଦିନ ଉଇକ୍ଲିରେ ଜେ. ଇ. ଙ୍କ ଇଂରାଜୀ ଲେଖାର ଏକ ଅକୃତ୍ରିମ ଓଡ଼ିଆ ଲିପି ଏଠି ପ୍ରଦତ୍ତ ହେଲା । ହଁ, ସେଥର ଅଲମ୍ପିକ୍‌ରେ ପଞ୍ଜାବର ଗୁରୁନାମ ସିଂଙ୍କୁ ଡିକାଥଲନର ସ୍ୱର୍ଣ୍ଣପଦକ ମିଳିଥାଏ । ଜେ. ଇ. ଲେଖିଥିଲେ...."ଏଥର ଅଲମ୍ପିକସ୍‌ରେ ପାତିଆଲାର ଗୁରୁନାମ ସିଂ ଡିକାଥଲନରେ ଚାରିହଜାର ସାତଶହ ଚଉଷଠି ପଏଣ୍ଟ ପାଇ ବିଜେତା ହୋଇଥିଲେ—ଓଡ଼ିଶାର ଏନ୍. କେ. ଦାସ ଚାରିହଜାର ସାତଶହବାର ପଏଣ୍ଟ ପାଇ ଦ୍ୱିତୀୟସ୍ଥାନ ଲାଭ କରିଥିଲେ । ଏ ହିସାବ ଓ ସ୍ଥାନ ନିରୂପଣ ଯଥାଯୋଗ୍ୟ କର୍ମକର୍ତ୍ତାମାନଙ୍କ ଦ୍ୱାରା ଘୋଷିତ ହୋଇଚି । କିନ୍ତୁ ମୋ' ନିଜ ହିସାବ ଓ ଗଣନା ଦ୍ୱାରା ମୁଁ କହୁଚି ଯେ, ଉପରୋକ୍ତ ହିସାବ ସମ୍ପୂର୍ଣ୍ଣ ଭୁଲ୍ । ଯେଉଁ ପ୍ରତିଯୋଗୀ ଡିକାଥଲନର ପ୍ରକୃତ ସ୍ୱର୍ଣ୍ଣପଦକ ବିଜୟୀ, ସେ ଗୁରୁନାମ ସିଂ ନୁହନ୍ତି—ସେ ହେଉଚନ୍ତି ଓଡ଼ିଶାର ଏନ. କେ. ଦାସ (ନନ୍ଦକୃଷ୍ଣ ଦାସ) ।

ଶ୍ରୀ ଦାସ ଗୃହରହଜାର ଆଠଶହ ବୟାଳିଶ ପଏଣ୍ଟ ପାଇଥିବାବେଳେ ଶ୍ରୀ ଗୁରୁନାମ ସିଂ ଗୃହରହଜାର ସାତଶହ ବାଅାଷଠି ପଏଣ୍ଟ ମାତ୍ର ପାଇଚନ୍ତି।” ଜେ. ଇ. ଆହ୍ଣର ଲେଖିଚନ୍ତି—“ମୁଁ ଆଶା କରୁଚ, ବମ୍ବେ ପ୍ରାଦେଶିକ ଅଲମ୍ପିକ ଆସୋସିଏସନ ବର୍ତ୍ତମାନ ଉପଯୁକ୍ତ କର୍ମପନ୍ଥା ଗ୍ରହଣ କରବେ। ସେଇ ସଙ୍ଗେ ସଙ୍ଗେ ମୁଁ ଗୃହେଁ ଯେ, ଯେ କୌଣସି କାରଣରୁ ହେଉ, ଶ୍ରୀଯୁକ୍ତ ଦାସଙ୍କ ପ୍ରତି ଯେଉଁ ଅନ୍ୟାୟ କରହୋଇଚ, ତା'ର ସଂଶୋଧନ କରଯାଉ ଓ ତାଙ୍କର ଉଚତ ପ୍ରାପ୍ୟ ଅଲମ୍ପିକର ସର୍ବୋତ୍ତମ ସମ୍ମାନ ଡେକାଥିଲନର ସ୍ୱର୍ଣ୍ଣପଦକ ତାଙ୍କୁ ପ୍ରଦାନ କରଯାଉ।”

ତାହାହିଁ ହେଲ। ସ୍ୱର୍ଣ୍ଣପଦକ ଶ୍ରୀ ଗୁରୁନାମ ସିଂଙ୍କ ଠାରୁ ଫେରାଇ ଅଣାଗଲ। ଭାରତର କ୍ରୀଡ଼ାକ୍ଷେତ୍ରରେ ଏପର ଘଟଣା ବୁଏତ ବରଳ। ଶ୍ରୀ ନନ୍ଦକୃଷ୍ଣ ଦାସଙ୍କୁ ଊଣେଇଶି ଶହ ପଗ୍ଶ ଚତୁର୍ଦ୍ଦଶ ଭାରତୀୟ ଅଲମ୍ପିକ୍ସରେ ଡେକାଥିଲନ ସ୍ୱର୍ଣ୍ଣପଦକ ବଜୟୀ ବୋଲ ଘୋଷଣା କରଗଲ ଓ କଟକ କଲ୍ଲା-ପଡ଼ଆରେ ଆୟୋଜିତ ଏକ ଆନନ୍ଦ ଉଲ୍ଲାସମୟ ସମାରୋହରେ ତତ୍କାଳୀନ ରାଜ୍ୟପାଳ ମାନ୍ୟବର ଆସଫ ଅଲ୍ଲି ବପୁଳ କରତାଳ ଓ ହର୍ଷଧ୍ୱନ ମଧ୍ୟରେ ଶ୍ରୀ ଦାସଙ୍କ ଗଳାରେ ସ୍ୱର୍ଣ୍ଣପଦକଟି ପିନ୍ଧାଇଦେଲେ। ଏ କଥା ନଶ୍ଚିତ ଯେ, ଶ୍ରୀଯୁକ୍ତ ଦାସ ତାଙ୍କ ସ୍ୱଭାବ-ସୁଲଭ ନମ୍ରତା ଓ ବନୟଭାବ ସହକାରେ ଓ ଅତ ପ୍ରଶାନ୍ତ ବଦନରେ ପଦକଟି ଗ୍ରହଣ କରଥିଲେ ମଧ୍ୟ, ତାଙ୍କ ଶରୀରର ପ୍ରତଟି ଲୋମ କୂପରେ ତାଙ୍କର ଏଇ ମହାନ୍ ବଜୟର ରୋମାଞ୍ଚକର ପୁଲକ ସେ ନଶ୍ଚୟ ଅନୁଭବ କରଥିବେ।

ଓଡ଼ଆରେ ଗୋଟିଏ କଥା ଅଛି, “ଅଭ୍ରାନ୍ତସ୍ଥିତ”। ଆଜ ପ୍ରାୟ ପଚିଶ୍ୱାଳିଶ ବର୍ଷ ପରେ ଏଇ ଘଟଣାଟିର ସ୍ମୃତଚାରଣ କଲାବେଳେ ମନେ ହେଉଚ ଶ୍ରୀଯୁକ୍ତ ଦାସଙ୍କର ଏଇ ଐତହାସିକ ବଜୟ “ଅଭ୍ରାନ୍ତସ୍ଥିତ”ର ଏକ ଜ୍ୱଳନ୍ତ ନଦର୍ଶନ।

## ଏକଦା ଭାରତୀୟ କ୍ରିକେଟ କଂଟ୍ରୋଲବୋର୍ଡ଼ର ଭାବୀ ପ୍ରେସିଡେଣ୍ଟ ଭୈରବ ମହାନ୍ତି ଓ ୧୯୮୦ ଅଲମ୍ପିକ୍

ଊଣେଇଶିଶହ ଅଶୀ ମସ୍କୋ ଅଲମ୍ପିକ୍। ଭାରତୀୟ କଣ୍ଟିଜେଣ୍ଟ ସହତ ଆମ ଭୈରବବାବୁ (ଶ୍ରୀଯୁକ୍ତ ଭୈରବ ଚନ୍ଦ୍ର ମହାନ୍ତି) ଜଣେ ଅଫିସିୟାଲ ଭାବେ ମସ୍କୋ ଗଲେ। ଓଡ଼ଶାର କ୍ରୀଡ଼ାଜଗତରେ ଆନନ୍ଦର ସ୍ରୋତ ଛୁଟିଗଲ। କନ୍ତୁ

ମୁଁ ? ହଁ, ମୁଁ ବୋଧହୁଏ ଭୈରବବାବୁଙ୍କ ମସ୍କୋ ଯାତ୍ରା ଯୋଗୁଁ ଅନ୍ୟ ସମସ୍ତଙ୍କଠୁ ବେଶୀ ଆନନ୍ଦିତ ହୋଇଥିଲି । କାରଣ ତାଙ୍କପରି ଜଣେ ଉଦ୍ୟୋଗୀ ପୁରୁଷ ଆମ ସାଧାରଣ ଦୃଷ୍ଟିସୀମା ଭିତରେ ଅତ୍ୟନ୍ତ ବିରଳ । ମୋର ତାଙ୍କପ୍ରତି ଶ୍ରଦ୍ଧା ଓ ସମ୍ମାନ ସବୁ ଥିଲା । କିନ୍ତୁ ଆମ ଦୁହିଁଙ୍କ ଭିତରେ ଦେଖାସାକ୍ଷାତ କ୍ୱଚିତ କେବେ କୋଉଠି ହୋଇଥାଏ । ମୁଁ ଆନନ୍ଦିତ ହେବାର ଆଉ ଏକ କାରଣ ଥିଲା ଯେ, ତାଙ୍କର ମସ୍କୋରୁ ପ୍ରତ୍ୟାବର୍ତ୍ତନ ପରେ ସେ ଭାରତୀୟ କ୍ରିକେଟ କଣ୍ଟ୍ରୋଲ ବୋର୍ଡ଼ର ପ୍ରେସିଡେଣ୍ଟ ପଦ ଅଳଂକୃତ କରିବା କଥା ସ୍ଥିର ସିଦ୍ଧାନ୍ତ ହୋଇ ଯାଇଥିଲା । ଭାରତୀୟ କ୍ରିକେଟ କଣ୍ଟ୍ରୋଲ ବୋର୍ଡ଼ ଏକ ଅତି ସମ୍ମାନଜନକ ପ୍ରତିଷ୍ଠାନ ଓ ଏହାର ପ୍ରେସିଡେଣ୍ଟ ପଦବୀ ସେଇପରି ସମ୍ମାନାସ୍ପଦ ଓ ମର୍ଯ୍ୟାଦା-ସମ୍ପନ୍ନ । ଏ ପଦବୀ ଲାଭ କରି ଏକା ଭୈରବବାବୁ ନୁହଁନ୍ତି, ସମଗ୍ର ଓଡ଼ିଶା ଗୌରବାନ୍ୱିତ ହେବାର କଥା । କିନ୍ତୁ ନିଷ୍ଠୁର କାଳର କରାଳଗତି !! ମସ୍କୋରୁ ଭୈରବବାବୁ ନ ଫେରି ଫେରିଲା ତାଙ୍କର ମରଣଶରୀର । ମସ୍କୋ ଅଲମ୍ପିକ ଖେଳ ଚାଲିଥିବାବେଳେ ସେଇ ମସ୍କୋରେ ତାଙ୍କର ଦେହାନ୍ତ ହୋଇଗଲା । ତାଙ୍କ ମୃତଦେହ ଓଡ଼ିଶା ମାଟି ସ୍ପର୍ଶ କଲାପରେ ପ୍ରଥମେ ତାଙ୍କୁ ବାରବାଟୀ ଷ୍ଟାଡିୟମ ପରିସରକୁ ନିଆଗଲା । ସେଠି ଅଗଣିତ ଶୋକାକୁଳ ବ୍ୟକ୍ତିମାନଙ୍କ ଶୋକଚ୍ଛ୍ୱାସ ସହ ଶବ ଉପରେ ସଂଭ୍ରମତାର ସହ ପୁଷ୍ପଗୁଚ୍ଛ ପ୍ରଦାନ ଶେଷ ହେଲା ପରେ ଏକ ବିରାଟ ଶବଯାତ୍ରାରେ ତାଙ୍କୁ ସତ୍ୟଚୌରା ନିଆଯାଇ ତାଙ୍କର ଶେଷକୃତ୍ୟ ସମାପନ କରାଗଲା । ମୁଁ ଏକାବେଳକେ ମ୍ରିୟମାଣ ହୋଇପଡ଼ିଲି । ସବୁ ଜାଣି ଶୁଣି ବୁଝି ସୁଦ୍ଧା ମୁଁ ଯେମିତି କିଛି ବୁଝିପାରୁ ନ ଥାଏ—କିଛି ଅବଧାରଣା କରିପାରୁ ନ ଥାଏ ।

## ସେଇ ଭୈରବ ଚନ୍ଦ୍ର ମହାନ୍ତି

ତତ୍କାଳୀନ ବିହାର ଓଡ଼ିଶା ପ୍ରଦେଶର ପାଟନା ସେକ୍ରେଟେରିଏଟ୍‌ରେ ଚାକିରି କରୁଥିବା ବେଳଠୁ ସିଏ ଥିଲେ ଏକ ପରିଚିତ ନାମ । ଊଣେଇଶିଶହ ଛତିଶ ମସିହା ଏପ୍ରିଲରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା । ଓଡ଼ିଶା ସେକ୍ରେଟେରିଏଟ୍‌ର ଜଣେ କର୍ମଚାରୀ ଭାବେ ଭୈରବବାବୁ କଟକ ଆସିଥିଲେ । ଏ କଥାଟି ଏଠି ଉଲ୍ଲେଖଯୋଗ୍ୟ ଯେ, ନୂତନ ଓଡ଼ିଶା ସେକ୍ରେଟେରିଏଟ୍‌ର ପ୍ରଥମ ଫାଇନାନ୍‌ସ ସେକ୍ରେଟେରୀ ବା ଅର୍ଥସଚିବ ଥିଲେ ଭୈରବବାବୁଙ୍କ ପିତୃବ୍ୟ (ଦାଦା) ଶ୍ରୀଯୁକ୍ତ ନିଶାମଣି ମହାନ୍ତି । ସେବେଳରେ ଏଇ ସବୁ ସେକ୍ରେଟେରୀ ପଦବୀମାନଙ୍କରେ ଆଇ.ସି.ଏସ୍. ଅଫିସରମାନେ ନିଯୁକ୍ତ ହେଉଥିଲେ । କିନ୍ତୁ ନିଶାମଣିବାବୁ ଆଇ.ସି.ଏସ୍. ନ ଥିଲେ କି ଡେପୁଟି ମାଜିଷ୍ଟ୍ରେଟ ନ ଥିଲେ । ସେ

ସାଧାରଣ ସେକ୍ରେଟେରିଏଟ୍ କର୍ମଚାରୀ ପଦରୁ ତାଙ୍କ କର୍ମ-ନୈପୁଣ୍ୟର ସମ୍ମାନଜନକ ପୁରସ୍କାର ସ୍ୱରୂପ ସଚିବାଳୟର ସର୍ବୋଚ୍ଚ ଆସନ ସଚିବ ପଦକୁ ଉନ୍ନୀତ ହୋଇ ଓଡ଼ିଶା ଆସିଲେ, ଯାହା ସଚରାଚର ଦେଖାଯାଏନା । ଶ୍ରୀଯୁକ୍ତ ମହାନ୍ତିଙ୍କ ପାଇଁ ଏହା ଏକ ବିରଳ ବ୍ୟତିକ୍ରମ ଓ ଏଥିପାଇଁ ସେ ସମସ୍ତ ଓଡ଼ିଆ ଜାତିର ପୂଜ୍ୟ ଓ ନମସ୍ୟ ହୋଇପାରିଥିଲେ ବୋଲି କହିଲେ ଭୁଲ୍ ହେବ ନାହିଁ । ସେଇପରି ଏକଥା ଏଠି ଉଲ୍ଲେଖଯୋଗ୍ୟ, ଅର୍ଥ ସଚିବ ଶ୍ରୀଯୁକ୍ତ ମହାନ୍ତିଙ୍କ ଭ୍ରାତୃଷ୍ପୁତ୍ର ଭୈରବବାବୁ ଊଣେଇଶିଶହ ଛତିଶ ମସିହାରେ, ଯେତେବେଳେ ଖଦଡ଼ ନାଁ ଶୁଣିଲେ ବ୍ରିଟିଶ ସରକାରଙ୍କ ହୃତ୍‌କମ୍ପ ହେଉଥିଲା, ସେତେବେଳେ ସେ ସେଇ ବ୍ରିଟିଶ ସରକାରଙ୍କ ଅଧୀନରେ ଚାକିରି କରି ଖଦଡ଼ ପୋଷାକ ପିନ୍ଧୁଥିଲେ । ଖାଲି ପିନ୍ଧୁଥିଲେ ନୁହେଁ, ସେଇ ଖଦଡ଼ ଧୋତି ପଞ୍ଜାବି ପିନ୍ଧି ଅଫିସ୍—ପୁଣି ସେକ୍ରେଟେରିଏଟ୍ ଅଫିସ୍ (ଯେଉଁଠି ଶ୍ୱେତାଙ୍ଗ ଅଫିସରମାନଙ୍କ ଆତଯାତ ଲାଗିରହିଥାଏ ।) ଯାଉଥିଲେ । ଏଥିପାଇଁ ନିଃସନ୍ଦେହରେ ଇଂରେଜ କର୍ତ୍ତୃପକ୍ଷଙ୍କ ବିପଦ୍ଦୃଷ୍ଟିରେ ପଡ଼ୁଥିବେ । କିନ୍ତୁ ସେଇଥିପାଇଁ ତାଙ୍କର କୌଣସି ଚିନ୍ତା ନ ଥିଲା ।

ସେକ୍ରେଟେରିଏଟ୍ ଓଡ଼ିଶାକୁ ଆସିଲା ପରେ ଦେଖାଗଲା, ଆମ ଓଡ଼ିଶା ସେକ୍ରେଟେରିଏଟ୍‌ରେ ଦକ୍ଷିଣଭାରତୀୟ ଓ ବଙ୍ଗବାସୀ କର୍ମଚାରୀଙ୍କ ଅପେକ୍ଷା ଓଡ଼ିଆ କର୍ମଚାରୀଙ୍କ ସଂଖ୍ୟା କମ୍ । ଏଥିରେ ଦୁଃଖ କରିବାର କିଛି ଅବସର ନ ଥିଲା । ସେତେବେଳେ ତ ଶିକ୍ଷା କ୍ଷେତ୍ରରେ ସବୁ ପ୍ରଦେଶର ବିଶେଷ ପ୍ରସାର ଘଟିନଥିଲା । ଆମ ଓଡ଼ିଶାର ସ୍ଥାନ ଶିକ୍ଷାକ୍ଷେତ୍ରରେ ଏଇପରି ଅନଗ୍ରସର ପ୍ରଦେଶମାନଙ୍କ ମଧ୍ୟରେ ଥିଲା । କିନ୍ତୁ ବେଙ୍ଗଲ ଓ ମାନ୍ଦ୍ରାଜ (ଉଭୟ ତାମିଲ ଓ ତେଲୁଗୁଭାଷୀ ଅଞ୍ଚଳ) ଶିକ୍ଷା କ୍ଷେତ୍ରରେ ଆମମାନଙ୍କ ଅପେକ୍ଷା ଅଧିକ ଅଗ୍ରସର ଥିଲେ ଓ ଏଇ ସୁଯୋଗରେ ସେମାନେ ଦିଲ୍ଲୀଠୁ ଆରମ୍ଭ କରି ପ୍ରାଦେଶିକ ସରକାରୀ ସଂସ୍ଥାମାନଙ୍କରେ ନିଯୁକ୍ତ ହେଉଥିଲେ । ଏଥିପାଇଁ ପ୍ରାୟତଃ କୌଣସି ବାଧାବନ୍ଧନ ନ ଥିଲା ।···ସେକ୍ରେ-ଟେରିଏଟ୍ ଆସିବା ପରେ ପରେ ଭୈରବବାବୁ ଆପେ ଆପେ ବାରିହୋଇ ପଡ଼ିଲେ । ତାଙ୍କର ଖଦଡ଼ ପୋଷାକ ସହିତ ତାଙ୍କର ବୌଦ୍ଧିକ ବୋଧଶକ୍ତି ହିଁ ତାଙ୍କୁ ସବୁ କ୍ଷେତ୍ରରେ ଜଣେ ଶ୍ରଦ୍ଧା ଓ ସମ୍ମାନର ପାତ୍ର ରୂପେ ପରିଚିତ କରାଇ ଦେଇଥିଲା । ସେତେବେଳେ କଟକ ବିନୋଦବିହାରୀ ଠାରେ ଆମେ କେତେଜଣଙ୍କ ଉଦ୍ୟମରେ ଭାରତୀକ୍ଲବ ସ୍ଥାପିତ ହୋଇଥିଲା ଓ ଏଇ କ୍ଲବ ଆନୁକୂଲ୍ୟରେ ବ୍ରିଜ୍ ତାସ୍‌ଖେଳର ବାର୍ଷିକ ପ୍ରତିଯୋଗୀତା ନିୟମିତ ଭାବେ ଚାଲୁଥିଲା । ସେ ବର୍ଷ ଦେଖାଗଲା ଯେ, ସେକ୍ରେଟେରିଏଟ୍ ବ୍ରିଜ୍ କ୍ଲବ, ଭାରତୀ କ୍ଲବ ଟୁର୍ଣ୍ଣାମେଣ୍ଟରେ ଯୋଗ ଦେଇଚନ୍ତି ଓ

ସେକ୍ରେଟେରିଏଟ ବ୍ରିଜ୍ କ୍ଲବର ମୁଖ୍ୟ ଉଦ୍ୟୋକ୍ତା ହେଉଚନ୍ତି ଶ୍ରୀ ଭୈରବ ଚନ୍ଦ୍ର ମହାନ୍ତି । ମୋର ପରମ ସୌଭାଗ୍ୟ ଯେ, ଏପରି ଜଣେ ମହନୀୟ ବ୍ୟକ୍ତିଙ୍କ ସହିତ ପରିଚୟଲାଭ କରିବା ସହ କିଛି ଅନ୍ତରଙ୍ଗ ସାନ୍ନିଧ୍ୟ ଲାଭ କରିପାରିଥିଲି ଓ ଏଇ ଆନ୍ତରିକତା ଅଣଗୃହୀଣ/ଗୃହୀଣ ମସିହାଠାରୁ ଊଣେଇଶିଶହ ଅଶୀ ମସିହା ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିପାରିଥିଲା । ....ଊଣେଇଶି ଶହ ବୟାଳିଶ ଭାରତ ଛାଡ଼ ଆନ୍ଦୋଳନ । ଦେଖାଗଲା ଭୈରବବାବୁ ଚାକିରିରୁ ଇସ୍ତଫା ଦେଇ ଆନ୍ଦୋଳନରେ ଯୋଗ-ଦେଇଚନ୍ତି । ସେଦିନ ମୁଁ ଅଫିସ୍‌ରେ ବସିଥାଏ—ଜଣେ ଲୋକ ହାତରେ ଖଣ୍ଡିଏ ଲିଥୋ କାଗଜ ଆଣି ମତେ ଧରାଇଦେଲା । କାଗଜଟି ଇଂରାଜୀରେ ଭୈରବବାବୁଙ୍କ ହାତଲେଖା । ଲମ୍ବା କାଗଜଟିରେ ସେ କାହିଁକି କେଉଁ ପରିସ୍ଥିତିରେ ସରକାରୀ ଚାକିରି ତ୍ୟାଗକରି କଂଗ୍ରେସ ପରିଚାଳିତ ବୟାଳିଶ ଆନ୍ଦୋଳନରେ ଯୋଗ ଦେଇଛନ୍ତି, ତାର ଏକ ବିଶଦ ବିବରଣୀ ପ୍ରଦାନ କରିଛନ୍ତି । ହୁଏତ ଲିଥୋ ମେସିନ ପାଇନାହାଁନ୍ତି, ଆମ ଅଫିସରେ ଲିଥୋ ସରଞ୍ଜାମ ଅଛି ଜାଣି ମୋ' ପାଖକୁ ଲେଖାଟି ପଠାଇଦେଇଚନ୍ତି । ଲେଖାଟି ତ ମୁଁ ପଢ଼ିଲି ଓ ଜାଣିଲି, ଭୈରବବାବୁ ତାଙ୍କର କର୍ମନିପୁଣତାର ସାଧନା ପାଇଁ ଏବେ ଏକ ବୃହତ୍ତର କ୍ଷେତ୍ର ବାଛି ନେଇଚନ୍ତି । ମନରେ କିଛିଟା ବିସ୍ମୟ ଓ କିଛିଟା ଆନନ୍ଦ—ଆଖି-କୋଣରେ ସେଇ ଆନନ୍ଦ ଜନିତ ଦୁଇଟୋପା ଅଶ୍ରୁ । ଭୈରବବାବୁଙ୍କ ଲେଖାର ଲିଥୋ କପି କରି ତାଙ୍କ ନିକଟକୁ ପଠାଇ ଦେଲି । ଆହା ତାଙ୍କର ଇଂଲିଶ ଲେଖା କି ଚମତ୍କାର !!!

ଏହାପରେ ମୁଁ ବେଶ୍ କିଛି ବର୍ଷ କଟକ ସହରରେ ଅନୁପସ୍ଥିତ ଥିଲି । ତା' ପରେ ମୁଁ ଯେତେବେଳେ ଫେରିଲି, ସେତେବେଳକୁ ଭାରତ ସ୍ୱାଧୀନ ହେଲାଣି । ମୋର ଦୁର୍ଭାଗ୍ୟ, ମୁଁ ମୋ' ଦେଶର ସ୍ୱାଧୀନତା ଉତ୍ସବ ମୋର ପ୍ରିୟ ସହର କଟକରେ ଦେଖିପାରିଲି ନାହିଁ । ମୁଁ ସେତେବେଳେ ରହୁଥିଲି କଟକ ସହରଠାରୁ ପ୍ରାୟ ପାଞ୍ଚଶହ ମାଇଲରୁ ଊର୍ଦ୍ଧ୍ୱ ମଧ୍ୟପ୍ରଦେଶର ଏକ ଘନ ଅରଣ୍ୟାବୃତ ଅଞ୍ଚଳରେ । ଅବଶ୍ୟ ସେଠି ସାପ୍ତାହିକ ହିନ୍ଦୀ ପତ୍ରିକାଟିଏ ପାଉଥିଲି । ଅଗଷ୍ଟ ପନ୍ଦରର ଦୁଇ ତିନି ଦିନ ପରେ ସାପ୍ତାହିକରୁ ପଢ଼ିଲି, ସେଦିନ କଟକ ସହରର ଅଧିବାସୀମାନେ ସମସ୍ତ ରାତି ଉଜାଗର । ଅତି ଉଲ୍ଲାସ ଓ ଆନନ୍ଦମୟ ପରିବେଶ ଭିତରେ ସ୍ୱାଧୀନତା ଦିବସ ପାଳନ କରିଥିଲେ । ସ୍ୱାଧୀନତା ଲାଭର କିଛିକାଳ ପରେ ମୁଁ ବିଜୟନଗର ରାୟପୁର୍ ଟ୍ରେନ୍‌ରେ କଟକ ଯାତ୍ରା କଲି । ବାଟରେ ମଧ୍ୟପ୍ରଦେଶର ମହାସମୁନ୍ଦ ଷ୍ଟେସନରେ ବେଶ୍

କିଛି ସମୟ ପାଇଁ ଗାଡ଼ି ଅଟକିଲା । ଟ୍ରେନରେ ଥାଇ ଦେଖିଲି, ଅଦୂରରେ ମଧ୍ୟପ୍ରଦେଶର ବରିଷ୍ଠ କଂଗ୍ରେସ ନେତା ଓ ମୁଖ୍ୟମନ୍ତ୍ରୀ ରବିଶଙ୍କର ଶୁକ୍ଳାଙ୍କୁ ମହଣ ମହଣ ଜିନିଷ ଓଜନ ହୋଇପାରିବା ଭଳି ତରାଜୁର ଗୋଟିଏ ପଲରେ ଠିଆ କରେଇ, ତରାଜୁର ଅନ୍ୟ ପାଖରେ ମୁଣ୍ଡା ମୁଣ୍ଡା ରୁପା ରଖି ମରାଳପକ୍ଷୀ ପରି ଶୁକ୍ଳବର୍ଣ୍ଣ ଦ୍ରବ୍ୟ ତଥା ଧୀର୍ଘକାନ୍ତ ଶୁକ୍ଳ ମହାଶୟଙ୍କୁ ତାଙ୍କର ଓଜନର ରୌପ୍ୟ ପିଣ୍ଡ ଉପହାର ଦେଇ ସମ୍ବର୍ଦ୍ଧନା କରାଯାଉଚି । ପ୍ରକୃତରେ ଶୁକ୍ଳ ମହାଶୟ ମଧ୍ୟପ୍ରଦେଶରେ ଜଣେ ଲୋକପ୍ରିୟ ପୂଜ୍ୟ ନେତା ଥିଲେ ।

ମୁଁ କଟକ ଫେରି କଟକ ଜିଲ୍ଲାବୋର୍ଡ଼ ଅଫିସ୍‌ରେ ମୋର ସେଇ ପୂର୍ବନିଯୁକ୍ତ ଜିଲ୍ଲାବୋର୍ଡ଼ ପୂର୍ତ୍ତ ବିଭାଗର ସିନିୟର କର୍ମଗୃହୀ ରୂପେ ଯୋଗଦେଲି । ସେତେବେଳକୁ ଭୈରବବାବୁ ଓଡ଼ିଶା ବିଧାନ ସଭାକୁ ନିର୍ବାଚିତ ହୋଇ ପୂର୍ତ୍ତ ବିଭାଗରେ ଡେପୁଟି ମିନିଷ୍ଟର ପଦ ଅଳଂକୃତ କଲେଣି । ଦାୟିତ୍ୱ ଗ୍ରହଣ ସଙ୍ଗେ ସଙ୍ଗେ ତାଙ୍କର ଦୃଷ୍ଟି ପଡ଼ିଲା କଟକ ସହରର ରାସ୍ତାଘାଟ ଉପରେ । ରାଣୀହାଟ ପୋଲର ପ୍ରଶସ୍ତୀକରଣ ସଙ୍ଗେ ସଙ୍ଗେ ପୋଲପାଖରୁ କଲେଜଛକ ପର୍ଯ୍ୟନ୍ତ ଓ ସହରପଟେ ରାଣୀହାଟ ସ୍କୁଲପର୍ଯ୍ୟନ୍ତ ସମସ୍ତ ରାସ୍ତା ପିଚୁ ଓ ପ୍ରଶସ୍ତ ହେବା ଯୋଜନା ଆରମ୍ଭ ହୋଇଗଲା । ମୁଁ କଟକ ଫେରିବା ପରେ ତାଙ୍କ ସହିତ ମୋର ସାକ୍ଷାତ୍ ହେଲା—ତାଙ୍କୁ ମୁଁ ମୋର ବିଧାଇ ଜଣାଇଥିଲି । ହିନ୍ଦ୍ ସିନେମା ପାଖରୁ ସହର ପଟକୁ କଟକ ଜିଲ୍ଲାବୋର୍ଡ଼ର ଗୋଟିଏ ଗୋଦାମଘର ଓ ତତ୍‌ସଂଲଗ୍ନ କିଛି ପଡ଼ିଆ ଜମି ଥିଲା । ଏଇ ସମୟରେ ସରକାରଙ୍କ ଓ୍ୱାର୍କସ 'ଡିପାର୍ଟମେଣ୍ଟରୁ ଚିଠି ଆସିଲା ଯେ, ରାଣୀହାଟ ରାସ୍ତାର ଏଇ ଅଂଶଟିର ପ୍ରଶସ୍ତୀ କରଣ ପାଇଁ କଟକ ଜିଲ୍ଲା ବୋର୍ଡ ରାଣୀହାଟସ୍ଥିତ ପଡ଼ିଆ ଜମିରୁ କିଛି ଅଂଶ ସରକାରଙ୍କୁ ହସ୍ତାନ୍ତର କରନ୍ତୁ ।

## ଡେପୁଟି ମିନିଷ୍ଟର ଭୈରବ ବାବୁ

ଏଇ କାମଟି ଜିଲ୍ଲାବୋର୍ଡର ପୂର୍ତ୍ତବିଭାଗ ନିର୍ବାହ କରିବା କଥା । ସେଥିପାଇଁ ଫାଇଲ୍ ମୋ' ପାଖକୁ ଆସିଲା । ସଙ୍ଗେ ସଙ୍ଗେ ମୁଁ ଜମିର ମାପ ଚୁପ ଓ ଜିଲ୍ଲା ଇଞ୍ଜିନିୟରଙ୍କ ମତାମତ ପାଇଁ ଫାଇଲ ପ୍ରସେସିଙ୍ଗ କର୍ମ ଆରମ୍ଭ କରିଦେଲି । ସାଧାରଣତଃ କୌଣସି ଅଯଥା ବିଳମ୍ବ ନ କରି ଏ କାର୍ଯ୍ୟଟି ସମ୍ପୂର୍ଣ୍ଣ କରିବା ପାଇଁ ଓ ଜମି ହସ୍ତାନ୍ତର କରିବାକୁ ସାତ ଆଠ ଦିନ ସମୟ ଲାଗିବା କଥା । ସରକାରଙ୍କ ଚିଠି ଆସିବାର ଚାରି ପାଞ୍ଚ ଦିନ ପରେ ମୁଁ ଅଫିସରେ ବସି କିଛି ଫାଇଲ ଦେଖୁଚି, ହଠାତ୍ ଅନୁଭବ କଲି, ଅଫିସ୍ ଭିତରେ ଟିକେ ଚହଲ

ସୃଷ୍ଟି ହୋଇଗଲା । କର୍ମଚାରୀମାନେ ଉଠି ଠିଆ ହୋଇଯାଉଚନ୍ତି—ସମସ୍ତଙ୍କର ଦୃଷ୍ଟି ମୋ'ର ସିଟ୍ ଆଡ଼କୁ । ମୁଁ ଟିକେ ଚୁଲପଡ଼ ଦେଖିଲି, ନଜେ ଡେପୁଟି ମିନଷ୍ଟର ଭୈରବବାବୁ ମୋ' ଚୌକିର ଡାହାଣପଟକୁ ଲାଗି ଠିଆ ହୋଇଚନ୍ତି—ତାଙ୍କ ହାତପାପୁଲିଟି ମୋ' କାନ୍ଧ ଉପରେ । ମୁଁ ନମସ୍କାର ଭଙ୍ଗୀରେ ଉଠି ଠିଆ ହୋଇପଡ଼ିବା ବ୍ୟତୀତ ଆଉ କିଛି କହିପାରିଲି ନାହିଁ କି କରିପାରିଲି ନାହିଁ । ବରଂ ସେ କହିଲେ—ବସ, ତୁମେ ବସ । ମୁଁ ଏଇ ଚୌକିରେ ବସୁଚି । ....ଏତକ କହି ଗୋଟିଏ ଚୌକି ଟାଣି ଆଣି ବସିଲେ । ରାଜ୍ୟର ଜଣେ ଡେପୁଟି ମିନଷ୍ଟର ଆମ ଅଫିସକୁ ଆସି ମୋ' ପାଖରେ ଆଉ ଗୋଟିଏ ଚେୟାର୍‌ରେ ବସିବେ, ଏକଥା ମୁଁ ଆଦୌ କଳ୍ପନା କରିପାରୁ ନ ଥାଏ । ଅଫିସ ଭିତରକୁ ଚାହିଁ ଦେଖିଲି, ସମସ୍ତଙ୍କ ମୁହଁରେ ବିସ୍ମୟଭରା କିଛି ଆନନ୍ଦର ପ୍ରଲେପ । ଭୈରବବାବୁ କହିଲେ—ଏଇ ତ, କିଛିଦିନ ପୂର୍ବରୁ ମୁଁ ତମରିମାନଙ୍କ ପରି ଗୋଟିଏ ଅଫିସରେ ବସି କାମ କରୁଥିଲି । ଆଉ ତୁମେ ଏଠି ମତେ ଦେଖି ଅଡୁଆରେ ପଡ଼ିଯାଉଚ କାହିଁକି ? ମତେ କୁହ, ଆମ ଚିଠିର ଉତ୍ତର କେବେ ମିଳିବ ? ....ମୁଁ କହିଲି—ଏଇ ଦିନେ ଦୁଇଦିନ ଭିତରେ । ....ସେ କହିଲେ—ନାହିଁ, ଦୁଇଦିନ ନୁହେଁ, ଆଜି । ଆଜି ମୁଁ ପାଇପାରିବି ? ....ଟିକେ ଚିନ୍ତା କରି ମୋର ସମ୍ମତି ଜଣାଇଲି । ଟିକେ ହସି ମୋ' ପିଠି ଥାପୁଡ଼େଇ ଦେଇ କହିଲେ—ବେଶ୍, ମୁଁ ଯାଉଚି । କେତେବେଳେ ତମର ଚିଠି ମିଳିପାରିବ ? ଉତ୍ତରରେ କହିଲି—ପାଞ୍ଚଟା ଭିତରେ । ....ସେ ଉଠିଲେ ଓ ସମସ୍ତଙ୍କ ଉଦ୍ଦେଶ୍ୟରେ ଯୋଡ଼ହସ୍ତ କରି ଚାଲିଗଲେ । ହଁ, ସେଇଦିନ ପାଞ୍ଚଟା ପୂର୍ବରୁ ଓ୍ୱାର୍କ ଡିପାର୍ଟମେଣ୍ଟର ଜଣେ କର୍ମଚାରୀ ଆସି ଆମଠୁ ଚିଠି ନେଇଗଲେ । ....ଆଜି ଏଇ ମହାନ୍ ବ୍ୟକ୍ତି ପରଲୋକଗତ । ଆଜି ଏତେଦିନ ପରେ ବି ମୁଁ କଳ୍ପନା କରିପାରୁ ନାହିଁ ଯେ, ଜଣେ ମନ୍ତ୍ରୀ, ତାଙ୍କର ବ୍ୟକ୍ତିଗତ କାର୍ଯ୍ୟ ପାଇଁ ନୁହେଁ, ଜନସାଧାରଣଙ୍କ ସେବା ପାଇଁ ସାମାନ୍ୟ ଗୋଟିଏ ଡିଷ୍ଟ୍ରିକ୍ଟବୋର୍ଡ଼ କିରାଣି ପାଖରେ ଆସି ଠିଆହେବେ । ଏହା ଏକ ବିରଳ ଅବିଶ୍ୱାସ୍ୟ ଘଟଣା ଓ ଏହାର ଉଦାହରଣ ଅନ୍ୟ କୁତ୍ରାପି ନାହିଁ ।

## ବାରବାଟି ଷ୍ଟାଡ଼ିୟମ ନିର୍ମାଣ

ଏହାପରେ ଭୈରବବାବୁଙ୍କ କୀର୍ତ୍ତି କଟକ ସହରରେ ଖେଳିଗଲା । ରାଣୀହାଟ ପୋଲ ଓ ତତ୍‌ସଂଲଗ୍ନ ଉଭୟ ପାର୍ଶ୍ୱର ରାସ୍ତାସବୁର ସଂପ୍ରସାରଣ, ଛତ୍ରବଜାର ପୋଲର ସଂପ୍ରସାରଣ ଓ ଏଇ ପୋଲଠାରୁ ଜାତୀୟ ରାଜପଥ ପର୍ଯ୍ୟନ୍ତ

କେନାଲ ବନ୍ଧର ଉନ୍ନତି-ସାଧନ, କଟକଚଣ୍ଡୀ ସମ୍ମୁଖସ୍ଥ ସମସ୍ତ ରାସ୍ତାର ଉନ୍ନତି-ସାଧନ, ବାରବାଟୀ ଷ୍ଟାଡିୟମ ନିର୍ମାଣ । ଷ୍ଟାଡିୟମ ସଂଯୁକ୍ତ ଏକ ବିସ୍ତୀର୍ଣ୍ଣ ଜମି ଉପରେ ବିବାହାଦି ଉତ୍ସବ ସବୁ ଅନୁଷ୍ଠିତ ହେବା ପାଇଁ କଚେନ୍, ଡାଇନିଂହଲ୍ ଓ ଅନ୍ୟାନ୍ୟ ପ୍ରାସଙ୍ଗିକ କର୍ମ ପାଇଁ ପର୍ଯ୍ୟାପ୍ତ ବ୍ୟବସ୍ଥା ତାଙ୍କର ଏକ ଅମର କୀର୍ତ୍ତି । ପୁଣି ଇଣ୍ଡିଆନ୍ ଅଲମ୍ପିକ ବା ବର୍ତ୍ତମାନର ନେସନାଲ ଗେମ୍ସ ତାଙ୍କର ଉଦ୍ୟମରେ ପ୍ରଥମ ଥର ପାଇଁ ଓଡ଼ିଶାର ବାରବାଟୀ ଷ୍ଟାଡିୟମରେ ଅନୁଷ୍ଠିତ ହେଲା । ମାରାଥନ୍ ରେସ୍ ନାଁ ଆମେ ଶୁଣିଥିଲୁ ମାତ୍ର । କିନ୍ତୁ ନେସ୍‌ନାଲ ଗେମ୍‌ରେ ପ୍ରତ୍ୟକ୍ଷରେ ଦେଖିଲୁ । ଏଇ ମାରାଥନ ରେସ ପାଇଁ ଛତିବଜାର କେନାଲ ବନ୍ଧର ଉନ୍ନତି ସାଧନ କରାହୋଇଥିଲା । ପୁଣି ଦେଖିଲୁ, ଫ୍ଲାଇଙ୍ଗଶିଖ୍ ମିଲ୍‌ଖାସିଂଙ୍କ ରୋମାଞ୍ଚକର ଚାରିଶହ ମିଟର ଦୌଡ଼ । ଷ୍ଟାଡିୟମରେ ପୁଣି ଅନୁଷ୍ଠିତ ହେଲା ସନ୍ତୋଷଟ୍ରଫି ଫୁଟବଲ୍ ଖେଳ । ଦୀର୍ଘଦିନ ଧରି ଅନୁଷ୍ଠିତ ଏଇ ପ୍ରତିଯୋଗିତାରେ ଆମେ ଭାରତର ସବୁ ରାଜ୍ୟର ଫୁଟବଲ୍ ଖେଳ ପ୍ରଦର୍ଶନ ଦେଖିବାକୁ ପାଇଲୁ । ଓଡ଼ିଶା ସେମିଫାଇନାଲକୁ ଉନ୍ନୀତ ହୋଇ ବଙ୍ଗଳା ସହିତ ଖେଳି ପରାଜିତ ହେଲା । ପୁଣି ଭୈରବବାବୁଙ୍କ ଉଦ୍ୟମରେ ପ୍ରଥମଥର ପାଇଁ ଏକ ଇଂରାଜ ଟେଷ୍ଟ କ୍ରିକେଟ ଦଳ ବାରବାଟୀ ଷ୍ଟାଡିୟମରେ ପୂର୍ବାଞ୍ଚଳ କ୍ରିକେଟ ଦଳ ସହିତ ଏକ ଆଞ୍ଚଳିକ ମ୍ୟାଚ ଖେଳିଥିଲେ । ଓଃ, ଆମ କ୍ରୀଡ଼ାପ୍ରେମୀମାନଙ୍କ ମନରେ କି ଆନନ୍ଦ, କି ଉନ୍ମାଦନା ! ଇଂଲଣ୍ଡ ଦଳରେ ତାଙ୍କର ଜଣେ ପ୍ରଲିଫିକ୍ ବ୍ୟାଟସ୍‌ମ୍ୟାନ୍ ଓ୍ୱାଲିଙ୍ଗଟନ୍ ଆସିଥା'ନ୍ତି । ଖେଳରେ ସିଏ ତ ବଲ୍ ପରେ ବଲ ବାଉଣ୍ଡରୀକୁ ପଠାଉଥା'ନ୍ତି, କିନ୍ତୁ ସେଇ ଖେଳ ଅବସରରେ ବିଭିନ୍ନ କୌତୂହଳ ସୃଷ୍ଟି କରି ଦର୍ଶକମାନଙ୍କୁ ହର୍ଷ ଆନନ୍ଦରେ ମଜ୍ଜାଇ ରଖିଥା'ନ୍ତି । ସେ ବର୍ଷ ରୁଷିଆର ଫୁଟ୍‌ବଲଟିମ ଅଲମ୍ପିକ୍‌ରେ ଯୋଗଦେବା ପଥରେ କଟକ ଠାରେ ଭାରତ ଏକାଦଶ ସହିତ ଏକ ପ୍ରଦର୍ଶନୀ ଫୁଟ୍‌ବଲ୍ ଖେଳ ଭୈରବବାବୁଙ୍କ ପ୍ରଚେଷ୍ଟାରେ ଅନୁଷ୍ଠିତ ହୋଇଥିଲା । ପ୍ରଥମାର୍ଦ୍ଧରେ ରୁଷିଆ ଗୋଟିଏ ଗୋଲ୍ ପଛରେ ଥାଇ ଦ୍ୱିତୀୟାର୍ଦ୍ଧରେ ତିନି ଏକ ବ୍ୟବଧାନରେ ବିଜୟୀ ହୋଇଥିଲା । କିଏ ବା ଜାଣିଥିଲା ସେ ବର୍ଷ ଭାରତୀୟ କ୍ରିକେଟ କଂଟ୍ରୋଲବୋର୍ଡ଼ର ନବାଚିତ ପ୍ରେସିଡେଣ୍ଟ ଶ୍ରୀ ଭୈରବ ଚନ୍ଦ୍ର ମହାନ୍ତି କ୍ରିକେଟବୋର୍ଡ଼ର କାର୍ଯ୍ୟଭାର ଗ୍ରହଣ କରିବା ପୂର୍ବରୁ ଓଡ଼ିଶା ତଥା ଭାରତର ଅଗଣିତ କ୍ରୀଡ଼ାପ୍ରେମୀମାନଙ୍କୁ ଶୋକସାଗରରେ ଭସାଇ ଏମିତି ଅବେଳରେ ପରପାରିକୁ ଚାଲିଯିବେ !!

## କଟକ ରସଗୋଲା ଓ କଲିକତୀ ରସଗୋଲା

କି ଲକ୍ଷ୍ୟ, କି ଉଦ୍ଦେଶ୍ୟ ନେଇ ଏଇ ରଚନାଟିର ଉପସ୍ଥାପନା କରାଯାଉଛି, ସେ କଥା ତ ପ୍ରାକ୍‌କଥନରେ କୁହାଯାଇଚି । ତଥାପି ବେଳେବେଳେ ମନରେ ଆଶଙ୍କା ହୁଏ, କୋଉଠି କିଛି ଭୁଲ୍ ଭ୍ରାନ୍ତି ରହିଯାଉଚି କି ? ପ୍ରାତଃସ୍ମରଣୀୟ ଭୈରବବାବୁଙ୍କ ଉପାଖ୍ୟାନର ତ ସମାପ୍ତି ଘଟିଚି । ତଥାପି ଏବେ ଯେଉଁ ବିଷୟଟିର ଅବତାରଣା କରାଯାଉଛି, ସେଥିସହିତ ଭୈରବବାବୁ କିଛିମାତ୍ରାରେ ଜଡ଼ିତ ଥିଲେ । କଲିକତାର ଦୁଇଟି ବଙ୍ଗ ଦମ୍ପତି ଆସି ଭୈରବବାବୁଙ୍କର ଅତିଥି ହୋଇଥା'ନ୍ତି । ସେ ଦିନ ମୁଁ ଭୈରବବାବୁଙ୍କ ପାଖରେ ଥାଏ । ଭୈରବବାବୁ ମତେ କହିଲେ—"କଲିକତାରୁ ଏମାନେ ଆସିଚନ୍ତି । ସେମାନଙ୍କର ରସଗୋଲା ଖାଲି ଭାରତ ନୁହେଁ, ଭାରତ ବାହାରେ ମଧ୍ୟ ପ୍ରସିଦ୍ଧି ଲାଭ କରିଚି । ତମେ ତ ବାଲୁବଜାର ଅଞ୍ଚଳରେ ରହୁଚ, ଯେଉଁଠି ରଙ୍ଗିଆ ଦୋକାନ ପ୍ରଭୃତି ଭଲ ମିଠା ଦୋକାନ ଅଛି । ତମେ କୁହ ଏମାନଙ୍କୁ ଆମେ କି ମିଠା ଖୁଆଇବା ? ଏ ପର୍ଯ୍ୟନ୍ତ ଓଡ଼ିଶା ବାହାରେ ପାଟନାରେ ରହି ମୁଁ ଏ ସବୁ ଭୁଲି ଯାଉଚି" ।...ମୁଁ କହିଲି, ଏକଥା ଠିକ୍ ଯେ ସେମାନଙ୍କର କଲିକତୀ ରସଗୋଲାର ନାଁ ଡାକ୍ ଅଛି । କିନ୍ତୁ ଆମ କଟକ ସହର କଲେଜଛକର ବାଞ୍ଛା ସାହୁ ଦୋକାନ, ଆମ ବାଲୁବଜାରର ରଙ୍ଗିଆ ଦୋକାନର ରସଗୋଲା, କ୍ଷୀର୍‌ମୋହନ ବା ରାଜଭୋଗ, ପୁଣି ହାଇକୋର୍ଟ ପାଖ ଗୋବିନ୍ଦ ସାହୁଙ୍କ ଦୋକାନର ସ୍ପଞ୍ଜ ରସଗୋଲାର ପରିଚୟ ଆପଣମାନଙ୍କର ଅତିଥି ନିଶ୍ଚୟ ପାଇ ନାହାନ୍ତି । ମୁଁ ଏ ତାଲିକା କରି ଦେଉଚି । ଆପଣ ରଙ୍ଗିଆ ଦୋକାନରୁ ଏ ମିଠା ମଗେଇ ଆଣନ୍ତୁ ।...ଭୈରବବାବୁ ଟିକେ ହସି ଲୋକ ପଠାଇଲେ । ଏହାର କିଛିଦିନ ପରେ ଯେତେବେଳେ ତାଙ୍କ ସହିତ ଭେଟହେଲା, ଭୈରବବାବୁ ଅତି ଖୋଲାମନରେ ମତେ ଚହିଲେ—"ତୁମ କଥା ଠିକ୍ । ଆମ ଏଠିକା ଛେନା-ଜିନିଷ ବିଶେଷତଃ ରସଗୋଲା ରାଜଭୋଗର ପ୍ରଶଂସା ସେମାନେ ମୁକ୍ତକଣ୍ଠରେ କରିଯାଇଚନ୍ତି । ତାଙ୍କ କଥାରୁ ମୁଁ ଜାଣିଲି, କଲିକତା ରସଗୋଲା ଅପେକ୍ଷା ଆମର ଏଠିକା ରସଗୋଲାକୁ ସେମାନେ ବେଶୀ ପସନ୍ଦ କରନ୍ତି ।"

## ଇଂରେଜୀ ଭାଷା ସାହିତ୍ୟର କିମ୍ବଦନ୍ତୀ ଖ୍ୟାତ ଲେଖକ ଭାରତୀୟ ବଙ୍ଗାଳୀ ନୀରଦ ଚୌଧୁରୀ

ଯେଉଁ ପ୍ରସଙ୍ଗଟିର ଅବତାରଣା ମୁଁ ଏଠି କରିବାକୁ ଯାଉଚି, ଉପରୋକ୍ତ ଘଟଣାଟି ତା'ର ଉପକ୍ରମଣିକା ମାତ୍ର । ମୁଖ୍ୟ ପ୍ରସଙ୍ଗଟି ହେଲା—ଏହାର କିଛି

କାଲ ପରେ ମୁଁ ଇଲ୍‌ଷ୍ଟ୍ରେଟେଡ ଉଇକ୍ଲି ପତ୍ରିକାରୁ ଶ୍ରୀଯୁକ୍ତ ନୀରଦ ଚୌଧୁରୀଙ୍କ ଏକ ରଚନା ପଢ଼ିଲି ।...ଦୀର୍ଘକାଳ ଧରି ବିଲାତର ଅକ୍‌ସଫୋର୍ଡ଼ ଠାରେ ସ୍ୱେଚ୍ଛାକୃତ ନିର୍ବାସିତ ଜୀବନଯାପନକାରୀ ପ୍ରଥିତଯଶା ଭାରତୀୟ ଖ୍ୟାତିସମ୍ପନ୍ନ ଶ୍ରାବକତାର ନିନ୍ଦୁକ ବଙ୍ଗସନ୍ତାନ ନୀରଦ ଚୌଧୁରୀ ତାଙ୍କର ଏଇ ରଚନାରେ ଭାରତୀୟ ଭୋଜନ ପଦ୍ଧତିକୁ ଉଭୟ କଳା ଓ ବିଜ୍ଞାନ ଦୃଷ୍ଟିରୁ ଆଲୋଚନା କରିଛନ୍ତି । "କ୍ଲାଇବ୍ ଅଫ୍ ଇଣ୍ଡିଆ", "ପ୍ୟାସେଜ ଟୁ ଇଂଲଣ୍ଡ" ଓ "ଅଟୋ ବାୟୋଗ୍ରାଫୀ ଅଫ୍ ଆନ୍ ଅନ୍‌ନୋନ ଇଣ୍ଡିଆନ୍" ପ୍ରଭୃତି ମହାର୍ଘ ପୁସ୍ତକସବୁର ଲେଖକ ଉପରୋକ୍ତ ରଚନାଟିରେ ଭାରତୀୟ ଖାଦ୍ୟ ଓ ଭୋଜନର ସ୍ୱାଦ ସମ୍ପର୍କରେ ତାଙ୍କର ଏକ ବିଶ୍ଳେଷଣାତ୍ମକ ଆଲୋଚନା ଉପସ୍ଥାପନା କରିଚନ୍ତି ।

ଛେନା ତଥା ଅନ୍ୟାନ୍ୟ ଦୁଗ୍ଧ ଉପକରଣରୁ ପ୍ରସ୍ତୁତ, ବଙ୍ଗାଳୀମାନଙ୍କର ଅତି ପ୍ରିୟ ତଥା ଅତି ପ୍ରସିଦ୍ଧ ମିଷ୍ଟାନ୍ନ ରସଗୋଲା, ସନ୍ଦେଶ ଓ ଅନ୍ୟ ମିଷ୍ଟାନ୍ନ ସବୁର ପ୍ରସଙ୍ଗ ଉତ୍‌ଥାପନ କରି ଶ୍ରୀଯୁକ୍ତ ଚୌଧୁରୀ କହିଛନ୍ତି—ଏସବୁ ମିଷ୍ଟାନ୍ନ ବଙ୍ଗ ସହରମାନଙ୍କରେ ପ୍ରସ୍ତୁତ ହୁଏ । କିନ୍ତୁ ହାୟ, ଛେନା ଓ ଦୁଗ୍ଧ ଉପାଦାନରେ ପ୍ରସ୍ତୁତ ମିଷ୍ଟାନ୍ନର ଏକ ପୀଠସ୍ଥଳୀ ରୂପେ ବଙ୍ଗଦେଶର ପଡ଼ୋଶୀ ରାଜ୍ୟ ଓଡ଼ିଶା—ବିଶେଷତଃ ଉପକୂଳ ଓଡ଼ିଶାର କଟକ, ପୁରୀ ଓ ବାଲେଶ୍ୱର ଯେ ବହୁକାଳରୁ ସୁପ୍ରସିଦ୍ଧ, ତା'ର ସୂଚନା ନୀରଦବାବୁଙ୍କ ଲେଖାମଧ୍ୟରେ କୁତ୍ରାପି ଦୃଷ୍ଟିଗୋଚର ହେଲା ନାହିଁ କାହିଁକି ? ବିଭିନ୍ନ ଦୃଷ୍ଟିକୋଣରୁ ଓଡ଼ିଶା ଓ ବଙ୍ଗ ଦେଶର ସମ୍ପର୍କ ସୁନିବିଡ଼ । କଟକ ସହରରେ ବହୁକାଳରୁ ବହୁ ପଦସ୍ଥ ବଙ୍ଗୀୟ ପରିବାର ବସବାସ କରି ରହିଆସୁଚନ୍ତି । ପୁଣି ଏକଥା ଠିକ୍ ଯେ, ପ୍ରାୟ ଷଷ୍ଠ ଦଶକର ଶେଷ ପର୍ଯ୍ୟନ୍ତ ବିଭିନ୍ନ କର୍ମ ଉପଲକ୍ଷେ କଲିକତାରୁ ବହୁ ବିଶିଷ୍ଟ ବଙ୍ଗାଳୀବାବୁମାନେ ଶନିବାର ହାଓ୍ୱାଡ଼ା—ପୁରୀ ଏକ୍‌ସପ୍ରେସରେ ପ୍ରାତଃକାଳରେ କଟକରେ ପହଞ୍ଚି ପାର୍କ ଛକ ନିକଟସ୍ଥ ଦେ'ଜ୍ ହୋଟେଲରେ ରହି ହୋଟେଲର ପାଚକ ବାମଦେବ ନନା ହାତରୁ ରୋହି ମାଛର ଝୋଲ ଓ ରଙ୍ଗିଆ, ବାଞ୍ଛା ସାହୁ ଆଦି ଗୁଣିସ୍ୱାଦ ମିଷ୍ଟାନ୍ନ ସମ୍ରାଟମାନଙ୍କ ହାତର ରସଗୋଲା ଓ ଅନ୍ୟ ମିଷ୍ଟାନ୍ନ ଭୋଜନ କରି ପରିତୃପ୍ତ ଚିତ୍ତରେ ରବିବାର ଏକ୍‌ସପ୍ରେସରେ କଲିକତା ଫେରିଯାଉଥିଲେ । ଅଥଚ ଏହାର ପ୍ରଶସ୍ତି ନୀରଦବାବୁଙ୍କ ଲେଖନୀର ସୀମାସ୍ପର୍ଶ କରିପାରିଲା ନାହିଁ ।...ହଁ, କଲିକତା ରସଗୋଲା ଓ କଟକ ରସଗୋଲା । ଏ ଦୁଇ ରସଗୋଲା ମଧ୍ୟରେ କିଛି ତଫାତ୍ ଅଛି କି ? ନିଶ୍ଚୟ ଅଛି । ଏଇ ତଫାତକୁ ପ୍ରତିପାଦିତ କରିବା ପାଇଁ କୌଣସି ରସାୟନିକ ପ୍ରକ୍ରିୟାର ପ୍ରୟୋଜନ ନାହିଁ । ଅଛି ସାମାନ୍ୟ ଶାରୀରିକ ପ୍ରଚେଷ୍ଟା । କଲିକତାର ଏକ ସୁପ୍ରତିଷ୍ଠିତ ମିଷ୍ଟାନ୍ନ ଭଣ୍ଡାରର ଗୋଟିଏ

ରସଗୋଲା ଆଣି ଖା'ନ୍ତୁ । ନିଶ୍ଚିତ ଭାବେ ରସଗୋଲା ଏକ ନରମ ପଦାର୍ଥ । କଲିକତାର ସେଇ ଶୁଭ୍ର ସୁନ୍ଦର ରସଗୋଲାଟିକୁ ପାଟିରେ ଦେଇ ଖାଇବାର ଉପକ୍ରମ କଲେ ଆପଣଙ୍କୁ ନିଶ୍ଚୟ ଦାନ୍ତର କିଛି, ମାନେ ସାମାନ୍ୟ କିଛି କସରତ କରିବାକୁ ପଡ଼ିବ—ମନେରଖନ୍ତୁ, ସାମାନ୍ୟ କିଛି କସରତ ! ତା'ପରେ ରସଗୋଲାଟି ଆପେ ଆପେ ଏହାର ଅତୁଳନୀୟ ସ୍ୱାଦ ସହିତ ଆପଣଙ୍କ ଉଦରସ୍ଥ ହୋଇଯିବ ।···କିନ୍ତୁ କଟକ ରସଗୋଲା ! (ମୁଁ କଟକର ବର୍ତ୍ତମାନର ରସଗୋଲା କଥା କହୁନି, କହୁଚି ପ୍ରାୟ ପ୍ରଚାଳିଶ ବର୍ଷ ତଳର ରସଗୋଲା କଥା) ସେହିପରି ଆପଣ କଟକ ରସଗୋଲା ଗୋଟିଏ ପାଟିକି ନିଅନ୍ତୁ । ନା, ଏ ରସଗୋଲା ପାଇଁ ଦାନ୍ତର ସାମାନ୍ୟତମ କସରତର ବି ଲୋଡ଼ା ନାହିଁ । କେବଳ ତଳ ଉପର ଦୁଇ ପାଟିର ସ୍ୱାଭାବିକ ଈଷତ୍ ଚାପ । ବାସ୍ ! ରସଗୋଲାଟି ସେମିତି ତାର ଅଭାବନୀୟ ସ୍ୱାଦ ସହିତ ଆପଣଙ୍କ ଉଦରସ୍ଥ ହୋଇଯିବ । ଏଇଥିରୁ ଏକଥା ସ୍ପଷ୍ଟ ପ୍ରତୀୟମାନ ହେଉଛି ଯେ, କଟକର ରସଗୋଲା ପଡ଼ୋଶୀ କଲିକତା ରସଗୋଲା ପରି ଏକ ସମ୍ମାନଜନକ ସ୍ଥାନ ଅଧିକାର କରି ରହିଛି । ଏକଥା ଏଇଠି କହିରଖେ, କଲିକତାର ରସଗୋଲା ପ୍ରାୟ ମଇଁଷି କ୍ଷୀରରେ ତିଆରି । ସେଥିପାଇଁ ଟିକେ ଟାଣ ଓ ଖରଖର । କିନ୍ତୁ କଟକ ରସଗୋଲା ପ୍ରାୟ ଗୋଦୁଗ୍ଧରେ ତିଆରି, ସେଥି-ପାଇଁ କଅଁଳ ଓ ପୁର୍ପୁର୍ । କଟକର ଛେନାଗଜାର ପଟାନ୍ତର ଏ ଭୂ-ଭାରତରେ ନାହିଁ । ଛେନାଜାତ ଏଇ ମିଷ୍ଟାନ୍ନଟିର ଆକାର ହେଉଛି ବର୍ଗାକାର । କିନ୍ତୁ ଏହାର ପ୍ରସ୍ତୁତି ପ୍ରଣାଳୀ ଏପରି ଯେ, ଏହା ରସଗୋଲା ପରି ଶୁଭ୍ର ନୁହେଁ, ଏହାର ରଙ୍ଗ ଈଷତ୍ ବାଦାମୀ । ମଝିରୁ ଭାଙ୍ଗିଦେଲେ ମଧୁକୋଷ ପରି ଭିତରେ ମୋଟା ଶିରା ବାନ୍ଧି ରହିଥାଏ । ସ୍ୱାଦ ଦୃଷ୍ଟିରୁ ବାସ୍ତବରେ ଏହା ଅତୁଳନୀୟ । କେବଳ ଓଡ଼ିଶା ଛଡ଼ା ଭାରତର ଅନ୍ୟ କୌଣସି ପ୍ରାନ୍ତରେ ଛେନାଗଜା ପାଇବେ ନାହିଁ । ଅଥଚ ସେଦିନ ଆମ ପାର୍ଲାମେଣ୍ଟ ସଦସ୍ୟମାନଙ୍କର ଗୋଟିଏ ପ୍ରତିନିଧି ଦଳ ଏକ ସୌଜନ୍ୟମୂଳକ ଭ୍ରମଣରେ ଭାରତର ବିଭିନ୍ନ ରାଜ୍ୟକୁ ଆସି ପଶ୍ଚିମବଙ୍ଗରେ ପହଞ୍ଚିଲେ । ମୁଖ୍ୟମନ୍ତ୍ରୀ ଥା'ନ୍ତି ଡକ୍ଟର ବିଧାନ ରାୟ । ପ୍ରତିନିଧି ଦଳଙ୍କ ସମ୍ମାନରେ ଅନୁଷ୍ଠିତ ରାଜକୀୟ ମଧ୍ୟାହ୍ନ ଭୋଜନ ଅବସରରେ ମୁଖ୍ୟମନ୍ତ୍ରୀ ଡକ୍ଟର ରାୟ ଗୋଟିଏ ବିରାଟ ରୌପ୍ୟଥାଳି-ପୂର୍ଣ୍ଣ ରସଗୋଲା ଆଗେଇଦେଇ କହିଲେ—"ହିୟର୍ ଇଟ୍ ଇଜ୍ ରସଗୋଲ୍—ବେଙ୍ଗଲସ ଗିଫ୍ଟ ଟୁ ଇଣ୍ଡିଆ !"··· ଏ କାହାଣୀଟି ଶୁଣି ମୋ ମନରେ ଏମିତି ଗୋଟିଏ ଚୈତନ୍ୟ ସୃଷ୍ଟି ହୋଇଥିଲା ଯେ, ଯଦି ଏହିପରି ଏକ ସମ୍ମାନିତ ପ୍ରତିନିଧିଦଳ ଓଡ଼ିଶା ଆସିବେ, ତେବେ ସେମାନଙ୍କ ଅଭ୍ୟର୍ଥନା ପାଇଁ ଉଦ୍ଦିଷ୍ଟ ଭୋଜି ଆସରରେ ଓଡ଼ିଆ ଜାତିର ଆଭିଜାତ୍ୟ-

ସମ୍ପନ୍ନ ମିଷ୍ଟାନ୍ନ ରସଗୋଲା, କ୍ଷୀର୍‌ମୋହନ, ଛେନାଗଜା ଓ ଛେନା ପୋଡ଼ପିଠା ସବୁର ଯଥୋଚିତ ସମ୍ମାନଜନକ ପରିଚୟ ପ୍ରଦାନ କରି କେହି ନେତୃସ୍ଥାନୀୟ ବ୍ୟକ୍ତି ଏସବୁ ମିଷ୍ଟାନ୍ନ ସେମାନଙ୍କୁ ପରିବେଷଣ କରିବେ କି ?...ବୋଧହୁଏ ନୁହେଁ । ଆମମାନଙ୍କର ଏଇ ହୀନମ୍ମନ୍ୟତାର ଅନୁଚିନ୍ତାରୁ "କିଏ କାହାର" ବୋଲି ଗୋଟିଏ ଚଳଚ୍ଚିତ୍ରରେ (ମୁଁ ଏହାର ଲେଖକ ଥିଲି) ମୁଁ କଟକ ସହରର ଏଇ ମିଷ୍ଟାନ୍ନ ପ୍ରସଙ୍ଗ ଓ ଏହାର ଉତ୍କର୍ଷ ବିଷୟ ଉଲ୍ଲେଖ କରିଥିଲି । ଚଳଚ୍ଚିତ୍ରଟି ବୋଧହୁଏ ସେଇ ଷଷ୍ଠ ଦଶକରେ ନିର୍ମିତ ହୋଇଥିଲା । ଏ ଭିତରେ ଚଳଚ୍ଚିତ୍ର କଥାଟି ମୁଁ ସମ୍ପୂର୍ଣ୍ଣରୂପେ ଭୁଲିଯାଇଥିଲି । ଏଇ ନିକଟରେ ଚଳଚ୍ଚିତ୍ରଟି ଦୂରଦର୍ଶନରେ ପ୍ରଦର୍ଶିତ ହେଲା । ସେଥିରେ ଦେଖିଲି, କଟକ ରଙ୍ଗିଆ ଦୋକାନ ରସଗୋଲାର ଏକ ଆମୋଦପୂର୍ଣ୍ଣ ଆଲୋଚନା ଗୋଟିଏ ଦୃଶ୍ୟରେ ମୁଁ କରିଛି । ଏତିକ କରିପାରିଛି ବୋଲି ନିଶ୍ଚୟ କିଛି ଆତ୍ମସନ୍ତୋଷ ମୋ ମନରେ ଆସିଲା । ନିରପେକ୍ଷ ପର୍ଯ୍ୟାଲୋଚନାରୁ ଯେ କୌଣସି ବ୍ୟକ୍ତି ହୃଦୟଙ୍ଗମ କରିପାରିବେ ଯେ, ବଙ୍ଗଦେଶ ପରି ଓଡ଼ିଶାରେ ଏକ ଅତି ଉଚ୍ଚମାନର ଛେନାଜାତ ମିଷ୍ଟାନ୍ନ ସାମ୍ରାଜ୍ୟ ରହିଛି । ସେଥିପାଇଁ ରସଗୋଲା ମିଠା ସମ୍ପର୍କରେ ସମ୍ମାନନୀୟ ଲେଖକ ଶ୍ରୀ ନୀରଦ ଚୌଧୁରୀ ଓ ପୂଜ୍ୟ ନେତା ଡକ୍ଟର ବିଧାନ ରାୟ ଏ ସମ୍ପର୍କରେ ଓଡ଼ିଶାକୁ ଯେଉଁ ନିମ୍ନସ୍ଥାନରେ ନେଇ ରଖିଛନ୍ତି, ତାର ପ୍ରତିବାଦ ମାତ୍ର ଏଇ କେଇପଦ କଥାରେ କରି ବା କରିହେବ ? କେବଳ ଏଇ ପ୍ରସଙ୍ଗ ନୁହେଁ, ସର୍ବଭାରତୀୟ ସ୍ତରରେ ଓଡ଼ିଶା ମଧ୍ୟ ଉପେକ୍ଷିତ ହୋଇ ଆସୁଛି ।

### ଓଡ଼ିଶା ବହୁକ୍ଷେତ୍ରରେ ଉପେକ୍ଷିତ

କଲିକତା ଯୁବ କ୍ରୀଡ଼ାଙ୍ଗନ ଷ୍ଟାଡ଼ିୟମ୍‌ରେ ଏକ ଜାତୀୟ କ୍ରୀଡ଼ା ଉତ୍ସବର ପ୍ରାରମ୍ଭିକ ଶୋଭାଯାତ୍ରାରେ ପ୍ରତ୍ୟେକ ରାଜ୍ୟର କ୍ରୀଡ଼ାବିତ୍ ଦଳ ନିଜ ନିଜ ରାଜ୍ୟର ବର୍ଣ୍ଣ କ୍ରମରେ ଚାଲିଥା'ନ୍ତି ଓ ସେମାନଙ୍କ ସମ୍ପର୍କରେ ବର୍ଣ୍ଣନା ଦୂରଦର୍ଶନରେ ଦିଆଯାଉଥାଏ । ଟି.ଭି.ରେ ଆମେ ଦେଖୁଚୁ କିଛିଟା ଦୂରରୁ ଓଡ଼ିଶାଦଳ ଆସୁଛନ୍ତି । ଓଡ଼ିଶା ଦଳର ବର୍ଣ୍ଣନା ଶୁଣିବା ପାଇଁ ଆମେ ଉତ୍‌ଫୁଲ୍ଲ ହୋଇ ରହିଁରହିଛୁ । କିନ୍ତୁ, ଏ କ'ଣ !...ଓଡ଼ିଶା ଦଳ ତ ଆସୁଥିଲେ—ତା'ପରେ ହଠାତ୍ ତାଙ୍କର ଚିହ୍ନବର୍ଣ୍ଣ ଆମେ ଟି.ଭି.ରେ ଦେଖିଲୁ ନାହିଁ । ଓଡ଼ିଶା ଦଳ ସପକ୍ଷରେ ପଦେ ବର୍ଣ୍ଣନା ବି ନାହିଁ । ବୁଝିଲୁ, କ୍ୟାମେରା ଓଡ଼ିଶାକୁ ଜାଣିଶୁଣି ସ୍କିପ୍ କରିଯାଇଛି ଓ କ୍ୟାମେରା ସେଠୁ ଅପସରିଯାଇ ପଡ଼ିଛି ଓଡ଼ିଶା ପଛେ ପଛେ ଆସୁଥିବା ପଞ୍ଜାବଦଳ ଉପରେ । ବାସ୍ତବିକ, ଯେଉଁଠି ପଞ୍ଜାବ, ସେଠି ଓଡ଼ିଶାର ସ୍ଥା.. କାହିଁ ? ଠିକ୍

ଏହାପରେ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଏକ ଶପଥପାଠ ଉତ୍ସବର ଟି.ଭି. ରିପୋର୍ଟରେ ଓଡ଼ିଶାର ଜଣେ କେନ୍ଦ୍ରମନ୍ତ୍ରୀଙ୍କ ଶପଥପାଠ ଆମେ ଦେଖିପାରିଲୁ ନାହିଁ । ଅଥଚ ଅନ୍ୟ ସବୁ ରାଜ୍ୟର କେନ୍ଦ୍ର-ମନ୍ତ୍ରୀମାନଙ୍କ ଶପଥପାଠ ଆମେ ଦେଖିଚୁ । ଏମିତି ବହୁ କ୍ଷେତ୍ରରେ ଓଡ଼ିଶାକୁ ଉପେକ୍ଷା କରାଯାଉଛି । ଏସବୁ ଆମର ଦେହସୁହା ହୋଇଗଲାଣି ।···ଶ୍ରୀଯୁକ୍ତ ଚୌଧୁରୀ ତାଙ୍କ ରଚନାର ଗୋଟିଏ ସ୍ଥାନରେ ଲେଖିଛନ୍ତି ଯେ, ଯଦି ବଙ୍ଗାଳୀମାନେ ମତ୍ସ୍ୟ ଓ ବ୍ୟଞ୍ଜନଭୋଜୀ ବୋଲି ଗର୍ବ କରନ୍ତି, ସେଇପରି ସେମାନେ ନିଶ୍ଚୟ ଏକଥା ଅସ୍ୱୀକାର କରିପାରିବେ ନାହିଁ ଯେ, ଜଣେ ତାମିଲ୍‌ର ମଧ୍ୟ ସେହିପରି ରସମ୍ ଓ ଇଡ୍‌ଲି ଖାଇ ଗର୍ବ କରିବାର ଅଧିକାର ରହିଛି । ଶ୍ରୀଯୁକ୍ତ ଚୌଧୁରୀ ତାଙ୍କ ଲେଖାରେ ଦକ୍ଷିଣ ଭାରତୀୟ ଖାଦ୍ୟପ୍ରଣାଳୀ ସମ୍ପର୍କରେ କିଛି ଉଲ୍ଲେଖ କରି ନାହାଁନ୍ତି ବୋଲି ବୋଧହୁଏ ସେମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ରସମ୍ ଓ ଇଡ୍‌ଲି କାହାଣୀ ଉଲ୍ଲେଖ କରିଛନ୍ତି । କିନ୍ତୁ ଓଡ଼ିଶାର ମିଷ୍ଟାନ୍ନ !!

## ସ୍ୱାଧୀନତା ପୂର୍ବର ଭାରତ ଓ ମୁଁ

ମୋର ଦୁର୍ଭାଗ୍ୟ, ଆମ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ସ୍ୱାଧୀନତା ଲାଭ ଅର୍ଥାତ୍ ଊଣେଇଶି ଷଡ଼ସତଚାଳିଶ ଅଗଷ୍ଟ ପନ୍ଦର ତାରିଖଠାରୁ ବେଶ୍ କିଛିଦିନ ପର୍ଯ୍ୟନ୍ତ ମୁଁ କଟକରେ ନ ଥିଲି । "କଟକରେ ନ ଥିଲି"—ଏକଥା କହିବାର ମର୍ମ ହେଉଚି—ଊଣେଇଶି ଶହ ତିରିଶି ମସିହା ଜାନୁଆରି ମାସ ଏଗାର ତାରିଖରେ ମୁଁ ପଢ଼ିବାକୁ କଟକ ଆସିଲି । ସେଇ ଦିନରୁ ଏ ଅବଧି ମୋ' ଜୀବନର ସବୁକିଛି ସାଧ ଓ ସାଧନାର ଉପଲବ୍ଧି ପାଇଁ ମୁଁ ପ୍ରାଚୀନ କଟକ ସହରକୁ ମୋର କର୍ମଭୂମି ରୂପେ ଗ୍ରହଣ କରିନେଇଚି । ଦେଶର ସ୍ୱାଧୀନତା ସଂଗ୍ରାମର ସ୍ପର୍ଶଲାଭ କରିବା ସଙ୍ଗେ ସଙ୍ଗେ ସ୍ୱାଧୀନ ଭାରତର ସ୍ପର୍ଶ ପାଇ ଆସିଚି । କିନ୍ତୁ ମୋର ଦୁର୍ଭାଗ୍ୟ, ଚତୁର୍ଥ ଦଶନ୍ଧିରେ ସ୍ୱାଧୀନତା ପ୍ରାପ୍ତିର ସେଇ ମହାର୍ଘ ସମୟଟିକ ମୁଁ ଓଡ଼ିଶା ବାହାରେ ମଧ୍ୟପ୍ରଦେଶର ଏପରି ଏକ ଅଞ୍ଚଳରେ ରହୁଥିଲି ଯେଉଁଠି ସ୍ୱାଧୀନତାଲାଭ ଦିବସଟିର କଥା କେବଳ କାନରେ ଶୁଣିବା ଓ ଏକ ସାପ୍ତାହିକ ହିନ୍ଦି ସମ୍ବାଦପତ୍ରରୁ ପଢ଼ିବା ବ୍ୟତୀତ ଅନ୍ୟ କୌଣସି ମାଧ୍ୟମର ସୁଯୋଗ ଲାଭ କରିବାର ଭାଗ୍ୟ ମୋର ନ ଥିଲା । ଦ୍ୱିତୀୟ ମହାଯୁଦ୍ଧ ଓ ଆମର ବୟାଳିଶି ଆନ୍ଦୋଳନ ଭାରତର ସ୍ୱାଧୀନତା ଲାଭର ଦ୍ୱାର ଉନ୍ମୁକ୍ତ କରିଦେଲା ବୋଲି କୁହାଯାଇପାରେ । ପୁଣି ଏ ଶତାବ୍ଦୀର ଚତୁର୍ଥ ଦଶନ୍ଧିରେ ଦ୍ୱିତୀୟ ମହାଯୁଦ୍ଧର ସମାପ୍ତି ଓ ବୟାଳିଶି ଆନ୍ଦୋଳନର ସମାପ୍ତି ମଧ୍ୟ ଘଟିଥିଲା । ଏ ଦୁଇଟିର

ଯୋଗାଯୋଗ ସହିତ ଭାରତର ସ୍ୱାଧୀନତାପ୍ରାପ୍ତିର ଏକ ଯୋଗସୂତ୍ର ସ୍ଥାପିତ ହୋଇଗଲା । ଯୁଦ୍ଧ ପରେ ଇଂଲଣ୍ଡର ସାଧାରଣ ବା ପାର୍ଲିଆମେଣ୍ଟ ନିର୍ବାଚନ ଅନୁଷ୍ଠିତ ହେଲା । ଏ ନିର୍ବାଚନରେ ଚର୍ଚ୍ଚିଲ୍ ନିଜେ ଜୟଯୁକ୍ତ ହେଲେ, କିନ୍ତୁ ତାଙ୍କର ଜାତୀୟ ଦଳ ସଂଖ୍ୟାଗରିଷ୍ଠତା ଲାଭ କରିପାରିଲା ନାହିଁ । ଏହା ସମଗ୍ର ପୃଥିବୀରେ ଏକ ଚମକପ୍ରଦ ବିସ୍ମୟ ସୃଷ୍ଟି କରିଥିଲା । କାରଣ ସମସ୍ତ ବିଶ୍ୱଯୁଦ୍ଧ କାଳ ଭିତରେ ଚର୍ଚ୍ଚିଲ୍ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଥିଲେ । ଜର୍ମାନୀର ଇଂଲଣ୍ଡ ଉପରେ କ୍ରମାଗତ ଆକ୍ରମଣ ଯୋଗୁଁ ଇଂଲଣ୍ଡର ସାମରିକ ଶକ୍ତି ଦୁର୍ବଳ ହୋଇ ପଡ଼ିଥିଲା, କିନ୍ତୁ ନିଜେ ଚର୍ଚ୍ଚିଲ୍ ଏ ଦୁର୍ବଳତାକୁ କେବେ ସ୍ୱୀକାର କରିନାହାଁନ୍ତି । ଚର୍ଚ୍ଚିଲଙ୍କୁ ପୃଥିବୀର ଜଣେ ଅନ୍ୟତମ ଶ୍ରେଷ୍ଠ ବକ୍ତା ବୋଲି କୁହାଯାଏ । ତାଙ୍କର ଶବ୍ଦଭଣ୍ଡାର ବା ଭୋକାବୁଲାରି ସମ୍ପର୍କରେ ସ୍ୱୟଂ ଜର୍ଜ ବର୍ଣ୍ଣାଡ଼୍ ଶ କହିଚନ୍ତି ଯେ, ଚର୍ଚ୍ଚିଲ୍ ପ୍ରାୟ ତିରିଶ ହଜାର ଇଂରାଜୀ ଶବ୍ଦର ଅଧିକାରୀ ଓ ସେଇଥିପାଇଁ ସେ ହେଉଚନ୍ତି ଜଣେ ବରିଷ୍ଠ ବକ୍ତା । ଜର୍ମାନ୍ ସହିତ ଯୁଦ୍ଧରେ ଏକ ଦୁର୍ବଳ ଅନ୍ତଃସାରହୀନ ଓ ପରାହତ ଇଂଲଣ୍ଡକୁ ନିଜ ପକେଟ ଭିତରେ ପୂରାଇ ସୁବକ୍ତା ଚର୍ଚ୍ଚିଲ ନିଜର ଡାହାଣ ହାତ ବଣିଆଙ୍ଗୁଠି ଓ ମଧ୍ୟମ ଆଙ୍ଗୁଠିକୁ ଇଂଲିଶ୍ 'V' (ଭି) ଆକାରରେ ଫର୍କଟା କରି ଇଂଲଣ୍ଡର ସବୁଠି ବକ୍ତୃତା ଦେଇ ବୁଲୁଥିଲେ ଓ ବକ୍ତୃତା ଶେଷରେ ଏଇ 'V' ଚିହ୍ନଟିକୁ ଶ୍ରୋତାମାନଙ୍କୁ ଦେଖାଇ ଇଂଲଣ୍ଡର 'V' ବା Victory (ଜୟ) ନିଶ୍ଚିତ ବୋଲି କହୁଥିଲେ । ଯୁଦ୍ଧରେ ଇଂଲଣ୍ଡର ଜୟ ହେଲା ସତ, କିନ୍ତୁ ନିର୍ବାଚନରେ ତାଙ୍କ ଜାତୀୟ ଦଳ ପରାଜିତ ହେଲା । ଇଂଲଣ୍ଡର ଶାସନ କ୍ଷମତାକୁ ଆସିଲେ ଲେବର ବା ଶ୍ରମିକଦଳ । ଶ୍ରମିକଦଳର ନେତା ଥିଲେ—କ୍ଲମେଣ୍ଟ ଆଟ୍ଲି । ସେଇ ହେଲେ ଇଂଲଣ୍ଡର ପ୍ରଧାନମନ୍ତ୍ରୀ । ଏକଥା ପ୍ରାୟ ସର୍ବଜନବିଦିତ ଯେ, ଜାତୀୟଦଳ ସବୁଦିନେ ଭାରତର ସ୍ୱାଧୀନତାକୁ ବିରୋଧ କରୁଥିଲେ । ଅନ୍ୟ ପକ୍ଷରେ ଶ୍ରମିକଦଳ ଭାରତ ପ୍ରତି କୋହଳ ନୀତି ଅନୁସରଣ କରୁଥିଲେ । ଜାତୀୟଦଳ କ୍ଷମତାରେ ଥିଲାବେଳେ ଶ୍ରୀଯୁକ୍ତ ଆମେରୀ ଭାରତ ମନ୍ତ୍ରୀ ବା (Secretary for the state of India) ଥିଲେ । ସେ ପ୍ରତିଜ୍ଞା କରି କହୁଥିଲେ ଯେ, ସେ ଭାରତମନ୍ତ୍ରୀ ଥିବା ପର୍ଯ୍ୟନ୍ତ ଭାରତ ସ୍ୱାଧୀନ ହୋଇ-ପାରିବ ନାହିଁ । ସେହିପରି ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ମଧ୍ୟ କହୁଥିଲେ—"ଇଂରେଜ ରାଜତ୍ୱର ବିଲୟ ସାଧନ ପ୍ରକ୍ରିୟାରେ ମୁଁ ଅଧ୍ୟକ୍ଷତା କରିବା ପାଇଁ ଏଠି ବସିନାହିଁ ।" (I am not here to preside over the liquidation of the British India) ମାତ୍ର ଶ୍ରମିକଦଳ ଶାସନକୁ ଆସିବାପରେ ଭାରତର ସ୍ୱାଧୀନତା ପ୍ରସଙ୍ଗ କଥା ତିନ୍ଦୟ ଇଂଲଣ୍ଡ ଓ ଭାରତରେ ପ୍ରତ୍ୟକ୍ଷ ଭାବରେ ଆଲୋଚିତ ହେଲା ।

ଏତିକବେଳେ କ୍ରିପସ୍ ଜଣେ ଚତୁର କୂଟନୀତିଜ୍ଞ ଭାବେ ଇଂଲଣ୍ଡର ରାଜନୈତିକ ଗଗନରେ ଉଦିତ ହେଲେ । ଦ୍ୱିତୀୟ ମହାଯୁଦ୍ଧବେଳେ ଜର୍ମାନୀ ଇଂଲଣ୍ଡର ଶତ୍ରୁ ତଥା ରୁଷିଆର ଶତ୍ରୁ ଥିଲା । କିନ୍ତୁ ଇଂଲଣ୍ଡ ଆଉ ରୁଷିଆ ଭିତରେ ମିତ୍ରତା ସ୍ଥାପିତ ନ ହେଲେ ସ୍ଥଳ ଯୁଦ୍ଧରେ ଜର୍ମାନୀକୁ ପରାଜିତ କରିହେବ ନାହିଁ, ଏଇ ଲକ୍ଷ୍ୟ ନେଇ କ୍ରିପସ୍ ରୁଷିଆ ଗଲେ ଓ ସମଗ୍ର ବିଶ୍ୱରେ ଏକ ଚମକ ସୃଷ୍ଟି କରି ଇଂଲଣ୍ଡ ଓ ରୁଷିଆ ଭିତରେ ମିତ୍ରତାର ଏକ ସନ୍ଧି ସ୍ଥାପନ କରେଇବାରେ ସମର୍ଥ ହୋଇପାରିଥିଲେ ।

## ସାର୍ ଷ୍ଟାଫୋର୍ଡ୍ କ୍ରିପ୍ସ

ଯେତେବେଳେ ଭାରତର ସ୍ୱାଧୀନତା ଲାଭର ପ୍ରଶ୍ନ ଉଠିଲା, ସେତେବେଳେ ବ୍ରିଟିଶ ସରକାର ଏ ସମ୍ପର୍କରେ ଭାରତୀୟ ନେତୃବର୍ଗଙ୍କ ସହିତ ବିଚାର ଆଲୋଚନା ପାଇଁ ସେଇ କ୍ରିପ୍ସଙ୍କୁ ଭାରତ ପଠାଇଲା । କ୍ରିପ୍ସ ଭାରତ ଆସି ଭାଇସ୍‌ରାୟଙ୍କ ପ୍ରାସାଦରେ ରହିଲେ । ଏଇ କ୍ରିପ୍ସଙ୍କ ସମ୍ପର୍କରେ ଗୋଟିଏ ରୋଚକ କାହାଣୀ ସେତେବେଳେ ଶୁଣିବାକୁ ମିଳିଥିଲା । କାହାଣୀଟି ହେଲା,—ଭାରତୀୟମାନଙ୍କ ସହିତ ଆଲୋଚନା କରିବା ପୂର୍ବରୁ କ୍ରିପ୍ସ ସାଉଥବ୍ଲକରେ ଅବସ୍ଥାପିତ ବୈଦେଶିକ ବିଭାଗ ମନ୍ତ୍ରଣାଳୟକୁ କିଛି ଗୋପନ ପରାମର୍ଶ ପାଇଁ ଆସିବାର କଥା । ଏଥିପାଇଁ ତାରିଖ ଓ ସମୟ ଧାର୍ଯ୍ୟ ହୋଇଚି । ସେଦିନ ବୈଦେଶିକ ବିଭାଗ ଦପ୍ତରର ଉଚ୍ଚ କର୍ମକର୍ତ୍ତାମାନେ କରିଡ଼ର୍‌ରେ କ୍ରିପ୍ସଙ୍କୁ ସ୍ୱାଗତ ଜଣାଇବା ପାଇଁ ଅପେକ୍ଷା କରି ରହିଥା'ନ୍ତି । ସେମାନେ ଅବଶ୍ୟ କ୍ରିପ୍ସଙ୍କୁ ପୂର୍ବରୁ କେବେ ଦେଖିନାହାନ୍ତି । ଏତିକବେଳେ ଦେଖାଗଲା, ଜଣେ ଶ୍ୱେତାଙ୍ଗ ଭଦ୍ରଲୋକ ହାତରେ ଗୋଟିଏ ବ୍ରିଫ୍‌କେଶ୍ ଧରି ସେମାନଙ୍କ ଆଡ଼କୁ ଆସୁଚନ୍ତି । ସେ ନିକଟବର୍ତ୍ତୀ ହେଲା ପରେ ତାଙ୍କୁ ଅଟକାଇ ବୈଦେଶିକ ବିଭାଗର ଜଣେ କର୍ମକର୍ତ୍ତା କହିଲେ—ଆପଣ ତ ଭାଇସ୍‌ରାୟଙ୍କ ପ୍ରାସାଦରୁ ଆସୁଚନ୍ତି, ଦୟାକରି କହିବେକି ମିଷ୍ଟର୍ କ୍ରିପ୍ସ କେତେବେଳେ ଏଠିକି ଆସିବେ ? କ୍ରିପ୍ସ ଟିକେ ସ୍ମିତ ବଦନରେ କହିଲେ –ମିଷ୍ଟର୍ କ୍ରିପ୍ସ ? Why, it's me ! ଏଇ କଥା ଶୁଣି ଏମାନେ ସମସ୍ତେ ଯେମିତି ଆକାଶରୁ ପଡ଼ିଲେ । ସେମାନଙ୍କର ଧାରଣା ଥିଲା ଯେ, ବର୍ତ୍ତମାନ ବିଶ୍ୱବିଶ୍ରୁତ ଇଂରେଜ ଡିପ୍ଲୋମାଟ୍ ସାର୍ ଷ୍ଟାଫୋର୍ଡ୍ କ୍ରିପ୍ସ ଯେତେବେଳେ ଆସିବେ ତାଙ୍କୁ ଅନୁସରଣ କରି କିଛି ଉଚ୍ଚପଦବୀର ଅଫିସର୍ ଓ ତାଙ୍କ ବ୍ରିଫକେଶ୍ ଓ ଫାଇଲପତ୍ର ଧରି ଅର୍ଦ୍ଦଳୀମାନେ ଆସିବେ । କିନ୍ତୁ ଏ ଭଦ୍ରଲୋକ ଯେ ତାଙ୍କ ବ୍ରିଫ୍‌କେଶ୍‌ଟାକୁ ନିଜ ହାତରେ ଧରି ଆସିଚନ୍ତି ! ସେମାନେ

ହତବାକ୍ ହୋଇପଡ଼ିଲେ । ସେତେବେଳେ ଇଂରେଜ ସାମ୍ରାଜ୍ୟରେ ଏଇପରି ବିସ୍ମୟକର ତାରତମ୍ୟ ପରିଦୃଷ୍ଟ ହେଉଥିଲା । ବ୍ରିଟିଶ୍ ପ୍ରଧାନମନ୍ତ୍ରୀଙ୍କ ପରମ୍ପରାଗତ ବାସଭବନ ଦଶନମ୍ବର ଡାଉନିଙ୍ଗ୍ ଷ୍ଟ୍ରୀଟ୍ ହେଉଛି ଗୋଟିଏ ଅତି ସାଧାରଣ ବାସଗୃହ । କିନ୍ତୁ ତାଙ୍କ ଶାସନାଧୀନ ଭାରତବର୍ଷର ବଡ଼ଲାଟଙ୍କ ବାସଗୃହ ହେଉଛି ପ୍ରାୟ ତିନିଶହ ଷାଠିଏ କୋଠରୀରୁ ଊର୍ଦ୍ଧ୍ୱ ଏକ ବିଶାଳ ପ୍ରମୋଦଭବନ । ଇଂଲଣ୍ଡ୍ ଡିପ୍ଲୋମାଟ କ୍ରିପ୍‌ସ ଜଣେ ସରଳ ଓ ଭଦ୍ର ଇଂରେଜ୍ ବ୍ୟକ୍ତିଙ୍କ ଛବିମୂର୍ତ୍ତି ନେଇ ଭାରତ ଆସିଥିଲେ । ଏହା ହେଲା ଊଣେଇଶି ଶହ ବୟାଳିଶ ମସିହାର କଥା । ଭାରତର ସ୍ୱାଧୀନତା ସମ୍ପର୍କରେ କ୍ରିପ୍‌ସଙ୍କ ପ୍ରସ୍ତାବ କଂଗ୍ରେସ ନେତାମାନଙ୍କ ଦ୍ୱାରା ଆଲୋଚିତ ହେଲାପରେ ଗାନ୍ଧିଜୀ ଏଇ ପ୍ରସ୍ତାବ ଉପରେ କହିଥିଲେ—"It is a post dated cheque of a Bankcrupt Bank". ଅର୍ଥାତ୍ ଏହା ଏକ ସମ୍ପୂର୍ଣ୍ଣ ନିଷ୍ଫଳ ପ୍ରସ୍ତାବ । ଏହା ପରେ ସ୍ଥିର ହେଲା— ଭାରତରେ ଏକ ଜାତୀୟ ସରକାର ଗଠନ କରାଯିବ । ଏଥିରେ ଚକ୍ରବର୍ତ୍ତୀ ରାଜଗୋପାଲ ଆଚାରି ହେବେ ପ୍ରଧାନମନ୍ତ୍ରୀ, କିନ୍ତୁ ପ୍ରତିରକ୍ଷା ବିଭାଗ କୌଣସି ଭାରତୀୟଙ୍କୁ ଦିଆ ନ ଯାଇ ଜଣେ ଇଂରେଜ ଅଫିସରଙ୍କ ହାତରେ ରହିବ । ପଣ୍ଡିତ ନେହେରୁ ଅବଶ୍ୟ ପ୍ରତିରକ୍ଷା ବିଭାଗ ସହିତ ସଂଶ୍ଳିଷ୍ଟ ହେବେ । କିନ୍ତୁ ସେ ପ୍ରତିରକ୍ଷା ବିଭାଗର ପରିଚାଳନା ତଥା ଅସ୍ତ୍ର-ଶସ୍ତ୍ର ନିୟନ୍ତ୍ରଣର ଦାୟିତ୍ୱ ସହିତ ସମ୍ପୃକ୍ତ ହେବେ ନାହିଁ । ଏଇ ବିଭାଗର ଷ୍ଟେସନାରି ସରଞ୍ଜାମ ଅର୍ଥାତ୍ କାଗଜ କଲମ ଆଲ୍‌ପିନ ବ୍ଲଟିଙ୍ଗ୍, ପେପର କ୍ଲିପ ଆଦି କ୍ରୟ କରିବାର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ କରାଗଲା ।....ନିଶ୍ଚିତ ଭାବେ ଏହା ଏକ ହାସ୍ୟାସ୍ପଦ ବ୍ୟାପାର । ଏମାନଙ୍କ ପକ୍ଷରୁ ଦାବୀ ହେଲା ଯେ, ନେହେରୁ ସମସ୍ତ ପ୍ରତିରକ୍ଷା ବ୍ୟାପାର ଦାୟିତ୍ୱରେ ରହିବେ । ଏକଥା କ୍ରିପ୍‌ସ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲଙ୍କୁ ଜଣାଇଲେ । ଉତ୍ତରରେ ଚର୍ଚ୍ଚିଲ କ୍ରିପସଙ୍କୁ ଟେଲିଫୋନ୍ ଯୋଗେ ନିର୍ଦ୍ଦେଶ ଦେଲେ—ତୁମେ ଚବିଶ ଘଣ୍ଟା ଭିତରେ ଭାରତ ଛାଡ଼ି ଚାଲିଆସ । ବିଚକ୍ଷଣ କୂଟନୀତିଜ୍ଞ ଓ ଭାରତର ହିତାକାଂକ୍ଷୀ ସାର୍ ଷ୍ଟାଫୋର୍ଡ୍ କ୍ରିପ୍‌ସ ଚର୍ଚ୍ଚିଲଙ୍କ ନିର୍ଦ୍ଦେଶ ମାନି ଇଂଲଣ୍ଡ ଫେରିଗଲେ । ଏହା ପରେ ଆମର ନେତାମାନେ ଏଇ ସିଦ୍ଧାନ୍ତରେ ପହଞ୍ଚିଲେ ଯେ, ଜାଠ ଦଳର ନିଆଁଗିଳା ଚର୍ଚ୍ଚିଲ ଜଣେ ଅତି ଭଦ୍ରବେଶଧାରୀ ସୈତାନ । ତାକୁ ଠିକଣା ଜବାବ ଦେବାକୁ ହବ । ଏଇଥିରୁ ଆରମ୍ଭ ହେଲା ଊଣେଇଶ ଶହ ବୟାଳିଶର ଅଗଷ୍ଟ ଆନ୍ଦୋଳନ । ଏଇ ଅଗଷ୍ଟ ଆନ୍ଦୋଳନ ସହିତ ଦ୍ୱିତୀୟ ମହାଯୁଦ୍ଧର ସମାପ୍ତି ଓ ଇଂଲଣ୍ଡରେ ପାର୍ଲାମେଣ୍ଟ୍ ନିର୍ବାଚନ—ଏଇ ତିନୋଟି ଘଟଣାକୁ ନେଇ ଯେଉଁ ଜଟିଳ ପରିସ୍ଥିତିର ସୃଷ୍ଟି ହେଲା, ସେଥିରେ ଭାରତର

ସ୍ୱାଧୀନତା ଲାଭର ପଥ ସୁଗମ ହୋଇଉଠିଲା । ବ୍ୟାଲଟି ଆନ୍ଦୋଳନ 'ବ୍ରିଟେନକୁ ଚେତେଇ ଦେଲା ଯେ, ଭାରତକୁ ବ୍ରିଟିଶ ଶାସନ ଅଧୀନରେ ଆଉ ରଖେଇ ହବନାହିଁ । ଦ୍ୱିତୀୟ ମହାଯୁଦ୍ଧ ଶେଷ ହେବା ପରେ ସମଗ୍ର ପୃଥିବୀରେ ଏକ ନୂତନ ରାଜନୈତିକ ଜାଗରଣର ଚିହ୍ନ ସୁସ୍ପଷ୍ଟ ହୋଇଉଠିଲା । ଇଂଲଣ୍ଡ ପାର୍ଲାମେଣ୍ଟ ନିର୍ବାଚନରେ ଜାତିଦଳର ପରାଜୟ ହେଲା ଓ ଶ୍ରମିକଦଳ କ୍ଷମତାକୁ ଆସିଲେ । ଭାରତର ଏକାନ୍ତ ଶୁଭକାଂକ୍ଷୀ ସାର୍ କ୍ଲେମେଣ୍ଟ ଗଟ୍ଟେଡ଼ ଅଟଲି ଇଂଲଣ୍ଡର ପ୍ରଧାନମନ୍ତ୍ରୀ ହେଲେ । ପରେ ତାଙ୍କୁ ଲର୍ଡ଼ ଉପାଧିରେ ଭୂଷିତ କରାଯାଇଥିଲା । ଏହା ପରେ ଭାରତର ସ୍ୱାଧୀନତା ଲାଭର ଦ୍ୱାର ଉନ୍ମୁକ୍ତ ହୋଇଗଲା । ସ୍ୱାଧୀନ ଭାରତର ରୂପରେଖ ଦେବା ପାଇଁ ସାର୍ ପେଥିକ୍ ଲରେନ୍ସଙ୍କ ଅଧ୍ୟକ୍ଷତାରେ ଏକ ପାର୍ଲାମେଣ୍ଟାରୀ ଡେଲିଗେସନ ଭାରତ ଆସିଲେ । ଜିନ୍ନାଙ୍କର ପାକିସ୍ଥାନ ପ୍ରସ୍ତାବ ସ୍ୱୀକୃତ ହେଲା । ତତ୍କାଳୀନ ଭାଇସ୍‌ରାୟ ଲର୍ଡ଼ ଲିଂ ଲିଥ୍‌ଗୋଙ୍କ ପରିବର୍ତ୍ତେ ଲର୍ଡ ମାଉଣ୍ଟବେଟେନ ହେଲେ ଭାରତର ଭାଇସ୍‌ରାୟ । ଏଇ ମାଉଣ୍ଟବେଟନ ହିଁ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ନେହେରୁଙ୍କୁ ପାର୍ଲିଆମେଣ୍ଟ ସେଣ୍ଟ୍ରାଲ୍ ହଲରେ ଶପଥପାଠ କରାଇଥିଲେ । ଶପଥପାଠ ପରେ ପ୍ରଧାନମନ୍ତ୍ରୀ ନେହେରୁଙ୍କ ଆସେମ୍ବ୍ଲି ହଲରେ ପ୍ରଥମ ଭାଷଣରୁ ପ୍ରଥମ କେଇପଦ କଥା ଏ ଜାତି କେବେ ଭୁଲିପାରିବ ନାହିଁ । ସେଇ ଐତିହାସିକ ମଧ୍ୟ ରାତ୍ରିରେ ନେହେରୁ କହିଲେ—"While the whole world is asleep, India awakes."

ଏଇଠି ମୋ' ନିଜ କଥା ଟିକିଏ ନ କହି ରହିପାରୁନି । ଏ ରଚନାଟିର ଆରମ୍ଭରୁ ମୋର ଲକ୍ଷ୍ୟ ଥିଲା—ଉଣେଇଶିଶହ ତିରିଶ ମସିହାରେ ମୁଁ କଟକ ଆସିବା ପରଠାରୁ କଟକ ସହରରେ ଯାହା ଯାହା ମୁଁ ଦେଖିଛି, ଶୁଣିଛି ବା ଅନୁଭବ କରିଛି, କେବଳ ସେଇ ସବୁ ମୁଖ୍ୟତଃ ଏଥିରେ ସ୍ଥାନ ପାଇବ । କିନ୍ତୁ ଭାରତର ସ୍ୱାଧୀନତା ଲାଭ ! ଏଇ ମହାନ ତଥ୍ୟରେ ମୁଁ କଟକରେ ନ ରହି ଦେଶର ଯେଉଁ ଅଞ୍ଚଳରେ ଥିଲେ ବି ଏଥିରେ ଜଡ଼ିତ ହୋଇପଡ଼ିବା ସ୍ୱାଭାବିକ । ଏଇ ଅନୁଭବରୁ ମୁଁ ସେ ସମୟର କେତୋଟି କଥା ଏଠି ଉଲ୍ଲେଖ କରୁଛି । ....ସେତେବେଳେ କୁହାଯାଉଥିଲା ବ୍ରିଟିଶ ସାମ୍ରାଜ୍ୟରୁ ସୂର୍ଯ୍ୟ ଅସ୍ତ ହେଉ ନ ଥିଲା । ଏହାର ମର୍ମ ହେଲା ପୃଥିବୀର ପୂର୍ବରୁ ପଶ୍ଚିମ ଓ ଉତ୍ତରରୁ ଦକ୍ଷିଣ ସମସ୍ତ ଅଞ୍ଚଳରେ ବ୍ରିଟିଶ ସାମ୍ରାଜ୍ୟ ବ୍ୟାପ୍ତ ଥିଲା । ପ୍ରାୟ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ଦୁର୍ଦ୍ଧର୍ଷ ଇଂରେଜ ସରକାର ସହିତ ନିରସ୍ତ୍ର ସଂଗ୍ରାମ କରି ଭାରତ ୧୯୪୭ ଅଗଷ୍ଟ ପନ୍ଦର ତାରିଖରେ

ସ୍ୱାଧୀନତା ଲାଭ କଲା ସତ, କିନ୍ତୁ ଏଇ ସ୍ୱାଧୀନତା ଲାଭ ପରେ ପରେ ଭାରତ ଯାହା ହରାଇଲା, ତାକୁ ଆମର ଶତ ସ୍ୱାଧୀନତା ଲାଭ ପୂରଣ କରିପାରିବ ନାହିଁ ।

## ଗାନ୍ଧିଜୀଙ୍କ ସ୍ୱର୍ଗବାସ

ସ୍ୱାଧୀନତା ପ୍ରାପ୍ତିର ମାତ୍ର ଛ'ମାସ ଭିତରେ ଆମେ ଆମର ପୂଜ୍ୟ ବାପୁଜୀଙ୍କୁ ଚିରଦିନ ପାଇଁ ହରାଇଲୁ । ୧୯୪୮ ମସିହା ଜାନୁଆରୀ ତିରିଶ ତାରିଖର ଶୀତଳ ଅପରାହ୍ନ । ପ୍ରତିଦିନ ପରି ସେଦିନ ଗାନ୍ଧିଜୀ ଦିଲ୍ଲୀ ବିରଲା ବାସଭବନ ସଂଯୁକ୍ତ ଏକ ମୁକ୍ତ ସ୍ଥାନକୁ ପ୍ରାର୍ଥନା ସଭାରେ ଯୋଗଦେବା ପାଇଁ ଆସିଲେ । ସଭାରେ ଜନସମାବେଶ ହୋଇଗଲାଣି । ଗାନ୍ଧିଜୀ ପ୍ରାର୍ଥନା ସ୍ଥଳୀରେ ପହଞ୍ଚିଲେ । ବହୁ ସ୍ତ୍ରୀ ପୁରୁଷଙ୍କ ପ୍ରଣତି ଗ୍ରହଣ କଲେ । ଏତିକବେଳେ ଜନଗହଳି ଭିତରୁ ଜଣେ ସାଧାରଣ ଯୁବକ ବାହାରିଆସି ଅଣ୍ଟାଭାଙ୍ଗି ବାପୁଜୀଙ୍କୁ ପ୍ରଣାମ କଲା । ଏଥିରେ ନିଶ୍ଚିତଭାବେ କେତେକଙ୍କ ମନରେ ବିସ୍ମୟ ଜାଗ୍ରତ ହୋଇଥିବ । ସେ କିନ୍ତୁ ପ୍ରଣାମ କରିବା ପର ମୁହୂର୍ତ୍ତରେ ହିଁ ତା ପକେଟ୍‌ରୁ ରିଭଲ୍‌ଭର୍ ବାହାର କରି ଗାନ୍ଧୀଙ୍କ ଛାତିକୁ ଲକ୍ଷ୍ୟ କରି ଗୁଳିବର୍ଷଣ କଲା । ଗାନ୍ଧିଜୀ ଯନ୍ତ୍ରଣାରେ "ହା ରାମ୍" କହି ପୃଥିବୀର ଜନସମାଜକୁ ଶୋକସାଗରରେ ଭସାଇ ଦେଇ ତାଙ୍କର ଶେଷ ନିଃଶ୍ୱାସ ତ୍ୟାଗ କଲେ । ଏହି ହତ୍ୟାକାରୀ ଯୁବକଟିର ନାଁ ହେଉଚି ନାଥୁରାମ ଗଡ଼ସେ ।

ସ୍ୱାଧୀନତା ଦିବସ ପରି ବାପୁଜୀଙ୍କର ଏହି ମହାପ୍ରସ୍ଥାନ ଦିବସରେ ମୁଁ କଟକରେ ନ ଥିଲି,—ଥିଲି ଓଡ଼ିଶା ସୀମାନ୍ତ ଅଦୂରବର୍ତ୍ତୀ ମଧ୍ୟପ୍ରଦେଶର ଏକ ଅନଗ୍ରସର ଅଞ୍ଚଳରେ । ସେଠିକି ଏକ ସାପ୍ତାହିକୀ ହିନ୍ଦୀ ପତ୍ରିକା ଆସୁଥିଲା । ଏକମାତ୍ର ସମ୍ବାଦପତ୍ର । ଏହା ବ୍ୟତୀତ ସମ୍ବାଦ ସଂଗ୍ରହ ପାଇଁ ସେଠି ଅନ୍ୟ କୌଣସି ବିକଳ୍ପ ପନ୍ଥା ନ ଥିଲା । ସେ ସପ୍ତାହର ଏଇ ହିନ୍ଦୀ ସମ୍ବାଦପତ୍ରଟି ଆସିବା ପାଇଁ ଆହୁରି ତିନିଦିନ ଡେରି ଥାଏ । କିନ୍ତୁ ଆଶ୍ଚର୍ଯ୍ୟର କଥା—ଶୁଣ୍ଡି ବାଇଦ ସହସ୍ର କୋଶ ପରି ଜାନୁଆରୀ ଏକତିରିଶ ତାରିଖ ଦିନ ଲୋକମୁଖରୁ ଗାନ୍ଧିଜୀଙ୍କ ମୃତ୍ୟୁ ସମ୍ବାଦ ଶୁଣିବାକୁ ମିଳିଲା । ଗୋଟିଏ ନୁହେଁ, ଏକାଧିକ ସୂତ୍ରରୁ ଏ ଦୁଃସମ୍ବାଦ ମୁଁ ପାଇପାରିଥିଲି । ଏକଥା ଏଠି କହିରଖୁଚି ଯେ, ମୋର ପିତୃ-ପିତାମହଙ୍କ ବିୟୋଗରେ ଯେମିତି ଶୁଦ୍ଧିକ୍ରିୟା ପାଳନ କରାଯାଇଥା'ନ୍ତା, ତା'ଠୁ ବଳି ଆହୁରି ନିଷ୍ଠାର ସହିତ ବାପୁଜୀଙ୍କ କ୍ରିୟା ପାଳନ କରିଥିଲି ।

## ଗଣତାନ୍ତ୍ରିକ ଭାରତର ପ୍ରଥମ ସାଧାରଣ ନିର୍ବାଚନ

କ୍ରମେ ଗାନ୍ଧିଜୀଙ୍କ ମୃତ୍ୟୁରେ ଦେଶବାସୀଙ୍କ ଶୋକୋଚ୍ଛ୍ୱାସ ଦେଶର ଗଗନ-ପବନରେ ଲୀନ ହୋଇଗଲା । ଏହାପରେ ଆସିଲା ସ୍ୱାଧୀନତା ଲାଭ ପରଠାରୁ

ଦେଶରେ ସବୁଠୁ ଗୁରୁତ୍ୱପୂର୍ଣ୍ଣ ଘଟଣା—ସ୍ୱାଧୀନ ଗଣତାନ୍ତ୍ରିକ ଭାରତରେ ପ୍ରଥମ ସାଧାରଣ ନିର୍ବାଚନ । ମୁଁ ତ ଦେଖିଛି ଓ ଅଙ୍ଗେ ନିଭେଇଛି । ପରାଧୀନ ଭାରତରେ ଊଣେଇଶିଶହ ଛତିଶ ସଁଇତିରିଶିରେ ଆମର ପ୍ରଥମ ପ୍ରାଦେଶିକ ନିର୍ବାଚନ ଲିମିଟେଡ୍ ଫ୍ରାନ୍‌ଚାଇଜ୍ ପଦ୍ଧତିରେ ହୋଇଥିଲା । ଏଇ ନିର୍ବାଚନରେ ବ୍ରିଟିଶ ସରକାର ତାଙ୍କୁ ସୁହାଇଲା ଭଳି ନିର୍ବାଚନରେ ଭାଗନେଉଥିବା ଦଳକୁ ପ୍ରତ୍ୟକ୍ଷ ସମର୍ଥନ ଜଣାଉଥିଲେ । ଏସବୁ ଦେଖି ମୁଁ ଖୁବ୍ ଅସନ୍ତୁଷ୍ଟ ହୋଇ ପଡ଼ୁଥିଲି, କିନ୍ତୁ ମନରେ ଏଇ ସାନ୍ତ୍ୱନା ଆସୁଥିଲା ଯେ, ସ୍ୱାଧୀନତା ପରେ ଯେତେବେଳେ ଗଣତାନ୍ତ୍ରିକ ପଦ୍ଧତିରେ ସାଧାରଣ ନିର୍ବାଚନ ଅନୁଷ୍ଠିତ ହେବ, ସେତେବେଳେ ନିର୍ବାଚନ ପ୍ରକ୍ରିୟାରେ ଏଭଳି ଅପକର୍ମର ସ୍ଥାନ ଆଦୌ ରହିବ ନାହିଁ । ଆଜି ମୁଁ ସ୍ପଷ୍ଟ ଅନୁଭବ କରିପାରୁଛି, ସେଦିନ ମୋ ମନ ଭିତରେ ଏଇ ଚିନ୍ତା ଓ ଚେତନାର ଉଦୟ ହେଲାବେଳେ କିପରି ମୋର ଉତ୍ସାହ ଓ ଆଗ୍ରହର ସୀମା ରହି ନଥିଲା । ବର୍ତ୍ତମାନପରି ତ ସେତେବେଳେ ନିର୍ବାଚନ ଗୋଟିଏ ଦିନରେ ଶେଷ ହେଉନଥିଲା, ସେଥିପାଇଁ ସମ୍ବଳ ଓ ସରଞ୍ଜାମର ଯଥେଷ୍ଟ ଅଭାବ ଥିଲା । ଏଇ ପ୍ରଥମ ନିର୍ବାଚନରେ ଗୋଟିଏ ନିର୍ବାଚନ ମଣ୍ଡଳୀର ଭୋଟ ଗ୍ରହଣ ଶେଷ ହେବା ପରେ ଏଇ ନିର୍ବାଚନରେ ନିଯୁକ୍ତ ହୋଇଥିବା କର୍ମଚାରୀମାନେ ଅନ୍ୟ ଏକ ନିର୍ବାଚନ ମଣ୍ଡଳୀକୁ ନିର୍ବାଚନ ପରିଚାଳନା ପାଇଁ ଯାଉଥିଲେ । ମୁଁ ଆମ କଟକ ଜିଲ୍ଲା ନିର୍ବାଚନ କଥା କହୁଛି । ସେତେବେଳେ କଟକ ଜିଲ୍ଲାବୋର୍ଡ଼ର ମୁଁ ଜଣେ କର୍ମଚାରୀ । ମୁଁ କଟକରେ ରହୁଥାଏ । ପ୍ରଥମେ କଟକ ସହର ନିର୍ବାଚନ ମଣ୍ଡଳୀରେ ଭୋଟ ଗ୍ରହଣ ହେଲା । କଂଗ୍ରେସ ହିଁ ମୁଖ୍ୟ ରାଜନୈତିକ ଦଳ । ମୁଁ କଟକରେ ଭୋଟ ଦେଲି ।

## କଂଗ୍ରେସ ପ୍ରାର୍ଥୀ ଶ୍ରୀ ନୀଳମଣି ପ୍ରଧାନ

ଏହାପରେ ଆମ ନିର୍ବାଚନ ମଣ୍ଡଳୀ ଜଗତ୍‌ସିଂହପୁରରେ ଭୋଟ ଗ୍ରହଣ ହେଲା । ମୁଁ ଆସେମ୍ବ୍ଲି ନିର୍ବାଚନ କଥା କହୁଛି । ଜଗତ୍‌ସିଂହପୁର କଂଗ୍ରେସ ପ୍ରାର୍ଥୀ ହେଉଛନ୍ତି କଂଗ୍ରେସର ଋଷିଦେବ ଆଜୀବନ ସତ୍‌ମାର୍ଗ-ଯାତ୍ରୀ ଯୋଗଜନ୍ମା ଶ୍ରୀଯୁକ୍ତ ନୀଳମଣି ପ୍ରଧାନ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପର ଠାରୁ ଶ୍ରୀଯୁକ୍ତ ପ୍ରଧାନ ସମସ୍ତ ଆସେମ୍ବ୍ଲି ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ରୂପେ ଜୟଯୁକ୍ତ ହୋଇଆସିଛନ୍ତି । ଗଣତନ୍ତ୍ର ଭାରତରେ ଏହା ହେଉଛି ପ୍ରଥମ ଆସେମ୍ବ୍ଲି ନିର୍ବାଚନ । ଏହା ପୂର୍ବରୁ ତାଙ୍କର ପ୍ରତ୍ୟେକ ନିର୍ବାଚନରେ ମୁଁ ତାଙ୍କୁ ସାହାଯ୍ୟ କରି ଆସିଛି । ଜଗତ୍‌ସିଂହପୁର ନିର୍ବାଚନ ପାଇଁ ମୁଁ ଛୁଟିନେଇ ଆମ ଗାଁ ପୁରୁଣାଗଡ଼ ଆସିଲି ।

ଆମ ଗାଁରେ ପୋଲିଙ୍ଗ ବୁଥ୍ ରହିଛି । ନୀଳମଣିବାବୁ ଆମ ଗାଁ କ୍ୟାମ୍ପରେ ସେତେବେଳେ ନଥା'ନ୍ତି । ଅନ୍ୟ ଅଞ୍ଚଳକୁ ଇଲେକ୍‌ସନ କାମରେ ଯାଇଥା'ନ୍ତି । ମୁଁ ଗାଁକୁ ଆସି ଯାହା ଦେଖିଲି, ଯାହା ଜାଣିଲି ଓ ଯାହା ଶୁଣିଲି, ଏଠି ସେ ସବୁ କଥା ବର୍ଣ୍ଣନା କରିବା ପାଇଁ ଆଜି ବି ମୋର ଲେଖନୀ ଅଚଳ ହୋଇଯାଉଛି । ଆମ ଗାଁ ସୁରପଟେ ହରିଜନ ବସ୍ତିମାନ ରହିଛି । ମୁଁ ଆସି ଶୁଣିଲି, କଂଗ୍ରେସ ପକ୍ଷରୁ ହରିଜନ ବସ୍ତିମାନଙ୍କରେ ଲଣ୍ଠନ, ଛତା ଓ ଚାଦର ପ୍ରଭୃତି ବଣ୍ଟନ କରାଯାଉଛି । ଏକଥା ମୁଁ ଆଦୌ ବିଶ୍ୱାସ କରିପାରିଲି ନାହିଁ !! କେମିତି ବିଶ୍ୱାସ କରନ୍ତି ? ଏହା ୧୯୫୭ ମସିହାର କଥା । ଜୀବନରେ କେବେ ମୁଁ କଂଗ୍ରେସର ପ୍ରାଥମିକ ସଭ୍ୟ ତାଲିକାଭୁକ୍ତ ହୋଇନି । କିନ୍ତୁ ୧୯୨୭ ମସିହା ଠାରୁ ଯେତେବେଳେ ମୋର ବୟସ ମାତ୍ର ୧୦/୧୧ ବର୍ଷ, ସେଇଦିନଠୁ ଜଗତ୍‌ସିଂହପୁରଠାରେ କଂଗ୍ରେସର ଅଲକାଶ୍ରମଠୁ ଆରମ୍ଭ କରି କଟକର ସ୍ୱରାଜ ଆଶ୍ରମ ପର୍ଯ୍ୟନ୍ତ ମୋର ନିୟମିତ ଆତଯାତ ଓ ଜଗତ୍‌ସିଂହପୁର ଠାରେ କଂଗ୍ରେସ ନେତା ଶ୍ରୀଯୁକ୍ତ ନୀଳମଣି ପ୍ରଧାନଙ୍କ ଠାରୁ ଆରମ୍ଭ କରି କଟକର ନିତ୍ୟାନନ୍ଦ କାନୁନ୍‌ଗୋ, ହରେକୃଷ୍ଣ ମହତାବ, ରାଜକୃଷ୍ଣ ବୋଷ ଓ ଯଦୁମଣି ମଙ୍ଗରାଜ ପ୍ରଭୃତି ବହୁ ବହୁ କଂଗ୍ରେସ ନେତାମାନଙ୍କ ସାନ୍ନିଧ୍ୟରେ ଆସି ମୋ ମନରେ ଏଇ ଦିବ୍ୟଧାରଣା ସୃଷ୍ଟି ହୋଇଥିଲା ଯେ, ଗାନ୍ଧିଜୀଙ୍କ କଂଗ୍ରେସ ହେଉଛି ଆମ ଏ ଦେଶକୁ ଭଗବାନଙ୍କର ଏକ ଅତି ମହନୀୟ ଅବଦାନ !! ଭାରତୀୟ ଜାତୀୟ କଂଗ୍ରେସ କେବେ ଅସତ୍ ମାର୍ଗରେ ଯାଇପାରିବ ନାହିଁ ।···ଗାଁରେ ଆମ ଜମିର ଦୁଇ ତିନି ଘର ହରିଜନ ପ୍ରଜା ଅଛନ୍ତି । ମୁଁ ସେମାନଙ୍କ ପାଖକୁ ଗଲି । ଦେଖିଲି ଯେ ଗାଁକୁ ଆସି ମୁଁ ଯାହା ଶୁଣିଥିଲି, ସେ ସବୁ କଥା ଠିକ୍ । ଛତା, ଲଣ୍ଠନ ପ୍ରଭୃତି ସେମାନେ ପାଇଛନ୍ତି । ଆମ ଜମିର କୋଠିଆ ମତେ କହିଲା—ଆଗରୁ ଯେତେ ଭୋଟ ହୋଇଛି—ଆମେ ତ ସବୁବେଳେ କଂଗ୍ରେସର ହଳଦିଆ ବାକ୍‌ସରେ ଭୋଟ ଦେଇ ଆସିଛୁ, ଏଥର ବି ଦେବୁ । କାହିଁକି କେଜାଣି ସୁରବାବୁ, ନଟବାବୁ (ଆମ ଗାଁର କଂଗ୍ରେସ କର୍ମୀ) ଏ ଜିନିଷ ସବୁ ଆମକୁ ଦେଇ କଂଗ୍ରେସକୁ ଭୋଟ ଦେବାକୁ କହିଗଲେ । ମୁଁ ନୀରବରେ ସେଠୁ ଫେରିଆସିଲି । ସେ ପର୍ଯ୍ୟନ୍ତ ମୋ ଜୀବନରେ ମୁଁ ସବୁଠୁ ଯେଉଁ ମର୍ମନ୍ତୁଦ ଓ ଦାରୁଣ ଆଘାତ ପାଇଥିଲି, ତାହାହେଲା ମୋର ବାରବର୍ଷ ବୟସରେ ମୋର ପିତାଙ୍କ ମୃତ୍ୟୁ । ସେଦିନ ଯେତେବେଳେ ମୁଁ ହରିଜନ ବସ୍ତିରୁ ଫେରିଲି, ମୋ ମନ ପ୍ରାଣରେ ସେଇଭଳି ଏକ ଦାରୁଣ ଆଘାତ ମୁଁ ପାଇଥିଲି । ଆଖିରୁ ହୁଏତ ଲୁହ ବହି ନ ଥିଲା, କିନ୍ତୁ ରାଗରେ ଦ୍ୱେଷରେ ମୋର ସମସ୍ତ ଶରୀର ଜଳି ଉଠିଥିଲା ।

ଦିନେ ଦୁଇଦିନ ପରେ ନୀଳମଣିବାବୁ ଫେରିଲେ । ତାଙ୍କୁ ଦେଖି ଜାଣିପାରିଲି ଯେ, ସେ ଯେପରି ମାନସିକ ଅଶାନ୍ତିରେ ଘାରିହୋଇଛନ୍ତି । ତାଙ୍କୁ ପ୍ରଣାମ ଜଣାଇଲି । କିନ୍ତୁ କିଛି କହିବା ପୂର୍ବରୁ ମୋ କଣ୍ଠ ରୁଦ୍ଧ ହୋଇ ଆସିଲା । ମୋ ନିଜକୁ ଆଉ ମୁଁ ସଂଯତ କରି ରଖିପାରିଲି ନାହିଁ । ଉତ୍କ୍ଷିପ୍ତ ହୋଇ ଲୁହଭରା ଆଖିରେ ତାଙ୍କୁ କହିଲି – ଇଏ ଆପଣ କଲେ କ'ଣ ?···ଏଇଠି ଯେମିତି ମୋ ମନ ଭିତରେ ଏକ ଚେତନା ଜାଗ୍ରତ ହେଲା ଯେ, କାହାକୁ ମୁଁ କ'ଣ କହୁଛି !···ଏଇ ନୀଳମଣି ପ୍ରଧାନଙ୍କ ସହିତ ମୋର ବର୍ଷ ବର୍ଷ ଧରି ଶ୍ରଦ୍ଧା, ସମ୍ମାନ ଓ ଆନ୍ତରିକତାରେ ବଢିଯାଇଛି । ତାଙ୍କୁ ଆଉ ଚାହିଁପାରିଲି ନାହିଁ । ଆଖିରୁ ଲୁହପୋଛି ଅନ୍ୟ ଦିଗକୁ ମୁହଁ ବୁଲାଇଦେଲି । ଟିକେ ପରେ ମତେ ବୁଝାଇବା ଢଙ୍ଗରେ କହିଲେ—ତୁମେ ଆସ, ବସ ଏଠି ।···ସେ ବସିଲେ—ମୁଁ ବି ବସିଲି । ସେ କଥା ଆରମ୍ଭ କଲେ—"ମତେ ତୁମେ ଦୋଷ ଦଉଛ ! କିନ୍ତୁ ମୋର ଏଥିରେ କିଛି କରିବାର ନ ଥିଲା । ଚାରିଦିନ ତଳେ ତମ ଏ ପୁରୁଣାଗଡ଼ ଗାଁର ପଡ଼ାଗାଁ ନୂଆଗଡ଼ରେ କଂଗ୍ରେସ ବିରୁଦ୍ଧଦଳ ଦୁଇଶହ ଟଙ୍କା ଦେଇଯାଇଛନ୍ତି ।···ମୁଁ ଯେମିତି ଆକାଶରୁ ପଡ଼ିଲି । କହିଲି—ଦୁଇଶହ ଟଙ୍କା !! ସେମାନେ ଏତେଟଙ୍କା ପାଇଲେ କୋଉଠୁ ! ମତେ ବାଧାଦେଇ ସେ କହିଲେ—"ତାଙ୍କର କ'ଣ ଅଛି ? ଏଇ ଇଲେକ୍‌ସନ ପାଇଁ ସେମାନେ ଭାରତ ବାହାରୁ ବହୁଲକ୍ଷ ଟଙ୍କା ପାଇଛନ୍ତି । ମୁଁ ଏକାବେଳକେ ବିବ୍ରତ ହୋଇପଡ଼ିଲି । ଏତିକବେଳେ ଉପରୁ ଯାହା ନିର୍ଦ୍ଦେଶ ଆସିଲା—ମୁଁ ସେତିକି ପାଳନ କରୁଛି ମାତ୍ର ।" ଏଇଠି ମୁଁ ଆଉ ନିଜକୁ ସଂଯତ କରି ରହିପାରିଲି ନାହିଁ । କ୍ଷୁବ୍ଧ ଗଳାରେ କହିଲି—ଆପଣ ଭୁଲ କରିଛନ୍ତି । ଏଇ ନିର୍ଦ୍ଦେଶ ଆପଣ ପ୍ରତ୍ୟାଖ୍ୟାନ କରିଦେଇ ଥା'ନ୍ତେ !···ଦେଖିଲି ଟିକେ ଆହତ ଦୃଷ୍ଟିରେ ସେ ମତେ ଚାହିଁରହିଛନ୍ତି । ମୁଁ କିନ୍ତୁ କହି ଚାଲିଛି—ଜଗତ୍‌ସିଂହପୁର ନିର୍ବାଚନ ମଣ୍ଡଳୀରେ ଆଉ ଯେଉଁଠି ଯାହା ହେବାର ହେଉ, କିନ୍ତୁ ଏ ପୁରୁଣାଗଡ଼ ବୁଥ୍‌ରେ ସେମାନେ ଯେତେ ଟଙ୍କା ଢାଳନ୍ତୁ ନା କାହିଁକି, ଆପଣହିଁ ଅଧିକ ଭୋଟ ପାଇବେ । ଆପଣଙ୍କୁ ଏଠି କେହି ହରାଇ ପାରିବେ ନାହିଁ ।···ଟିକେ ରହି ନୀଳମଣିବାବୁ କହିଲେ—କ'ଣ ତେବେ ତୁମେ କହୁଛ ? ମୋ ମନ ଭିତରେ ଗ୍ଳାନି ଓ ଖେଦ ଯେମିତି ଭରି ରହିଛି । ସେଇ ଅବସ୍ଥାରେ ମୁଁ କହିଲି—ମୋର ଆଉ କହିବାର ବା ଅଛି କ'ଣ ? ମୁଁ କିଏ ? ଆପଣଙ୍କ ରାଜନୈତିକ ଜୀବନରେ ଯାହା ହୋଇ ନ ଥିଲା, ଆଜି ତାହାହିଁ ସେମାନେ କରେଇ ଦେଲେ, ପୁଣି ଆପଣଙ୍କ ଇଚ୍ଛା ବିରୋଧରେ ।···ନୀଳମଣିବାବୁଙ୍କୁ ଓଡ଼ିଶା କଂଗ୍ରେସର ଋଷିଦେବ ଆଖ୍ୟା ମୁଁ ହିଁ ଦେଇଥିଲି ! ଆଜି ସେଇ ଋଷିଦେବ

ନୀରବତା ଅବଲମ୍ବନ କରି ବସିଚନ୍ତି । ମୋ ଗୁରୁ ଭିତରଟା ବଦୀର୍ଣ୍ଣ ହେଇଯାଉ-ଥାଏ । ଯେଉଁ ଲୋକ ଜୀବନରେ ଅସତ୍‌ମାର୍ଗ କ'ଣ ଜାଣିନାହିଁ, ନିଃସ୍ୱାର୍ଥ ଜନସେବା ଯାହାଙ୍କ ଜୀବନର ଏକମାତ୍ର ବ୍ରତ, ଭୋଟ କିଣି ଇଲେକ୍‌ସନ ଜିଣିବା ପଥରେ ଚାଲିବା ପାଇଁ ତାଙ୍କୁ ଆଜି ଠେଲି ଦିଆଯାଉଚି । ସେ କ'ଣ ସ୍ଥିର ପାଦରେ ଏ ପଥରେ ଚାଲିପାରିବେ ! କେବେ ନୁହେଁ । ଏତିକବେଳେ ଜଣେ ଦୁଇଜଣ କର୍ମୀ ଆସିଲେ । ଶ୍ରୀଯୁକ୍ତ ପ୍ରଧାନଙ୍କ ସହିତ ସେମାନଙ୍କର କିଛି ଆଲୋଚନା ଚାଲିଲା । ମୋ ଆଖି ଆଗରେ କିନ୍ତୁ ଭାସି ଉଠୁଥାଏ ୧୯୩୬/୩୭ରେ କଟକ ସହରରେ ସରଳାଦେବୀଙ୍କର ଆସେମ୍ବ୍ଲି ଇଲେକ୍‌ସନ ଚିତ୍ର । ଭୋଟର୍‌ମାନଙ୍କୁ କିଣିବା ପାଇଁ ବିପକ୍ଷ କ୍ୟାମ୍ପରେ ଖାଦ୍ୟପେୟ ଓ ଅର୍ଥର ସ୍ରୋତ ସହିତ ଭୋଟର୍ ଏବଂ ତାଙ୍କ କର୍ମୀମାନଙ୍କ ପାଇଁ ସମସ୍ତ ପ୍ରକାର ସୁଖ ସ୍ୱାଚ୍ଛନ୍ଦ୍ୟ ଯୋଗାଇ ଦିଆଯାଉଥାଏ । କିନ୍ତୁ ଆମେ ? ହାତରେ ମହାପ୍ରସାଦ ଧରି ନିୟମ କଲାଭଳି ସରଳାଦେବୀଙ୍କ ସ୍ୱାମୀ ଭାଗୀରଥି ମହାପାତ୍ର ନିୟମ କରି କହିଥିଲେ ଯେ, ସରଳା ଦେବୀଙ୍କର ନିର୍ବାଚନ କୌଣସି ପ୍ରକାରର କଳଙ୍କର ସୀମା ସ୍ପର୍ଶ କରିବ ନାହିଁ । ଅକ୍ଷରେ ଅକ୍ଷରେ ଆମ କ୍ୟାମ୍ପରେ ଏହି ନୀତି ପାଳିତ ହେଲା ଓ ସରଳାଦେବୀ ନିର୍ବାଚନରେ ଜୟଲାଭ କଲେ । ଏତିକବେଳେ ନୀଳମଣିବାବୁଙ୍କ କଥା ଶୁଣିଲି—ସେ କହୁଚନ୍ତି, କ'ଣ ଆଉ ଭାବୁଚ ?····ମୁହଁରେ ଟିକେ ହସ ଆଣି କହିଲି—ମତେ କ୍ଷମା କରନ୍ତୁ ସାର୍, ମୁଁ ଆଉ କିଛି ଭାବୁନି । ଏ ସବୁ ଯାହା ଘଟିଗଲା, ସେଥିପାଇଁ ଆପଣଙ୍କୁ କେହି ଦୋଷ ଦେବେନି । ମୋ କଥାରେ ଯେମିତି ବାଧାଦେଇ ମତେ ପଚାରିଲେ—ତୁମେ ଇଲେକ୍‌ସନ ଶେଷଯାଏ ରହୁଚ ତ ?····କହିଲି—ହଁ ସାର୍, ମୁଁ ପ୍ରସ୍ତୁତ ହେଇ ଆସିଚି, ଇଲେକ୍‌ସନ ଶେଷଯାଏ ରହିବି । ଯଥା ସମୟରେ ନିର୍ବାଚନ ଶେଷ ହେଲା । ଶ୍ରୀଯୁକ୍ତ ନୀଳମଣି ପ୍ରଧାନ ନିର୍ବାଚନରେ ଜୟଯୁକ୍ତ ହେଲେ । କେବଳ ଏଇ ନିର୍ବାଚନ ନୁହେଁ, ତାଙ୍କର ଜୀବନକାଳ ଭିତରେ ସେ ଯେତେ ନିର୍ବାଚନରେ ଅବତୀର୍ଣ୍ଣ ହୋଇଚନ୍ତି, ସବୁଥିରେ ବିଜୟୀ ହେଇଚନ୍ତି । ନିର୍ବାଚନ ପରେ ମୁଁ କଟକ ସହରକୁ ଫେରିଗଲି । କିନ୍ତୁ ଏ ହେଲା କ'ଣ ? ମୋର ମାତ୍ର ଷୋଳ ସତର ବର୍ଷ ବୟସରେ ମୁଁ ଏଇ କଟକ ସହରରେ ବସି ମୋର ପ୍ରଦେଶ—ମୋର ଦେଶର ଭବିଷ୍ୟତ ସମ୍ବନ୍ଧରେ ମୁଁ ଯେଉଁ ସ୍ୱପ୍ନ ଦେଖିଥିଲି, ସେଦିକ ମୋର ଛତିଶ ବର୍ଷ ବୟସରେ ସ୍ୱାଧୀନ ଭାରତରେ ଏଇ କଟକ ସହରରେ ବସି ମୁଁ ଦେଖୁଚି, ସେ ସ୍ୱପ୍ନର କାଣିଚାଏ ସୁଦ୍ଧା ସଫଳ ହେଇ ନାହିଁ । ସେଦିନ ମୁଁ ସ୍ୱପ୍ନ ଦେଖିଥିଲି, ସ୍ୱାଧୀନତା ଲାଭ ପରେ ଭାରତବର୍ଷରେ ନିର୍ମଳ ଗଣତାନ୍ତ୍ରିକ ଶାସନ ପ୍ରତିଷ୍ଠିତ ହେବ । ସେଦିନ ମୋର ସେଇ ସ୍ୱଳ୍ପ ବୁଦ୍ଧିରେ ମୋର କଳ୍ପିତ ଗଣତନ୍ତ୍ର ଶାସନର

ରୂପରେଖର ଆଦର୍ଶ ଥିଲେ ଦୁଇଟି ଦେଶ—ଆମେରିକା ଓ ବ୍ରିଟେନ । ଏ ଦୁଇଟି ଦେଶରେ ବହୁଦଳୀୟ ଗଣତନ୍ତ୍ର ଶାସନ ନଥିଲା । ଉଭୟ ଦେଶରେ ମୁଖ୍ୟତଃ ଦୁଇଟି କରି ଦଳ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ । ଇଂଲଣ୍ଡରେ ଜାଠ ଓ ଶ୍ରମିକଦଳ । ଦେଶର ପ୍ରତ୍ୟେକଟି ନିର୍ବାଚନ ମଣ୍ଡଳୀ ପାଇଁ ସେଇ ଦଳ ଦୁଇଟିର ପ୍ରାର୍ଥୀ ପ୍ରତିଯୋଗିତା କରୁଥିଲେ । ଯେଉଁ ଦଳଟି ସଂଖ୍ୟାଗରିଷ୍ଠତା ଲାଭ କଲା, ସେମାନେ ସରକାର ଗଢ଼ିଲେ ଓ ଅନ୍ୟ ଦଳଟି ବିପକ୍ଷଦଳର ଦାୟିତ୍ୱ ତୁଲାଇଲେ । ଏହା ଦ୍ୱାରା ନିର୍ଦ୍ଧାରିତ ସମୟ ପାଇଁ ସେମାନଙ୍କ ଦେଶର ଶାସନ ନିରାପଦରେ ଚାଲୁଥିଲା । ଆମେରିକାରେ ମଧ୍ୟ ଏଇ ପ୍ରକ୍ରିୟାରେ ସେମାନଙ୍କର ଡେମୋକ୍ରାଟିକ୍ ଓ ରିପବ୍ଲିକାନ୍ ଦଳ ସମୟାନୁକ୍ରମେ ଦେଶର ଶାସନ ତୁଲାଇ ଆସୁଚନ୍ତି । କିନ୍ତୁ ଭାରତରେ ହେଲା କ'ଣ ? ବହୁଦିନ ଧରି ଏକମାତ୍ର କଂଗ୍ରେସ ବ୍ୟତୀତ ଅନ୍ୟ କୌଣସି ଦଳ ଶାସନକୁ ଆସିପାରିଲେ ନାହିଁ । ତାର କାରଣ କଂଗ୍ରେସ ଦେଶର ପ୍ରତ୍ୟେକ ନିର୍ବାଚନ ମଣ୍ଡଳୀରେ ପ୍ରାର୍ଥୀ ଦେଇ ଆସିଚି । କିନ୍ତୁ ଅନ୍ୟ କୌଣସି ରାଜନୈତିକ ଦଳ ପ୍ରତ୍ୟେକ ନିର୍ବାଚନ ମଣ୍ଡଳୀରେ ପ୍ରାର୍ଥୀ ଦେବାକୁ ସମର୍ଥ ହୋଇ ପାରି ନାହାଁନ୍ତି । ଥରେ ଓଡ଼ିଶା ରାଜ୍ୟର ନିର୍ବାଚନ ସଂକ୍ରାନ୍ତରେ ସେ ବେଳର କଂଗ୍ରେସ ନେତା ଡକ୍ଟର ହରେକୃଷ୍ଣ ମହତାବ କଟକ ମ୍ୟୁନିସିପାଲଟି ପଡ଼ିଆରେ ଏକ ନିର୍ବାଚନ ସଭାରେ ଗୋଟିଏ ସରସ ସୁନ୍ଦର କଥା କହିଥିଲେ । ସେଥର କଂଗ୍ରେସ ଓଡ଼ିଶା ବିଧାନସଭାର ସମସ୍ତ ସ୍ଥାନ ପାଇଁ ପ୍ରତିଯୋଗିତା କରୁଥାଏ । ବିଧାନ ସଭାରେ ମୋଟ୍ ଆସନ ସଂଖ୍ୟା ବୋଧହୁଏ ଏକଶହ ଚାଳିଶ କିମ୍ବା ଏକଶହ ଏକଚାଳିଶ । କଂଗ୍ରେସର ଯିଏ ମୁଖ୍ୟ ବିରୋଧୀ ଦଳ, ସେମାନେ ମାତ୍ର ଅଣ୍ଡଷଠିଟି ସ୍ଥାନରେ ପ୍ରତିଯୋଗିତା କରୁଥା'ନ୍ତି । ସେଦିନ ସଭାରେ ଶ୍ରୀଯୁକ୍ତ ମହତାବ ଏଇ ପ୍ରସଙ୍ଗଟି ଉଲ୍ଲେଖ କରି କହିଲେ—ଆମେ ତ ସବୁ ସ୍ଥାନରେ ପ୍ରତିଯୋଗିତା କରୁଚୁ, ପ୍ରାର୍ଥୀ ଦେଇଚୁ—ଆମେ ଯଦି ସଂଖ୍ୟାଗରିଷ୍ଠତା ଲାଭ କରିବୁ, ଆମେ ସରକାର ଗଢ଼ିବୁ, ତା'ନହେଲେ ଆମେ ବିରୋଧୀ ଦଳରେ ବସିବୁ । ଏ ନିର୍ବାଚନରେ ପ୍ରମୁଖ ବିପକ୍ଷ ଦଳ ତ ମାତ୍ର ଅଣ୍ଡଷଠିଟି ନିର୍ବାଚନମଣ୍ଡଳୀରେ ପ୍ରାର୍ଥୀ ଦେଇଚନ୍ତି । ସେମାନେ ଯଦି ସମସ୍ତେ ଜୟଯୁକ୍ତ ହୋଇ ଆସନ୍ତି, ତେବେ ବି ସେମାନେ ସଂଖ୍ୟାଗରିଷ୍ଠ ହୋଇପାରିବେ ନାହିଁ । ତା'ହେଲେ ଏଥିରୁ କ'ଣ ଏଇଆ ବୁଝାପଡ଼ୁନାହିଁ ଯେ, ସେମାନେ କେବଳ ଆମ ସହିତ ଆସେମ୍ବ୍ଲିରେ କଳିକଜିଆ କରିବା ପାଇଁ ଏ ନିର୍ବାଚନ ଲଢୁଚନ୍ତି ? କେବଳ ଓଡ଼ିଶା ବା ଅନ୍ୟ ରାଜ୍ୟ ନୁହେଁ, ସ୍ୱାଧୀନତା ପରଠାରୁ ଭାରତବର୍ଷରେ ମଧ୍ୟ ଏଇ ଅବ୍ୟବସ୍ଥା ଲାଗିରହିଚି । କଂଗ୍ରେସ ବ୍ୟତୀତ ଅନ୍ୟ କୌଣସି ଏକକ ଦଳ ପାର୍ଲିଆମେଣ୍ଟ ପାଇଁ

ସମସ୍ତ ନିର୍ବାଚନମଣ୍ଡଳୀରେ ପ୍ରତିଯୋଗିତା କରିପାରିଲେ ନାହିଁ । ଗୋଟିଏ ରାଜନୈତିକ ଦଳ ସ୍ୱାଧୀନତା ଲାଭ ପରଠାରୁ ପ୍ରାୟ ସପ୍ତମ ଦଶକ ପର୍ଯ୍ୟନ୍ତ ଯଦି ନିରଙ୍କୁଶ କ୍ଷମତାରେ ରୁହେ ଓ ଏଥିପାଇଁ ଶାସନ ପରିଚାଳନାରେ ଯଦି କିଛି ଦୋଷ ତ୍ରୁଟି ପରିଲକ୍ଷିତ ହୁଏ, ତେବେ ଏ ଦୋଷ ଆମେ କାହାକୁ ଦେବା !

## ସପ୍ତମ ଦଶକରେ ସମସ୍ତ ଶୃଙ୍ଖଳା ଓ ସଂଯମ ଭଙ୍ଗକାରୀ ଆନ୍ଦୋଳନ ବିହାରରୁ ଆରମ୍ଭ

ମୁଁ ସେତେବେଳେ ବିହାରର ପାଟନା ସହର ଅଦୂରସ୍ଥ ଏକ ସବ୍‌ଡିଭିଜନ ସହର ଦାନାପୁରରେ ରହୁଥାଏ । ଏତିକବେଳେ କଂଗ୍ରେସର କେତେକ ବିରୁଦ୍ଧ ଦଳ ସେ ବର୍ଷ ବିହାର ବନ୍ଦ ଆନ୍ଦୋଳନ ହେବ ବୋଲି ଆହ୍ୱାନ ଦେଲେ । ଅକ୍ଟୋବର ଦୁଇ ତାରିଖ ଅର୍ଥାତ୍ ଗାନ୍ଧୀଜୟନ୍ତୀ ଦିନଠାରୁ ତିନିଦିନ ବ୍ୟାପି ବିହାରରେ ସମସ୍ତ ଅଫିସ, ସ୍କୁଲ, କଲେଜ, ଦୋକାନ ବଜାର, ଯାନବାହନ ଆଦି ଚଳାଚଳ ବନ୍ଦ ରହିବ । ଦରକାର ପଡ଼ିଲେ ସରକାରୀ ବେସରକାରୀ ବସ୍ ଓ ଟ୍ରେନରେ ମଫସଲ ଅଞ୍ଚଳରୁ ଯୁବକମାନେ ଜବରଦସ୍ତ ବିନା ଟିକେଟରେ ପାଟନାକୁ ଆସି ଆନ୍ଦୋଳନରେ ଯୋଗଦେବେ । ....ଅକ୍ଟୋବର ଦୁଇ ତାରିଖ ପୂର୍ବାହ୍ନ—ଆମେ ଖବର ପାଇଲୁ, ଦଳେ ଆନ୍ଦୋଳନକାରୀ ଯୁବକ ହାତରେ ନିଆଁହୁଳା ଧରି ସରକାରୀ ସର୍କିଟ ହାଉସ୍‌ର ଦୁଇଟି ପ୍ରଶସ୍ତ କୋଠରିକୁ କିରାସିନ ତାଳି ନିଆଁ ଲଗାଇ ଧ୍ୱଂସ କରିଦେଲେ । ସର୍କିଟ୍ ହାଉସରେ ସାଧାରଣତଃ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ କିମ୍ବା ସରକାରଙ୍କର କେହି ବିଶିଷ୍ଟ ଭଦ୍ରବ୍ୟକ୍ତି ଅତିଥିଭାବେ ଆସି ରହିଥା'ନ୍ତି । ସେଦିନ ସର୍କିଟହାଉସର ଦୁଇଟି କୋଠରିକୁ ଜାଳି ପୋଡ଼ି ଦେବା ଦ୍ୱାରା ସେମାନେ ବହୁ ମୂଲ୍ୟବାନ ଆସବାବପତ୍ର ପୋଡ଼ି ଦେବା ସଙ୍ଗେ ସଙ୍ଗେ କେତେଜଣ ପଦସ୍ଥ ଅଫିସର ଓ ବିଶିଷ୍ଟ ଅତିଥିଙ୍କ ଜିନିଷପତ୍ର ମଧ୍ୟ ପୋଡ଼ିଦେଲେ । ଯଦି ଏ ଆନ୍ଦୋଳନ ଏହିପରି ଚାଲେ, ତା' ହେଲେ ଦେଶରେ ଶୃଙ୍ଖଳା ଓ ସଂଯମର ସ୍ଥାନ ରହିବ କେଉଁଠି ? ...ସେଇଦିନ ମଧ୍ୟାହ୍ନ । ଦାନାପୁର୍ ଏସ୍. ଡି. ଓ ଙ୍କ ଫାଟକ ସେପାଖରେ ଦୁଇ ତିନିଜଣ ବାଳକ ବସିଥିବାର ମୁଁ ଦେଖିଲି । ମୁଁ ଫାଟକ ନିକଟକୁ ଗଲି । ସେମାନେ ମତେ ଦେଖି ଠିଆ ହୋଇଯାଇ ବିଡ଼ି ଟାଣିବା ପାଇଁ ଦିଆସିଲି ମତେ ମାଗିଲେ । ଏଥିରେ ମୁଁ ଟିକେ ଆମୋଦ ଅନୁଭବ କଲି । ସେମାନଙ୍କ ପାଇଁ ଦିଆସିଲି ଯୋଗାଡ଼ କରିଦେଲି । ସେମାନେ ବିଡ଼ି ଟାଣିଲେ । ସେମାନେ ଏଠିକି କାହିଁକି ଆସିଚନ୍ତି ପଚାରିଲି—ଉତ୍ତର ମିଳିଲା । ସେମାନେ ଏସ. ଡ଼ି. ଓ. ସାହେବଙ୍କ ଅଫିସ

ଯିବା ପାଇଁ ଛାଡ଼ିବେନି । ବିହାର ବନ୍ଦ । ସେଥିପାଇଁ ସେମାନେ ପିକେଟିଂ କରୁଚନ୍ତି । ମୋର ଆମୋଦ ବଢ଼ି ବଢ଼ି ଚାଲୁଚି । ସେମାନେ କୋଉ ଦଳର ବୋଲି ଜାଣିବାକୁ ଚାହିଁଲାରୁ ସେମାନେ କହିଲେ ଯେ, ତାଙ୍କର ଦଳ ଫଳ କିଚ୍ଛି ନାହିଁ । କିଏ ଗୋଟାଏ ଦଳ ସେମାନଙ୍କୁ ଦିନକୁ ମଜୁରି ଟଙ୍କାଏ ପଚଶ ପଇସା ଦେଉଚି, ସେମାନେ ପିକେଟିଂ କରୁଚନ୍ତି । ଚା' ଖାଇବା ପାଇଁ ସେମାନେ ଟିକେ ଦୂରକୁ ଚାଲିଗଲେ । ମୋ' ଭାବନାର ସୀମା ନାହିଁ । ସେତେବେଳେ ସ୍ୱାଧୀନତା ସଂଗ୍ରାମରେ କଂଗ୍ରେସର କର୍ମୀମାନେ ଏମିତି ପିକେଟିଂ କରୁଥିବାବେଳେ କିଚ୍ଛି ତ ମଜୁରି ନେଉ ନ ଥିଲେ । ଅଥଚ ଆଜି ଗୋଟାଏ ରାଜନୈତିକ ଦଳ ବିରୋଧରେ ଶୃଙ୍ଖଳା ଓ ସଂଯମ ବିବର୍ଜିତ ସଂଗ୍ରାମ କରିବା ପାଇଁ ଏମାନଙ୍କୁ ଦୈନିକ ମଜୁରି ଦିଆଯାଇ ନିଯୁକ୍ତ କରାଯାଇଚି ! ଏହିପରି ଭାବେ ଏ ସଂଗ୍ରାମ ବା ଆନ୍ଦୋଳନ ବିହାରରେ ଠିକଦିନ ଚାଲିଲା ପରେ ଏହା କ୍ରମେ ଦେଶର ଅନ୍ୟ ଅଞ୍ଚଳକୁ ବ୍ୟାପିଲା । କ୍ରମେ ଅବସ୍ଥା ଅସମ୍ଭାଳ ହୋଇଉଠିଲା । ଏକଥା ଦେଶବାସୀ ସମସ୍ତେ ଅନୁଭବ କରୁଥା'ନ୍ତି । ମୋ' ଅଙ୍ଗେ ନିଭେଇବା କଥା । ବିହାର ଧାନବାଦ ଷ୍ଟେସନରୁ ସେଦିନ ମୋର ଆସିବା ପାଇଁ ଚେୟାର୍ କାରରେ ଟିକେଟ ବୁକ୍ ହୋଇଚି । ଧାନବାଦର କଲେକ୍ଟରଙ୍କ ପାଇଁ ମଧ୍ୟ ଚେୟାର୍ ରିଜର୍ଭ କରାହୋଇଚି । କିନ୍ତୁ ଆମେ କମ୍ପାର୍ଟମେଣ୍ଟକୁ ଉଠି ଦେଖିଲୁ, ସବୁ ଚେୟାର୍‌ରେ ଲୋକ ଭର୍ତ୍ତି । ଆମମାନଙ୍କ କଥା ପଚାରେ କିଏ ? ଧାନବାଦ କଲେକ୍ଟରଙ୍କ ପାଇଁ ସିଟ୍ ରିଜର୍ଭ ହୋଇଥିଲେ ମଧ୍ୟ ସେ ଚେୟାର୍ ପାଉନାହାନ୍ତି । ଆହୁରି ଅନେକ ଯାତ୍ରୀଙ୍କର ଏଇ ଅବସ୍ଥା । ଆମର ବିଶିଷ୍ଟ ସଙ୍ଗୀତଶିଳ୍ପୀ ପଣ୍ଡିତ ରଘୁନାଥ ପାଣିଗ୍ରାହୀ ତାଙ୍କ ପତ୍ନୀ ପଦ୍ମଶ୍ରୀ ସଂଯୁକ୍ତାଙ୍କ ସହ ଦୁଇଟି ଚେୟାର୍ ଟିକେଟ ବୁକ୍ କରିଥିଲେ ହେଁ ସେମାନେ ସେମିତି ଅସହାୟ ଅବସ୍ଥାରେ ଠିଆ ହୋଇ ରହିଚନ୍ତି । ରେଲୱେ ଅଫିସରଙ୍କର ସମସ୍ତ ପ୍ରଚେଷ୍ଟା ବିଫଳ ହେଲାଣି । ବିନା ଟିକେଟ କିମ୍ବା ଅର୍ଡ଼ିନାରି ଦ୍ୱିତୀୟ ଶ୍ରେଣୀ ଟିକେଟ କିଣି ବହୁଲୋକ ଚେୟାର୍‌ସିଟ୍ ଦଖଲ କରି ବସିଚନ୍ତି । ଟ୍ରେନ ଛାଡ଼ିପାରୁନି । ପ୍ରାୟ ପଇଁଚାଳିଶ ମିନିଟ ପରେ ଆମେ କେତେଜଣ ଗୋଟିଏ ଗୋଟିଏ ଚେୟାର୍ ପାଇଲୁ । ଅନ୍ୟ କେତେକ ଯାତ୍ରୀ ସେମିତି ଠିଆ ହୋଇ ରହିଲେ, ଟ୍ରେନ ଛାଡ଼ିଲା । ବହୁ କ୍ଷେତ୍ରରେ ଏହିପରି ବିଶୃଙ୍ଖଳା ଓ ଅବ୍ୟବସ୍ଥା ଲାଗି ରହିଥାଏ ।

## ଜରୁରୀ କାଳୀନ ଅବସ୍ଥା ଓ କାଉଁରିକାଠି ସ୍ପର୍ଶ

ଶେଷକୁ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ ଅନ୍ୟମାନଙ୍କ ପରାମର୍ଶକ୍ରମେ ଦେଶରେ ଏମର୍ଜେନସୀ ବା ଜରୁରୀକାଳୀନ ଅବସ୍ଥା ଜାରି କଲେ । ଜାରିହେବା ସଙ୍ଗେ

ସଙ୍ଗେ ଯେପରି ଏକ କାଉଁରୀ କାଠି ସ୍ପର୍ଶରେ ସେବେଳର ପ୍ରଚଳିତ ଶାନ୍ତି ଶୃଙ୍ଖଳା ବିହୀନ କଳଙ୍କିତ ବିପ୍ଳବର ସମସ୍ତ କାଳିମା ଗୋଟାଏ ମୁହୂର୍ତ୍ତକରେ ଯେମିତି ଉଭେଇଗଲା । ଏହା ପୂର୍ବରୁ ଯେମିତି ସରକାରୀ କର୍ମଚାରୀମାନେ ମନଇଚ୍ଛା ଅଫିସ ଆସୁଥିଲେ, ଅଫିସ ସମୟ ଭିତରେ ରେଡ଼ିଓ ଶୁଣିବା ଓ ତାସ ଖେଳିବା ଅଭିଯୋଗ ହେଉଥିଲା । ଏହିପରି ସମସ୍ତ ଅନାଚାର ଓ କୁଶାସନ ଜରୁରୀକାଳୀନ ବ୍ୟବସ୍ଥା ଜାରୀ ହେଲାପରେ ସେସବୁ ଯେମିତି ସ୍ୱପ୍ନର ବସ୍ତୁ ହୋଇ ରହିଗଲା । ମନେ ପଡ଼ୁଯାଉଛି, ଧାନବାଦରୁ ଯେଉଁ ଚେୟାର୍ କମ୍ପାର୍ଟମେଣ୍ଟରେ ମୁଁ ଆସିଥିଲି ଓ ସେଥିରେ ଧାନବାଦର କଲେକ୍ଟର ମଧ୍ୟ ତାଙ୍କ ପାଇଁ ଚେୟାର ରିଜର୍ଭ ହୋଇଥିବା ସତ୍ତ୍ୱେ ପ୍ରଥମେ ବସିବାକୁ ସ୍ଥାନ ପାଇ ନ ଥିଲେ, ଜରୁରୀକାଳୀନ ଅବସ୍ଥା ଜାରୀ ହେବାର ପ୍ରାୟ ବର୍ଷକ ପରେ ମୁଁ ସପରିବାର ଠିକ୍ ସେଇ କମ୍ପାର୍ଟମେଣ୍ଟରେ ଆସିଲି । ସେଦିନ ଦେଖିଲି ସେଇ କମ୍ପାର୍ଟମେଣ୍ଟରେ ପ୍ରାୟ ଏକ ଚତୁର୍ଥାଂଶ ସ୍ଥାନ ଖାଲି ପଡ଼ିଛି । ରେଲୱେର ଅଫିସରମାନେ ଥରକୁ ଥର ଆସି ଚେକ୍ କରି ଯାଉଛନ୍ତି । ଟ୍ରେନ୍‌ସବୁ ଠିକ୍ ସମୟରେ ଯାତାୟାତ କରୁଛି । ସରକାରୀ ବସ୍‌ରେ ଯଥାରୀତି ଟିକେଟ୍ କାଟି ଯାତ୍ରୀମାନେ ଉଠୁଛନ୍ତି । ସରକାରୀ କର୍ମଚାରୀମାନେ ଠିକ୍ ସମୟରେ ଦପ୍ତରକୁ ଆସିଲେ । ଜଳଯୋଗାଣ, ବିଜୁଳି-ଯୋଗାଣ ଯଥାରୀତି ଚାଲିଲା । ଅବସ୍ଥା ଏମିତି ହେଲା ଯେ, ସାଧାରଣ ଲୋକେ ହାତଯୋଡ଼ି ପ୍ରାର୍ଥନା କଲେ—ପ୍ରଭୁ, ଏ ଏମ୍‌ରଜେନସି ଏମିତି ଲାଗିରହିଥାଉ । ପ୍ରାୟ ଦୁଇବର୍ଷ ପରେ ଜରୁରୀକାଳୀନ ଅବସ୍ଥା ଉଠାଇ ଦିଆଗଲା । ସାନ୍ଦ୍ର ଲୋକସଭା ନିର୍ବାଚନ ହେଲା । ଲୋକସଭା ନିର୍ବାଚନରେ ସ୍ୱାଧୀନତା ପରଠାରୁ ଏଇ ପ୍ରଥମଥର କଂଗ୍ରେସ ପରାଜିତ ହେଲା । ଆଉ ସବୁଠୁ ବଡ଼ କଥା, ସ୍ୱୟଂ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ ଏ ନିର୍ବାଚନରେ ପରାଜୟ ବରଣ କଲେ ।

### ପ୍ରଥମ ଜନତା ଦଳ

ଏ ନିର୍ବାଚନରେ ଯୋଉମାନେ କଂଗ୍ରେସ ବିରୋଧରେ ଜୟଯୁକ୍ତ ହେଲେ, ସେମାନେ କୌଣସି ଏକ ନିର୍ଦ୍ଦିଷ୍ଟ ଦଳର ପ୍ରାର୍ଥୀ ନ ଥିଲେ । ଜନସଂଘ, ସ୍ୱତନ୍ତ୍ର, ଲୋକଦଳ ଓ ବାମପନ୍ଥୀ ପ୍ରଭୃତି ବିଭିନ୍ନ ଦଳ କଂଗ୍ରେସର ବିରୋଧରେ ଏକ ନିର୍ବାଚନ ମେଣ୍ଟଗଢ଼ି ଜୟଯୁକ୍ତ ହୋଇଥିଲେ । ଏଇ ମିଳିତଦଳର ନାମ ରଖାଗଲା ଜନତାଦଳ ଆଉ ଏ ମିଳିତ ଦଳର ନେତା ହେଲେ ଶ୍ରୀ ମୋରାର୍‌ଜୀ ଦେଶାଇ—ସେ ହେଲେ ଏଇ ମିଳିତ ଦଳ ସରକାରର ପ୍ରଧାନମନ୍ତ୍ରୀ । ସ୍ୱାଧୀନ ଭାରତ ଏକ ସାଧାରଣତନ୍ତ୍ର ରାଷ୍ଟ୍ରର ମର୍ଯ୍ୟାଦା ଲାଭ କଲାପରେ ଯେତେବେଳେ ମନ୍ତ୍ରିମଣ୍ଡଳ ଗଠିତ ହୋଇଛି,

ସେମାନେ ସମସ୍ତେ ପାର୍ଲିଆମେଣ୍ଟର ସେଣ୍ଟ୍ରାଲ୍ ହଲରେ ଶପଥ ଗ୍ରହଣ କରିଚନ୍ତି । ଏହା ହେବାର କଥା । କିନ୍ତୁ ଏ ଜନତା ଦଳ ଏକ ନୂତନ ପରମ୍ପରା ସୃଷ୍ଟି କଲେ । ସେମାନେ ପାର୍ଲାମେଣ୍ଟକୁ ତ୍ୟାଗ କରି ଜାତିର ପିତା ମହାତ୍ମାଗାନ୍ଧୀଙ୍କ ସମାଧି-ପୀଠରେ ଶପଥ ଗ୍ରହଣ କରି ଏକା ଭାରତବର୍ଷ କାହିଁକି, ଭାରତ ବାହାରେ ବହୁ ରାଷ୍ଟ୍ରରେ ମଧ୍ୟ ଚମକ ଖେଳାଇଦେଲେ । ବାସ୍ତବରେ ଦେଶର ସାଧାରଣ ଜନତାଙ୍କ ମନରେ ଏଇ ଦୃଢ଼ ବିଶ୍ୱାସ ଜନ୍ମିଥିଲା ଯେ, ଲୋକନାୟକ ଜୟପ୍ରକାଶ ନାରାୟଣଙ୍କ ଆଶୀର୍ବାଦ ସହ ଗାନ୍ଧିଜୀଙ୍କ ନାମସ୍ମରଣ କରି ଯେଉଁ ଦଳ ସରକାର ଗଢ଼ିବା ପାଇଁ ଶପଥ ନେଇଚନ୍ତି, ସେମାନେ କେବେହେଲେ ସେଇ ଗାନ୍ଧିଜୀଙ୍କ ପ୍ରଦର୍ଶିତ ମାର୍ଗରୁ ବିଚ୍ୟୁତ ହେବେ ନାହିଁ । ଦେଶରେ ଜରୁରୀକାଳୀନ ଅବସ୍ଥା ଜାରି ହୋଇଥିବା ବେଳେ ଦେଶରେ ଶାସନ ବହୁଦିଗରୁ ସ୍ୱେଚ୍ଛାରୁ ରୂପେ ଚାଲୁଥିଲେ ମଧ୍ୟ ତାହା ଇନ୍ଦିରାଗାନ୍ଧୀଙ୍କର "ଏକଦେଶଦର୍ଶୀ ନୀତି ବୋଲି" କୁହାଯାଉଥିଲା । ସେଇଥିପାଇଁ ହୁଏତ ଇନ୍ଦିରାଗାନ୍ଧୀ ପରାଜିତା ହେଲେ ଓ ଜନତାଦଳ କ୍ଷମତାକୁ ଆସିଲେ । ଏ ନିର୍ବାଚନର ଫଳାଫଳ ମୋ' ପାଇଁ ଏଇ ଦୃଷ୍ଟିରୁ ସ୍ୱାଗତଯୋଗ୍ୟ ହୋଇଥିଲା ଯେ, ଏକ ଗଣତାନ୍ତ୍ରିକ ରାଷ୍ଟ୍ରର **Fundamental** ଶକ୍ତି ହେଲା ଦୁଇଟି ସମଶକ୍ତି-ସମ୍ପନ୍ନ ରାଜନୈତିକ ଦଳ । ନିର୍ବାଚନରେ ଗୋଟିଏ ଦଳ କ୍ଷମତାକୁ ଆସିଲେ, ଆଉ ଗୋଟିଏ ଦଳ ବିରୋଧୀ ଦଳରେ ବସିବେ । ବାସ୍ତବରେ କୁହାଯାଇଥାଏ, ଏକ ଗଣତାନ୍ତ୍ରିକ ରାଷ୍ଟ୍ରପାଇଁ ବହୁ ବିଭିନ୍ନ ମତବାଦର ବହୁ ରାଜନୈତିକ ଦଳର ଉପସ୍ଥିତି ଶୁଭଙ୍କର ନୁହେଁ । ଏହାର ପ୍ରକୃଷ୍ଟ ଉଦାହରଣ ହଉଚନ୍ତି ଆମେରିକା ଓ ଇଂଲଣ୍ଡ—ଏଇ ଦୁଇଦେଶ । ଆମ ଦେଶରେ ଗଣତନ୍ତ୍ର ଶାସନ ପ୍ରଚଳନ ଆରମ୍ଭରୁ ମୁଁ ଏଇ ସ୍ୱପ୍ନ ଦେଖି ଆସୁଥିଲି । ଏବେ ଜନତାଦଳ ଗଠିତ ହେଲା ପରେ ମୋର ସ୍ୱପ୍ନ ସାକାର ହେଲା ବୋଲି ମୋର ଦୃଢ଼ ଧାରଣା ହେଲା । ଜନତାଦଳ କ୍ଷମତାରେ ରହିଲେ ଓ କଂଗ୍ରେସ ବିପକ୍ଷଦଳ ଆସନରେ ବସିଲେ ।

## ପ୍ରଥମ ଜନତା ସରକାର

ହଁ, ଜନତାଦଳ ଶାସନଭାର ଗ୍ରହଣ କଲେ । ମୋରାରଜୀ ଦେଶାଇ ପ୍ରଧାନମନ୍ତ୍ରୀ, ଚୌଧୁରୀ ଚରଣ ସିଂହ ସ୍ୱରାଷ୍ଟ୍ରମନ୍ତ୍ରୀ, ଅଟଳବିହାରୀ ବାଜ୍‌ପେୟୀ ବୈଦେଶିକମନ୍ତ୍ରୀ, ରାଜନାରାୟଣ ସ୍ୱାସ୍ଥ୍ୟମନ୍ତ୍ରୀ, ବିଜୁପଟ୍ଟନାୟକ ଇସ୍ପାତ-ମନ୍ତ୍ରୀ—ଏହିପରି ଅନ୍ୟ ମନ୍ତ୍ରୀମାନଙ୍କ ସମାବେଶରେ ଦେଶରେ ଜନତା ଶାସନ ଚାଲିଲା । ସେତେବେଳେ ସେ ପର୍ଯ୍ୟନ୍ତ ଚନ୍ଦ୍ରଶେଖର କଂଗ୍ରେସ ଦଳରେ ରହିଥିଲେ । ସେ କହିଥିଲେ—ଲୋକସଭା ନିର୍ବାଚନରେ ଏହି ଐତିହାସିକ ବିଜୟ

ହୋଇଥିବା ପ୍ରକୃତରେ ଏ ଦେଶର ଜନତାର ବିଜୟ । ଶାସନର କ୍ଷମତାକୁ ଆସିଲା ପରେ ସ୍ୱରାଷ୍ଟ୍ରମନ୍ତ୍ରୀ ଚରଣ ସିଂହ ଦେଶର ନଅଗୋଟି କଂଗ୍ରେସ-ଶାସିତ ରାଜ୍ୟରୁ କଂଗ୍ରେସ ଶାସନ ଉଠାଇ ଦେଇ ଓ ବିଧାନସଭା ଭଙ୍ଗ କରି ଦେଶରେ ଚହଲ ସୃଷ୍ଟି କରିଦେଲେ । ଅଥଚ ଏଇ ନଅ ଗୋଟି ରାଜ୍ୟର ଶାସନ ବିରୋଧରେ କୌଣସି ବିଧିବଦ୍ଧ ଅଭିଯୋଗ ନ ଥିଲା । ସେହିପରି ବାଣିଜ୍ୟମନ୍ତ୍ରୀ ଜର୍ଜ ଫର୍ଣ୍ଣାଣ୍ଡିସ ସେ ବେଳର ବହୁ ଲୋକପ୍ରିୟ ଥଣ୍ଡା ପାନୀୟ କୋକାକୋଲାର ଉତ୍ପାଦନ ଓ ବିକ୍ରୟ କଲମର ଗୋଟିଏ ଗାରରେ ଲୋପ କରିଦେଇ ଆଉ ଏକ ଥଣ୍ଡା ପାନୀୟ କମ୍ପାନୀ ପାଇଁ ଲାଇସେନ୍‌ସ ମଞ୍ଜୁର କରି ଯେମିତି ଜନତାର ବାହାବାଃ ଲାଭ କଲେ, ସେମିତି ବୈଦେଶିକ ମନ୍ତ୍ରୀ ଅଟଳବିହାରୀ ବାଜପେୟୀ ଜାତିସଂଘରେ ହିନ୍ଦୀରେ ଭାଷଣ ଦେଇ ହିନ୍ଦୀଭାଷା-ଭାଷୀ ଜନତାଙ୍କ ଅକୁଣ୍ଠ ପ୍ରଶଂସାର ପାତ୍ର ହେଲେ । ଏ ସବୁକୁ କିନ୍ତୁ ଟପିଗଲେ ସ୍ୱାସ୍ଥ୍ୟମନ୍ତ୍ରୀ ରାଜନାରାୟଣ । ଉତ୍ତର ପ୍ରଦେଶ ରାଇବରେଲୀ ନିର୍ବାଚନମଣ୍ଡଳୀରେ ଇନ୍ଦିରାଗାନ୍ଧୀଙ୍କୁ ପରାଜିତ କରିଥିଲେ ବୋଲି ସେ କୁଆଡ଼େ ନିଜେ ମୋରାର୍‌ଜୀ ଦେଶାଇ, ଚୌଧୁରୀ ଚରଣ ସିଂହ ଓ ବାବୁ ଜଗଜ୍ଜୀବନ ରାମଙ୍କୁ ଆଡ଼େଇ ଦେଇ ନିଜେ ପ୍ରଧାନମନ୍ତ୍ରୀ ହେବେ ବୋଲି ଦାବୀ କରିଥିଲେ । ମନ୍ତ୍ରୀପଦରେ ରହିଲା ପରେ ଶ୍ରୀ ରାଜନାରାୟଣଙ୍କ ଆଦେଶରେ କୁଆଡ଼େ ଟ୍ରେନ୍ ଓ ପ୍ଲେନ୍ ଘଣ୍ଟା ଘଣ୍ଟା ଅଟକି ଯାଉଥିଲା । କିନ୍ତୁ ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀ ରାଜନାରାୟଣ ବି. ଏ. ବି. ଏଲ ଙ୍କ ଜୋକର୍ ବା ଦ୍ୱାରୀବେଶ ଅର୍ଥାତ୍ ମଥାରେ ଗୋଟିଏ ବଡ଼ ରୁମାଲ ଆକାରର ସବୁଜ ରଙ୍ଗର ପଗଡ଼ି, ବକ୍ଷୋସ୍ଥଳରେ ଅଯତ୍ନ ବର୍ଦ୍ଧିତ ଦାଢ଼ି, ଦେହରେ ଢୋଲା ପୋଷାକ ଓ ମୁହଁରେ ତଦ୍ରୂପ ହସ ତାଙ୍କୁ ଦେଶ ବିଦେଶରେ ଏକ ଜୋକର୍ ବୋଲି ପରିଚିତ କରାଇଥିଲା । ସେତେବେଳେ ପ୍ରଧାନମନ୍ତ୍ରୀ ମୋରାର୍‌ଜୀ ଦେଶାଇଙ୍କ ଲଣ୍ଡନ ଯାତ୍ରାବେଳେ ସେଠି ତାଙ୍କ ଦୃଷ୍ଟିକୁ ଏ ରାଜନାରାୟଣ ପ୍ରସଙ୍ଗ ଯେତେବେଳେ ଅଣାଗଲା, ସେତେବେଳେ ସେ ଦୃଢ଼ତାର ସହିତ କହିଥିଲେ—Every drama must have a joker. ବାସ୍ତବରେ ବହୁଲୋକ ରାଜନାରାୟଣଙ୍କୁ ଜନତା ନାଟକର ଏକ Joker ଅଥବା ଦଳର ବହୁ ଜୋକର୍‌ଙ୍କ ମଧ୍ୟରୁ ଏକ ଜୋକର୍ ବୋଲି ଚିହ୍ନଟ କରିଥିଲେ । (ଏଇ Joker ପ୍ରସଙ୍ଗଟି The Illustrated weekly of India, dated 26 June—July 2 1977 ସଂଖ୍ୟାରେ (R.G.K) ଙ୍କ ଦ୍ୱାରା ଲିଖିତ ହୋଇଥିଲା ।

ଜନତା ଶାସନ ଚାଲିଚି, ସମସ୍ତ ଅତିକାନ୍ତ ହୋଇ ଯାଉଚି । ଏତିକିବେଳେ ଆମେ ଅନୁଭବ କଲୁ ଜନତା ଶାସନର ସ୍ତମ୍ଭ ଦୋହଲିବାକୁ ଆରମ୍ଭ କଲାଣି । ମୁଁ ସ୍ତମ୍ଭୀଭୂତ ହୋଇଗଲି—କେବେହେଲେ ଏକଥା ବିଶ୍ୱାସ କରିପାରିଲି ନାହିଁ ।

ମୋର ମନରେ ତ ଏଇ ଦୃଢ଼ ବିଶ୍ୱାସ ରହିଥିଲା ଯେ, ଏ ନିର୍ବାଚନ ପରେ ଆମର ପାର୍ଲାମେଣ୍ଟାରି ରାଜନୈତିକ କ୍ଷେତ୍ରରେ ଦୁଇଟି ସମାନ୍ତରାଳ ଦଳ ସବୁଦିନ ପାଇଁ ରହିଯିବେ । କାରଣ ମୁଁ ଜାଣିଥିଲି ଯେ, ଯେଉଁ ଦଳମାନେ ଏକତ୍ର ହୋଇ ଏହି ଜନତାଦଳ ଗଠନ କରିଛନ୍ତି, ସେମାନେ ସେମାନଙ୍କର ନିଜସ୍ୱ ଦଳକୁ ଭାଙ୍ଗି ଲୋପ କରିଦେଇଛନ୍ତି —ଏକାବେଳକେ ନିର୍ଶ୍ଚିହ୍ନ କରିଦେଇଛନ୍ତି । ଫଳରେ ଯେଉଁ ରାଜନୈତିକ ଦଳମାନେ ମିଶି ଏଇ ଜନତା ଦଳଟିକୁ ଗଠନ କରିଛନ୍ତି, ସେହି ସମସ୍ତଙ୍କର ଏଇ ନୂତନ ଜନତାଦଳ ହିଁ ନିଜସ୍ୱ ଦଳ, ସେମାନଙ୍କର ଅନ୍ୟ କିଛି ଦଳ ନାହିଁ । କିନ୍ତୁ କ୍ରମେ ଜଣାଗଲା ବାସ୍ତବରେ ଜନତା ଦଳର ଅଂଶୀଦାରମାନେ ଅନ୍ୟ ପକ୍ଷରେ ସେମାନଙ୍କର ନିଜ ନିଜର ପୁରୁଣା ଦଳକୁ ଅକ୍ଷୁଣ୍ଣ ରଖିଛନ୍ତି । ବରଂ ପୂର୍ବ ଅପେକ୍ଷା ସେମାନଙ୍କର ଦଳଗୁଡ଼ିକ ଆହୁରି ବେଶୀ ସଜାଗ, ଆହୁରି ବେଶୀ ସଜୀବ ହୋଇପଡ଼ିଛନ୍ତି । ଗୋଟିଏ ଦଳର ମନ୍ତ୍ରୀ ଏ ଭିତରେ କେତେଥର ବିଦେଶଯାତ୍ରା କଲେଣି—ସେମିତି ଆଉ କୋଉ ଦଳ କୌଣସି କୋଟିପତି ପରିବାର ସହିତ ସୁସମ୍ପର୍କ ସ୍ଥାପନ କଲେଣି—ସେକଥା ଅନ୍ୟ ଦଳମାନେ ଗୋପନରେ ଲକ୍ଷ୍ୟ ରଖୁଥା'ନ୍ତି ।....ହଁ, ଏଠି ଆଉ ଗୋଟିଏ ଘଟଣାର ଉଲ୍ଲେଖ ନ କରି ରହିପାରୁନି । କାର୍ଯ୍ୟଭାର ଗ୍ରହଣ କରିବା ପୂର୍ବରୁ ଦିଲ୍ଲୀ ବୋଟ୍ କ୍ଲବରେ ଜନତା ଦଳର ସବୁ ନେତାମାନଙ୍କ ଉପସ୍ଥିତିରେ ଏକ ବିରାଟ ସାଧାରଣ ସଭା ଅନୁଷ୍ଠିତ ହେଲା ଓ ସେଇ ସଭାର ସମସ୍ତ ବିବରଣୀ ବେତାରରେ ସେଇ ସଭାସ୍ଥଳରୁ ହିଁ ପ୍ରସାରିତ ହେଲା । ଆମେ ବେତାର ଶୁଣୁଥାଉଁ । ବେତାରରେ କୁହାଗଲା, ଏଇ ଯେ ଜନତା ଦଳ ଦେଶର ଶାସନ ଭାର ଗ୍ରହଣ କଲା, ଏଥିରେ ଦେଶରେ ଏକ ବିରାଟ ପରିବର୍ତ୍ତନ ଘଟିବ । ସେଇ ସଭାରେ ଏକ ଧର୍ମ ସଂପ୍ରଦାୟର ଜଣେ ପୁରୋଧା ଯାହା ଭାଷଣ ଦେଲେ, ସେ କଥା ଉଲ୍ଲେଖ କରିବା ପାଇଁ ମୁଁ କୁଣ୍ଠାବୋଧ କରୁଛି । ତାଙ୍କ ଭାଷଣର ଶରବ୍ୟ ଥିଲେ ଆମ ଦେଶର ପୁରାତନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ । ଇନ୍ଦିରା ଗାନ୍ଧୀଙ୍କୁ ଲକ୍ଷ୍ୟକରି ସେ "ଔରତ୍" ଶବ୍ଦଟିକୁ ବାରମ୍ବାର ଉଲ୍ଲେଖ କରୁଥିଲେ ଓ ଅତି ନିମ୍ନମାନର ଭାଷା ବ୍ୟବହାର କରି ତାଙ୍କର ନିନ୍ଦା କରୁଥିଲେ । ଏଥିରେ କେହିହେଲେ ଜଣେ ପ୍ରତିବାଦ କଲେନି ।

## ପ୍ରଧାନମନ୍ତ୍ରୀ ମୋରାରଜୀଙ୍କ ବିଦାୟ ଓ ଚରଣ ସିଂହଙ୍କ ଆଗମନ

ଜନତା ଶାସନ ଚାଲିଲା । ପ୍ରାୟ ଦୁଇବର୍ଷ—ହଁ, ଦୁଇବର୍ଷ ପରେ ଯେଉଁ ସ୍ତମ୍ଭ ଦୋହଲୁଥିଲା, ତାହା ଏକାବେଳକେ ଭୁଷୁଡ଼ି ପଡ଼ିଲା । ଚୌଧୁରୀ

ଶ୍ରୀ ଚରଣ ସିଂହ ଦାବୀ କଲେ ଯେ, ଯେହେତୁ ସେ ଗୋଟିଏ ଦଳର ନେତା, ସେ କାହିଁକି ପ୍ରଧାନମନ୍ତ୍ରୀ ନ ହେବେ ! ତାଙ୍କର ଏ ଦାବୀକୁ ପାର୍ଲାମେଣ୍ଟର ବହୁ ସଭ୍ୟ ସମର୍ଥନ କଲେ । ମୁଁ ରେଡ଼ିଓ ଶୁଣୁଥାଏ—ସମ୍ବାଦ ପ୍ରସ୍ତୁତ ହେଲା ଯେ, ଶ୍ରୀଯୁକ୍ତ ଚୌଧୁରୀଙ୍କ ସମର୍ଥନରେ କେତେଜଣ ମନ୍ତ୍ରୀ ଇସ୍ତଫା ପ୍ରଦାନ କରିଚନ୍ତି । ଏହାର ପରବର୍ତ୍ତୀ ସମ୍ବାଦ ଯେତେବେଳେ ପ୍ରସ୍ତୁତ ହେଲା, ସେତେବେଳେ କୁହାଗଲା—ଆଉ କେତେଜଣ ମନ୍ତ୍ରୀ ଇସ୍ତଫା ଦେଲେଣି । ପରବର୍ତ୍ତୀ ସମ୍ବାଦରେ ଆମେ ଜାଣିଲୁ ଯେ, ଶ୍ରୀଯୁକ୍ତ ମୋରାରଜୀ ଦେଶାଇ ତାଙ୍କ ପ୍ରଧାନମନ୍ତ୍ରୀ ପଦ ତ୍ୟାଗ କରିଛନ୍ତି ଓ ଶ୍ରୀଯୁକ୍ତ ଚରଣ ସିଂହ ନୂତନ ପ୍ରଧାନମନ୍ତ୍ରୀରୂପେ ଶପଥ ନେଇଚନ୍ତି । ଏହାର କିଛିଦିନ ପରେ ବାବୁ ଜଗଜ୍ଜୀବନ ରାମ ମଧ୍ୟ ପ୍ରଧାନମନ୍ତ୍ରୀ ପଦ ଗ୍ରହଣ କରିବା ପାଇଁ ଦାବୀ କଲେ । କିନ୍ତୁ ରାଷ୍ଟ୍ରପତି ଶ୍ରୀଯୁକ୍ତ ସଞ୍ଜୀବ ରେଡ୍‌ଡୀ ଏ ପାଗଳାମିକୁ ଆଉ ପ୍ରଶ୍ରୟ ଦେଲେ ନାହିଁ । ଦୁଇବର୍ଷ ପୂର୍ବେ ଜନତା ଦଳଯେଉଁ ଦାମ୍ଭିକତାର ପରିଚୟ ଦେଇ ଘୋଷଣା କରିଥିଲେ ଯେ, ତାଙ୍କ ଶାସନ ଦ୍ୱାରା ଦେଶରେ ଏକ ବିରାଟ ପରିବର୍ତ୍ତନ ଘଟିବ, ତାହାହିଁ ଘଟିଲା—ଜନତା ସରକାର ଭାଙ୍ଗିଲା ଓ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଓ ତାଙ୍କର କଂଗ୍ରେସ ଦଳ ପୁନର୍ବାର କ୍ଷମତାକୁ ଆସିଲେ ।

# ମୋ' ନାଟ୍ୟ ଜଗତ

ଏଇ ଶତାବ୍ଦୀର ତୃତୀୟ ଦଶନ୍ଧର କଥା । ସ୍କୁଲ ଶିକ୍ଷା ସମାପ୍ତ କରି ମୋର ଜନ୍ମସ୍ଥଳୀ—ଜଗତ୍‌ସିଂହପୁର ଅଞ୍ଚଳର ପୁରୁଣାଗଡ଼ ଗ୍ରାମଠାରୁ ସୁଦୂରବର୍ତ୍ତୀ ପଶ୍ଚିମ ଓଡ଼ିଶାର ସମ୍ବଲପୁର ଜିଲ୍ଲା ରାଜବୋଡ଼ାସମ୍ବର—ପଦ୍ମପୁରଠାରେ କିଛି ସମୟ କଟାଇଥିଲି । ଏଇ ଅବସରରେ ପ୍ରଖ୍ୟାତ ଉପନ୍ୟାସକାର କାହ୍ନୁଚରଣ ମହାନ୍ତିଙ୍କ "ଜଷ୍ଟିଭି" ଉପନ୍ୟାସକୁ—ଯାହା ଲୁହନ୍ତି, ଗୋଟିଏ ନିଃଶ୍ୱାସରେ ପଢ଼ି ଶେଷ କଲି । ପୁଣି ଆହୁରି ବିସ୍ମୟର କଥା, ପଢ଼ା ଶେଷ କରି 'ଜଷ୍ଟିଭି' ଉପନ୍ୟାସର ଏକ ନାଟ୍ୟରୂପ ଦେବାପାଇଁ କେତୋଟି ଦୃଶ୍ୟ ସେଇ ସଙ୍ଗେ ସଙ୍ଗେ ଲେଖିପକେଇଲି । ଅଥଚ ସେତେବେଳକୁ "ବଲଙ୍ଗା ଆର୍ଟ ଥିଏଟର୍" ଓ କଟକରେ ତତ୍‌କାଳୀନ ମେଡ଼ିକାଲ୍ ସ୍କୁଲ୍ ଓ ରେଭେନ୍‌ସା କଲେଜର ନାଟ୍ୟ ସଂସଦ ଦ୍ୱାରା ଅଭିନୀତ କେତୋଟି ନାଟକର ଅଭିନୟ ଦେଖିବା ବ୍ୟତୀତ ନାଟକ ସମ୍ପର୍କରେ ମୋର ଅନ୍ୟ କୌଣସି ବାସ୍ତବ ଅଭିଜ୍ଞତା ନ ଥିଲା । ଏପରିକି ଅଶ୍ୱିନୀକୁମାରଙ୍କ "ସେଓଜୀ" ନାଟକ ବ୍ୟତୀତ ଅନ୍ୟ କୌଣସି ନାଟକ ପଢ଼ିବାର ସୁଯୋଗ ମୁଁ ପାଇ ନ ଥିଲି । ଅଥଚ 'ଜଷ୍ଟିଭି' ପାଠ କରିବା ପର ମୁହୂର୍ତ୍ତରେ ହିଁ ମୁଁ ଏହାର ନାଟ୍ୟରୂପ ଦେବା ପାଇଁ କେତୋଟି ଦୃଶ୍ୟ ଲେଖି ବସିଲି । ····ମାତ୍ର କେତୋଟି ଦୃଶ୍ୟ ! କିନ୍ତୁ ଲେଖିଲି କାହିଁକି ? ଆଜି ପ୍ରାୟ ଅର୍ଦ୍ଧ ଶତାବ୍ଦୀ ପରେ ଏକ ସିଂହାବଲୋକନରେ ମୁଁ ଜାଣିପାରୁଚି ଯେ, ସେଇ ଦୃଶ୍ୟ କେତୋଟି ହେଉଚି ମୋ' ଲେଖକ-ଜୀବନର ପ୍ରଥମ ନାଟ୍ୟରଚନା । କିନ୍ତୁ ହାୟ ! ସେ ଦୃଶ୍ୟ କେତୋଟି ଆଜି ମୋ' ପାଖରେ ନାହିଁ । ଯଦି ଥା'ନ୍ତା, ତେବେ ହର୍ଷୋତ୍‌ଫୁଲ୍ଲ ଚିତ୍ତରେ ମୋର ଏ ରଚନାର ଠିକ୍ ଏଇ ସ୍ଥାନରେ ତାହା ଉପସ୍ଥାପିତ କରି ନାଟ୍ୟ ଜଗତକୁ ମୋର ପ୍ରବେଶ ସହିତ ସଂଯୋଗ ସ୍ଥାପନ କରିଥା'ନ୍ତି ।

ମୋର ପ୍ରଥମ ମଞ୍ଚ-ନାଟକର ରଚନାକାଳ ହେଲା ୧୯୪୨/୪୩ । ଏଇ ନାଟକଟିର ରଚନାର ଅନ୍ତରାଳରେ ଆଉ ଗୋଟିଏ ନାଟକ ଆପେ ଆପେ ଅଭିନୀତ ହୋଇଗଲା । ଦ୍ୱିତୀୟ ମହାଯୁଦ୍ଧର ଚୂଡ଼ାନ୍ତ ପର୍ଯ୍ୟାୟ । ଆମ ପୂର୍ବ-ଉପକୂଳରେ ଜାପାନ୍ ସମର ସଙ୍କା ସେହିପରି ଗଗନକୁ ସ୍ପର୍ଶ କଲାଣି । ଯେ କୌଣସି

ମୁହୂର୍ତ୍ତରେ ଜାପାନ ଭାରତ ଆକ୍ରମଣ କରିପାରେ । ଏଥିରେ ଭାରତ ସରକାର ପ୍ରମାଦ ଗଣିଲେ । ପୁଣି ଏ ଯୁଦ୍ଧରେ ଭାରତୀୟମାନେ ଭାରତର ବ୍ରିଟିଶ୍ ସରକାରଙ୍କୁ ସମର୍ଥନ କରିବେ ନାହିଁ ବୋଲି କଂଗ୍ରେସ ଜଣାଇଦେଲା । ଏହାର ପ୍ରତିକାର ରୂପେ ସରକାର ଦେଶର ନରମପନ୍ଥୀ ନେତାମାନଙ୍କ ସହଯୋଗରେ National War Front ନାମକ ଏକ ସଂସ୍ଥା ସ୍ଥାପନ କଲେ । ଏଇ ସଂସ୍ଥାର ଉଦ୍ଦେଶ୍ୟ ହେଲା ଯେ, ହିଟଲର୍‌ର ସାମ୍ରାଜ୍ୟବାଦ ବିରୋଧରେ ମିତ୍ରଶକ୍ତି ଏକ ଗଣଯୁଦ୍ଧ କରୁଛି ବୋଲି ସମ୍ବାଦପତ୍ର ଓ ଅନ୍ୟ ମାଧ୍ୟମମାନଙ୍କ ଦ୍ୱାରା ପ୍ରଚାର କରାଯିବ । ତଦନୁସାରେ ଓଡ଼ିଶାରେ War Front ଗଢ଼ାହେଲା ଓ ଏହାର ମୁଖ୍ୟ କର୍ତ୍ତା ହେଲେ ଉଦାରପନ୍ଥୀ ନେତା ମୁକୁରର ସମ୍ପାଦକ ଜମିଦାର ଶିକ୍ଷାବିତ୍ ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ । ତତ୍କାଳୀନ ସାହେବଜାଦା ବଜାର (ବର୍ତ୍ତମାନର ଭାଷାକୋଷ ଲେନ୍) ଠାରେ ଶ୍ରୀଯୁକ୍ତ ଦାସଙ୍କ ବାସଭବନରେ ହିଁ Frontର କାର୍ଯ୍ୟାଳୟ ସ୍ଥାପିତ ହେଲା । ଏହାର ଅନତିଦୂରରେ ମୁଁ ରହୁଥାଏ । ସେଦିନ ଖଣ୍ଡେ ଟାଇପ୍ କରି ପ୍ରଚାରପତ୍ର ମୋ' ହାତକୁ ଆସିଲା । ମିତ୍ରପକ୍ଷର ଯୁଦ୍ଧ ଓ ଉଦ୍ୟମର ପ୍ରଚାର ପାଇଁ ଓଡ଼ିଆରେ ପାଲା, ଦାସକାଠିଆ ଓ ଏକାଙ୍କିକା ପ୍ରଭୃତି ରଚନା War Front ଚାହାନ୍ତି ଓ ଉପଯୁକ୍ତ ଲେଖାପାଇଁ ଲେଖକଙ୍କୁ ପାରିତୋଷିକ ପ୍ରଦତ୍ତ ହେବବୋଲି ପ୍ରଚାରପତ୍ରରେ ଉଲ୍ଲେଖ ଥାଏ । ସେତେବେଳେ ଆମ ନାଟ୍ୟ ଜଗତରେ ମାତ୍ର ଦୁଇଜଣ ବିଶିଷ୍ଟ ନାଟ୍ୟକାର ଥା'ନ୍ତି—ଶ୍ରୀଯୁକ୍ତ ଅଶ୍ୱିନୀ କୁମାର ଘୋଷ ନାଟ୍ୟ ଭାରତୀ ଓ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ । ଅଶ୍ୱିନୀ କୁମାର ତ ତାଙ୍କ ନିଜର ବଲାଙ୍ଗୀ ଆର୍ଟ ଥିଏଟର୍ ପାଇଁ ଲେଖୁଥାନ୍ତି, କାଳୀବାବୁ ଲେଖୁଥାନ୍ତି ତାଙ୍କ ଓଡ଼ିଶା ଥିଏଟର୍ ପାଇଁ । ଏଠି ନାଟ୍ୟକାର ଟଙ୍କା ନେବା ପ୍ରଶ୍ନ ଉଠୁନାହିଁ । ଅଥଚ War Front ଲେଖିଛନ୍ତି ଯେ, ମନୋନୀତ ନାଟକ ପାଇଁ ନାଟ୍ୟକାରଙ୍କୁ ପାରିତୋଷିକ ଦିଆଯିବ ! ଏ କ୍ଷେତ୍ରରେ ଏକାନ୍ତ ଅର୍ବାଚୀନ ମୁଁ । ପାରିତୋଷିକ ଆକର୍ଷଣରେ ଟାଣିହୋଇ ଗୋଟିଏ ଏକାଙ୍କିକା ନାଟକ ଲେଖା ଆରମ୍ଭ କରିଦେଲି । ଏଇଠି ମୋର ନବ ବିବାହିତା ପତ୍ନୀ ମତେ ଚେତାଇଦେଲା ଯେ, ମୁଁ ଛାତ୍ର ଥିବାବେଳେ ଇଂରେଜ ସରକାର ବିରୋଧରେ ଶୋଭାଯାତ୍ରାରେ ଯାଇଥିଲି ବୋଲି ଗୋଟାଏ ଦିନ ଥାନାରେ ଅଟକବନ୍ଦୀ ହୋଇଥିଲି—ବର୍ତ୍ତମାନ ପୁଣି ସେଇ ଇଂରେଜ ସରକାର ସପକ୍ଷରେ ମୁଁ ଏ ଲେଖା ଲେଖିବି କେମିତି ? ଅବଶ୍ୟ ଏ ଦିଗରେ ମୁଁ ସଚେତନ ଥିଲି । ସେଥିପାଇଁ ମିତ୍ରଶକ୍ତି ସପକ୍ଷରେ ନାଟକଟି ଲେଖିଥିଲେ ବି ଏଇ ନାଟକ ଭିତରେ ଜାତୀୟତାର ଏକ ଅନ୍ତଃସଲିଳର ସ୍ପର୍ଶ ମୁଁ ସୃଷ୍ଟି କରିପାରିଥିଲି ।

## ବ୍ରଜସୁନ୍ଦର ଦାସ

ନାଟକଟିକୁ ନେଇ National War Front ଅଫିସକୁ ଗଲି । ଦେଖିଲି ଅଫିସ ବାରନ୍ଦାରେ ବସିଛନ୍ତି Frontର Chairman ସ୍ୱୟଂ ବ୍ରଜସୁନ୍ଦର ଦାସ । ଦୁଆର ମୁହଁରେ ପାଦ ଅଟକିଗଲା । ଭିତରକୁ ଯାଇପାରିଲି ନାହିଁ । ଏଥିପୂର୍ବରୁ ମୁଁ ତାଙ୍କୁ ବହୁବାର ଦେଖିଛି । ରାଜନୈତିକ ସାଂସ୍କୃତିକ ଓ ସାହିତ୍ୟ ସଭା ମାନଙ୍କରେ ତାଙ୍କର ଉଦାତ୍ତ କଣ୍ଠସ୍ୱର ଶୁଣିଛି । ଗୋରା ତକ୍ ତକ୍ ଗୋଲ ମୁହଁ—ଜବା ଫୁଲପରି ଆଖି—ପାଟିରେ ପାଟିଏ ପାନ—କିନ୍ତୁ ଶୁଦ୍ଧ ସାବଲୀଳ ଭାଷାରେ ଅନର୍ଗଳ ବକ୍ତୃତା ଚାଲିଛି । ମୁକୁର ପତ୍ରିକାର ପ୍ରତିଷ୍ଠାତା ଓଡ଼ିଶାର ଏଇ ପ୍ରବୀଣ ସାହିତ୍ୟ-ସେବୀଙ୍କ ପ୍ରତି ମୋର ଶ୍ରଦ୍ଧା ଓ ସମ୍ମାନ ଏତେ ବେଶୀ ଥିଲା ଯେ, ତାଙ୍କ ପାଖରେ ଯାଇ ଠିଆ ହେବାର ସାହସ ମୋର ହେଉ ନ ଥିଲା । ....ସେ କିନ୍ତୁ ମତେ ଦେଖି—ହୁଏତ ମୁଁ ହାତରେ ଧରିଥିବା ପାଣ୍ଡୁଲିପିଟିକୁ ଲକ୍ଷ୍ୟ କରି ପଚାରିଲେ—କ'ଣ, କୁଆଡ଼େ ଆସିଛ ? ...କହିଲି—ଆପଣଙ୍କର ବିଜ୍ଞାପନ ବାହାରିଥିଲା, ମୁଁ ନାଟକ ନେଇ ଆସିଛି । ...ସେତିକବେଳକୁ ମୋର ବୟସ ପ୍ରାୟ ଚବିଶି ପଚିଶି ବର୍ଷ । ହୁଏତ ଏଇ କଥାଟିକୁ ଲକ୍ଷ୍ୟ ରଖି କିଛୁଟା ସନ୍ଦିଗ୍ଧ କଣ୍ଠରେ କହିଲେ—ତମେ... ନାଟକ ଲେଖିଛ ! ...ଏଇଠି ପୁଣି ମତେ ଲକ୍ଷ୍ୟ କରି କହିଲେ—ତୁମ ନାଁ କ'ଣ ? ଟିକେ ଡରିଗଲେ ବି ମୋ' ନାଁ କହିଲି । ଦେଖିଲି ମୋ' ନାଁ ଶୁଣି ସେ ଯେମିତି ଟିକେ ଆମୋଦ ଅନୁଭବ କରିଛନ୍ତି । ସେଇ ଅବସ୍ଥାରେ କହିଲେ—ଶ୍ରେଷ୍ଠରାୟ ! ଶ୍ରେଷ୍ଠରାୟ, ଉତ୍ତରରାୟ, ଦକ୍ଷିଣରାୟ, ଏମାନେ ତ କ୍ଷତ୍ରିୟ ସନ୍ତାନ । ଖଣ୍ଡା ତରବାରି ଧରି ଯୁଦ୍ଧକୁ ଯିବା କଥା, କିନ୍ତୁ ତମ ହାତରେ ଲେଖନୀ !

## ଲେଖନୀ ଓ ତରବାରି

ତାଙ୍କର ଏ କଥାରେ ମୁଁ ଆହତ ହେଲି କି ବିବ୍ରତ ହେଲି କହିପାରୁନି । ମତେ ଭାବିବାର ସମୟ ନ ଦେଇ ସେ ପୁଣି କହିଲେ—ଓ, ଏଇଟା ସେଇ ଯୁଦ୍ଧ ସମ୍ପର୍କୀୟ ଲେଖା ପରା । ଅଫିସ ଆଡ଼କୁ ଚାହିଁ କହିଲେ—ରାଧାଶ୍ୟାମବାବୁ, ଆମର ଆଉ କିଛି ଏକାଙ୍କିକା ଆସିଛି କି ? ...ଉତ୍ତର ଆସିଲା—ଆସିଛି ଆଜ୍ଞା, ଅଶ୍ୱିନୀବାବୁ ଓ କାଳିନ୍ଦୀବାବୁଙ୍କ ଲେଖା ମଧ୍ୟ ଆସିଛି । "ମତେ ଦେବେ ତ ସେ ସବୁକୁ ପଢ଼ିବା ପାଇଁ ।" ...ଏତିକି କହିଲା ପରେ ମୋ' ଉପରେ ପୁଣି ତାଙ୍କ ଆଖି ପଡ଼ିଲା । କହିଲେ—ଲେଖାଟି ଅଫିସ୍‌ରେ ଦେଇଯାଅ । ମୁଁ ପାଦେ ଆଗେଇଛି କି ନାହିଁ, କହିଲେ—ଶୁଣ, ତମ ନାଟକଟି ଏଇଠି ପଢ଼ି ମତେ ଶୁଣାଇପାରିବ ? ପାରିବା ନ ପାରିବାର ପ୍ରଶ୍ନ ନ ଥିଲା । ତେବେ ବି କହିଲି—

ପାରିବ ଆଜ୍ଞା ।...ମୋ' କଥା ଶୁଣି ଅତି ଉତ୍ସାହର ସହିତ ଟେବୁଲ ଉପରେ ଦୁଇ କହୁଣୀ ଭରିଦେଇ, ଦୁଇ ପାପୁଲିରେ ମୁହଁ ରଖି ଶୁଣିବା ପାଇଁ ପ୍ରସ୍ତୁତ ହୋଇଗଲେ । ଜମିଦାର ଲୋକ—ଦୁଇ ପାର୍ଶ୍ୱରେ କିଛି ପାରିଷଦ ଉପସ୍ଥିତ ଥା'ନ୍ତି । ସେମାନେ ମଧ୍ୟ ନାଟକ ଶୁଣିବା ପାଇଁ ଉତ୍ସାହିତ ହୋଇ ଉଠିଲେ ଦୁଇ ଆଖି ବନ୍ଦ ରଖି ମତେ ମଧୁର ଆଦେଶ ଦେଲା ଭଙ୍ଗୀରେ ଶ୍ରୀଯୁକ୍ତ ଦାସ କହିଲେ—ପଢ଼ ।

...ମୁଁ ପଢ଼ା ଆରମ୍ଭ କରିଦେଲି ।

## ମୋର ପ୍ରଥମ ନାଟକ

ନାଟକ ଅଭିନୟ କରିବାର କିଛି ଅଭିଜ୍ଞତା ଥିଲା । ଯେତେଦୂର ସମ୍ଭବ ନାଟକୀୟ ଶୈଳୀରେ ପଢ଼ିଲି । ପଢ଼ିଚାଲିଚି—ସମସ୍ତେ ଯେପରି ଏକ ଲୟରେ ଶୁଣି ଚାଲିଚନ୍ତି । ପ୍ରଥମ ଦୃଶ୍ୟଟି ପଢ଼ି ଶେଷ କରିବାକୁ ପ୍ରାୟ ଅଧଘଣ୍ଟାଏ ସମୟ ଲାଗିଲା । ଆଖି ଟେକି ଚାହିଁଲି, ଦେଖିଲି ଶ୍ରୀଯୁକ୍ତ ଦାସ ସେମିତି ଆଖି ବନ୍ଦ କରି ବସିଚନ୍ତି । ଆଶଙ୍କା ହେଲା, ତାଙ୍କୁ ନିଦ ହୋଇଯାଇଚି କି ? କିନ୍ତୁ ପର ମୁହୂର୍ତ୍ତରେ ସେ ହଠାତ୍ ସଜାଗ ହୋଇ ଉଠି କହିଲେ—କ'ଣ ହେଲା ? ପଢ଼ା ବନ୍ଦକଲ କାହିଁକି ? ପଢ଼ ପଢ଼ । ...ଆଦେଶ ଭଙ୍ଗୀରେ ଏତିକି କଥା କହି ନାଟକ ଶୁଣିବାକୁ ସେ ପୁଣି ପ୍ରସ୍ତୁତ ହୋଇଗଲେ । ମୁଁ ପୁଣି ପଢ଼ା ଆରମ୍ଭ କଲି । ଗୋଟେ ନାଟକଟି—ପଢ଼ି ଶୁଣାଇବାକୁ ମୋତେ ପ୍ରାୟ ଏକ ଘଣ୍ଟା ସମୟ ଲାଗିଲା । ଏଇ ଏକ ଘଣ୍ଟା ଭିତରେ କେହି ପଦେହେଲେ କଥା କହିନାହାନ୍ତି । ପଢ଼ା ଶେଷ ହେଲା ।

ତା' ପରେ ?

## ମୋ ନାଟ୍ୟକାର ଜୀବନର ପ୍ରଥମ ସ୍ମରଣୀୟ ମୁହୂର୍ତ୍ତ

ଯେତେ ବିନୟ ବା ଯେତେ ନମ୍ରତାର ଛଳନା କଲେ ମଧ୍ୟ ଜୀବନର ସେଇ ଅତି ସ୍ମରଣୀୟ ମୁହୂର୍ତ୍ତଟିର ବର୍ଣ୍ଣନା କରିବାକୁ ଯାଇ ମୁଁ ଏଠି ସତ୍ୟର ଅପଲାପ କରିପାରିବ ନାହିଁ । ପଢ଼ା ଶେଷହେବା ବେଳକୁ ଦେଖିଲି, ଓଡ଼ିଆ ସାହିତ୍ୟର ସେଇ ଅନ୍ୟତମ କର୍ଣ୍ଣଧାର ମୋ ମୁଣ୍ଡ ଉପରେ ହାତ ରଖି ଭାବ ଗଦ୍‌ଗଦ କଣ୍ଠରେ କହୁଛନ୍ତି—ମୁଁ ଆଶୀର୍ବାଦ କରୁଚି, ତୁ ଲେଖ୍—ଆହୁରି ଲେଖ । ତୋ କଲମ ବଞ୍ଚିରହୁ । ଏ ନାଟକ ତୁ ଲେଖିଚୁ—ଏଥିରେ ମିଳିଶକ୍ତିର ଜୟ-କାମନା ତୁ କରିଚୁ—ହେଲେ ଜଣେ ଭାରତୀୟ ଭାବରେ ତୋ ନିଜକୁ ତୁ କୋଉଠି

ବଳ ଦେଇଲୁ । ତୋ ଲେଖାର ଛନ୍ଦେ ଛନ୍ଦେ ତୁ କହୁଚୁ—ଏ ଦେଶ ଆମର, ଆମେ ହିଁ ଏ ଦେଶକୁ ଶତ୍ରୁ ହାତରୁ ରକ୍ଷା କରିବୁ । ମୁଁ ଠିକ୍ ଏଇଆ ବୁଝୁଥିଲି । [ଏ ରଚନାରେ ବ୍ୟବହୃତ 'ମିତ୍ରଶକ୍ତି' ଶବ୍ଦଟିର ଅର୍ଥ ହେଲା, ଦ୍ୱିତୀୟ ମହାଯୁଦ୍ଧ ବେଳେ ଜର୍ମାନୀ, ଜାପାନ ଓ ଇଟାଲି ପ୍ରଭୃତି 'ଅକ୍ଷଶକ୍ତି' ବିରୋଧରେ ବ୍ରିଟେନ୍, ଆମେରିକା ଓ ଫ୍ରାନ୍ସ ପ୍ରଭୃତି ଦେଶ ଯେଉଁ ମେଣ୍ଟ ଗଢ଼ିଥିଲେ, ସେଇ ମେଣ୍ଟର ନାମ ଥିଲା—ମିତ୍ରଶକ୍ତି ।]

## ମୋ ନାଟ୍ୟ ରଚନା ପାଇଁ

### ପ୍ରଥମ ପାରିତୋଷିକ

ମୁଁ ଜାଣିଥିଲି Front ଦ୍ୱାରା ଯେଉଁ ଏକାଙ୍କିକା ଗୃହୀତ ହେବ, ଏକାଙ୍କିକାଟିର ଲେଖକଙ୍କୁ କୋଡ଼ିଏ ଟଙ୍କା ପାରିତୋଷିକ ମିଳିବ (ସେତେବେଳେ କୋଡ଼ିଏ ଟଙ୍କାର ମୂଲ୍ୟ କିଛି କମ୍ ନ ଥିଲା) । ସେଦିନ କିନ୍ତୁ ମୋର ଏକାଙ୍କିକାଟି ପାଇଁ ଶ୍ରୀଯୁକ୍ତ ଦାସ ଫାଇଲ୍ ଉପରେ "ଆଜ୍ ଏ ସ୍ପେଶିଆଲ୍ କେଶ୍" ବୋଲି ଲେଖି ମତେ ପଇଁତିରିଶି ଟଙ୍କା ପାରିତୋଷିକ ଦେଲେ । ଏକାଙ୍କିକାଟିର ନାମ ସେଇ ରଖିଥିଲେ 'ସହଧର୍ମିଣୀ' । ତାଙ୍କ ଅନୁଷ୍ଠାନ ଦ୍ୱାରା ବହିଟି ମୁଦ୍ରିତ ହେଲା ଓ ଏହାର ଏକ ଇଂରାଜୀ ଅନୁବାଦ ସେବେଲର ଓଡ଼ିଶାର ଗଭର୍ଣ୍ଣର ସାର୍ ହଥର୍ଣ୍ଣ ଲୁଇଙ୍କୁ ପଢ଼ିବାକୁ ଦିଆଗଲା । ଯଥା ସମୟରେ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍ ଦ୍ୱାରା ନାଟକଟି ମଞ୍ଚସ୍ଥ ହେଲା । ଗଭର୍ଣ୍ଣର ସାର୍ ଲୁଇ ପ୍ରେକ୍ଷାଳୟରେ ଉପସ୍ଥିତ ରହି ଶେଷପର୍ଯ୍ୟନ୍ତ ନାଟକଟିକୁ ଦେଖିଥିଲେ ।···କିଛିଦିନ ପରେ କଟକ ସହରରେ ଏକ ନୂତନ ନାଟ୍ୟମଞ୍ଚ 'ଭାରତୀ ଥିଏଟରସ୍ ଦ୍ୱାରା ଏଇ ସହଧର୍ମିଣୀ ଏକାଙ୍କିକା ମଞ୍ଚସ୍ଥ ହେଲା । ଏଥର ଅଭିନୟ ଦେଖିବାକୁ ଆସିଥିଲେ ଓଡ଼ିଶାର ତତ୍କାଳୀନ ପ୍ରିମିୟର୍ ବା ପ୍ରଧାନମନ୍ତ୍ରୀ (ଏବକାର ମୁଖ୍ୟମନ୍ତ୍ରୀ) ପାରଳାର ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ଦେବ । ଅଭିନୟ ଶେଷ ହେଲା । ମହାରାଜା ତା' ପରଦିନ ତାଙ୍କ ତୁଳସୀପୁର ବାସଭବନରେ ତାଙ୍କୁ ସାକ୍ଷାତ କରିବାର ନିର୍ଦ୍ଦେଶ ମତେ ଦେଲେ । ମୁଁ ଗଲି । କଟକର ଦୂରଦର୍ଶନ କେନ୍ଦ୍ର ଯେଉଁଠି ଅବସ୍ଥିତ ଥିଲା, ସେଇ ପ୍ରାସାଦରେ ତାଙ୍କୁ ମୁଁ ଭେଟିଲି । ହଁ, ମୁଁ ଭୁଲିଯାଉଚି—ପୂର୍ବଦିନ ରାତିରେ 'ସହଧର୍ମିଣୀ' ଅଭିନୟ ଦେଖି ସେ ନାଟକର ନାୟକ ଓ ନାୟିକା ଦୁହିଁଙ୍କୁ ଗୋଟିଏ ଗୋଟିଏ ସ୍ୱର୍ଣ୍ଣପଦକ ପ୍ରଦାନ କରିଥିଲେ ।

**ପାରଳା ମହାରାଜା**

ସେଦିନ ତାଙ୍କ ବାସଭବନରେ ମହାରାଜା ମତେ ଏଇ କଥାଟି ସ୍ମରଣ କରାଇଦେଇ କହିଲେ—ସେମାନେ ହେଲେ ଅଭିନେତା—ସେଥିପାଇଁ ସେଇ ରଙ୍ଗମଞ୍ଚରେ ହିଁ ମୁଁ ସେମାନଙ୍କୁ ପୁରସ୍କୃତ କରିଛି । କିନ୍ତୁ ତୁମେ ଜଣେ ଲେଖକ, ତୁମ ସହିତ ପଦେ ଅଧେ କଥାବାର୍ତ୍ତା କରିବା ପାଇଁ ମୁଁ ଚାହେଁ ।....ମୁଁ କିଛି କହିପାରୁ ନ ଥାଏ । ତାଙ୍କଠୁ ଶୁଣିଲି, ପାରଳାଖେମୁଣ୍ଡିରେ ନାଟକର ଚର୍ଚ୍ଚା ଓ ଅଭିନୟ ଆଦି ହୋଇଥାଏ । ଏପରିକି ସଂସ୍କୃତ ଭାଷାରେ ନାଟକ ରଚନା ଓ ଅଭିନୟ ସେପର୍ଯ୍ୟନ୍ତ ମଧ୍ୟ ପାରଳାଖେମୁଣ୍ଡିରେ ଚାଲିଛି । ବୋଧହୁଏ ଶ୍ରୀ ଗୋପୀନାଥ ନନ୍ଦଶର୍ମା ହେଉଛନ୍ତି ସଂସ୍କୃତ ନାଟକର ଲେଖକ । ଆମ ଉପକୂଳ ଅଞ୍ଚଳର ନାଟକ କଥା କିଛି ଆଲୋଚିତ ହେଲା । ବଲଙ୍ଗା ଥିଏଟର୍ ପରେ ନାଟ୍ୟକାର ଅଶ୍ୱିନୀ କୁମାର ଘୋଷଙ୍କ ବଲଙ୍ଗା ଆର୍ଟ ଥିଏଟର୍ ବେଶ୍ କିଛି ଆଶା ଭରସା ଓ ସମ୍ଭାବନା ସହି ତାଙ୍କର ଯାତ୍ରା ଆରମ୍ଭ କରିଥିଲେ । କିନ୍ତୁ ୧୯୩୬ ମସିହା ଅର୍ଥାତ୍ ଯେଉଁବର୍ଷ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା, ସେଇ ବର୍ଷ ଆର୍ଟ ଥିଏଟରର ଯବନିକା ପତନ ଘଟିଲା । ତେବେ ବର୍ତ୍ତମାନ ଅନ୍ନପୂର୍ଣ୍ଣା ଥିଏଟର୍, କାଳୀବାବୁଙ୍କ ଓଡ଼ିଶା ଥିଏଟର୍ ଓ କେତେକ ଉଚ୍ଚଶିକ୍ଷିତ କଳାପ୍ରେମୀଙ୍କ ଦ୍ୱାରା ଭାରତୀ ଥିଏଟର୍ ସେମାନଙ୍କର ଜୟଯାତ୍ରା ଅବ୍ୟାହତ ରଖିଥାନ୍ତି । ଏହାପରେ ମହାରାଜା ସ୍ମିତ ବଦନରେ ଖଣ୍ଡିଏ ଶହେଟଙ୍କିଆ ନୋଟ୍ ମୋ ହାତକୁ ବଢ଼ାଇଦେଲେ । ତାଙ୍କଠୁ ବିଦାୟ ନେଇ ମୁଁ ଆସିଲି । ଆଜି ଅର୍ଦ୍ଧଶତାଧିକ ବର୍ଷ ପରେ ମୁଁ ଏଇ କଥାଟି ଉଲ୍ଲେଖ କରୁଛି ଯେ, ଯଦି ସେତେବେଳେ ମୁଁ ସମ୍ମାନନୀୟ ବ୍ରଜସୁନ୍ଦର ଦାସ ଓ ପାରଳା ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ରଦେବଙ୍କ ଠାରୁ ମୁଁ ଏହିପରି ପ୍ରୋତ୍ସାହନ ପାଇନଥା'ନ୍ତି, ତେବେ ମୁଁ ବୋଧହୁଏ ନାଟକ ଲେଖିବା କଥା କେବେହେଲେ ଚିନ୍ତା କରିପାରି ନ ଥା'ନ୍ତି ।

ପ୍ରାକ୍ତନ କଟକ ଜିଲ୍ଲା ଓ ବର୍ତ୍ତମାନର ଜଗତ୍‌ସିଂହପୁର ଜିଲ୍ଲା—ଥାନା ଜଗତ୍‌ସିଂହପୁର—ପୁରୁଣାଗଡ଼ ଗ୍ରାମରେ ୧୯୧୬ ମସିହାରେ ମୋର ଜନ୍ମ । ଗ୍ରାମ୍ୟ ପାଠଶାଳା, ଜଗତ୍‌ସିଂହପୁର ଓ କଟକ ସହରରେ ଶିକ୍ଷା ସମାପ୍ତି । ତା'ପରେ ଏଗାରବର୍ଷ ଏକ ସ୍ୱାୟତ୍ତଶାସନ କାର୍ଯ୍ୟାଳୟ ଓ କୋଡ଼ିଏ ବର୍ଷ କଟକ ଆକାଶବାଣୀ କେନ୍ଦ୍ରରେ କାର୍ଯ୍ୟକାଳ ପରେ ୧୯୭୫ ମସିହାରେ ଅବସର ଗ୍ରହଣ । ଏଠି ଏତିକି ସୂଚନା ପ୍ରଦତ୍ତ ହେଉଛି ଯେ, ମୋ ଜୀବନର କାର୍ଯ୍ୟକାଳ ମଧ୍ୟରେ ନାଟ୍ୟ ରଚନା ହିଁ ମୁଖ୍ୟ ସ୍ଥାନ ଅଧିକାର କରି ଆସିଛି । ପ୍ରକାଶିତ ପୁସ୍ତକର ସଂଖ୍ୟା ପଞ୍ଚାବନ ।

## ନାଟକ

| ନାମ | ପ୍ରକାଶନ କାଳ |
|---|---|
| ୧ । ସହଧର୍ମିଣୀ | ୧୯୪୨ ମସିହା |
| ୨ । ଏମିତି ହୁଏ ନାହିଁ | ୧୯୯୦ ମସିହା |
| ୩ । ନଟଖଟ ନାଟକ | ୧୯୯୧ ମସିହା |
| ୪ । ଘଟକ (ହାସ୍ୟରସର ନାଟକ) | ୧୯୬୨ ମସିହା |
| ୫ । ଦଲବେହେରା | ୧୯୬୬ ମସିହା |
| ୬ । ଭରସା | ୧୯୫୪ ମସିହା |
| ୭ । ପରକଲମ ... | ୧୯୫୫ ମସିହା |
| ୮ । ପଥିକବନ୍ଧୁ | ୧୮୫୮ ମସିହା |
| ୯ । ଫେରିଆ | ୧୯୪୬ ମସିହା |
| ୧୦ । ପୁରାପୁରି ପାରିବାରିକ | ୧୯୬୪ ମସିହା |
| ୧୧ । ଶ୍ରେଷ୍ଠ ଏକାଙ୍କିକା | ୧୯୯୧ ମସିହା |
| ୧୨ । ଶଙ୍ଖାସିନ୍ଦୂର | ୧୯୫୬ ମସିହା |
| ୧୩ । ଝଁନ୍‌ଜା | ୧୯୫୮ ମସିହା |
| ୧୪ । ବାବାଜୀ ନବନାଟ୍ୟ ରୂପ | ୧୯୮୪ ମସିହା |
| ୧୫ । ବାବୁ ଚନ୍ଦ୍ରମଣି | ୧୯୯୨ ମସିହା |
| ୧୬ । ମଲ୍ଲଜନ୍ମ | ୧୯୬୧ ମସିହା |
| ୧୭ । ଅଭାଗିନୀର ସ୍ୱର୍ଗ | ୧୯୬୧ ମସିହା |
| ୧୮ । ନଷ୍ଟ ଉର୍ବଶୀ | ୧୯୫୫ ମସିହା |
| ୧୯ । ନୂଆବୋଉ | ୧୯୮୦ ମସିହା |
| ୨୦ । ଘଟକ | ୧୯୬୦ ମସିହା |
| ୨୧ । ଜନଶତ୍ରୁ | ୧୯୫୮ ମସିହା |
| ୨୨ । ପ୍ରତିଭା | ୧୯୬୨ ମସିହା |
| ୨୩ । ଅମଡାବାଟ | ୧୯୫୯ ମସିହା |
| ୨୪ । ପଦ୍ମାଳୟ | ୧୯୬୨ ମସିହା |
| ୨୫ । ପେଟେଣ୍ଟ ମେଡ଼ିସିନ୍ | ୧୯୯୨ ମସିହା |
| ୨୬ । ସାଧନା | ୧୯୬୨ ମସିହା |
| ୨୭ । ଶତରଞ୍ଜୀ | ୧୯୮୩ ମସିହା |
| ୨୮ । ପଞ୍ଚନାଟିକା | ୧୯୯୩ ମସିହା |

| ନାମ | | ପ୍ରକାଶନ କାଳ |
|---|---|---|
| ୨୯ । ପାହାଚ ଓ ଅନ୍ୟ ନାଟକ | ... | ୧୯୯୧ ମସିହା |
| ୩୦ । ଗଜପତି ସ୍ୱପ୍ନ ଓ ଅନ୍ୟାନ୍ୟ | | ୧୯୯୧ ମସିହା |
| ୩୧ । ଶୋଭା | | ୧୯୮୭ ମସିହା |
| ୩୨ । ହାସ୍ୟରସର ନାଟକ | | ୧୯୮୧ ମସିହା |
| ୩୩ । ଶ୍ରୀ ହରଙ୍କ ସଂସାର | | ୧୯୭୪ ମସିହା |
| ୩୪ । ଶାଖା ପ୍ରଶାଖା | | ୧୯୭୭ ମସିହା |
| ୩୫ । ଅର୍ଦ୍ଧାଙ୍ଗିନୀ | | ୧୯୫୯ ମସିହା |

## ଗୀତନାଟ୍ୟ

ମୁଁ ନାଟ୍ୟ ଜଗତକୁ ଆସିବା ପୂର୍ବରୁ ପୂଜ୍ୟ ବ୍ରଜସୁନ୍ଦର ଦାସ ଓ ପୂଜ୍ୟ ପାରଳା ଗଜପତି ମହାରାଜାଙ୍କ ସହିତ ଦୁଇଟି ସ୍ମରଣୀୟ ଘଟଣା ଘଟିଥିଲା । ଯଦି ଏହା ଘଟି ନ ଥା'ନ୍ତା, ତେବେ ହୁଏତ ନାଟକ ଲେଖିବା ମୋ' ପକ୍ଷରେ କେବେହେଲେ ସମ୍ଭବ ହୋଇପାରି ନ ଥା'ନ୍ତା । ଏକଥା ଅନ୍ୟତ୍ର ଉଲ୍ଲେଖ କରାଯାଇଛି । ଠିକ୍ ସେହିପରି ଆଉ ଏକ ଘଟଣା କଟକ ଆକାଶବାଣୀ କେନ୍ଦ୍ରରେ ଘଟିଥିଲା । ଯଦି ସେଇ ଘଟଣାଟି ଘଟି ନ ଥା'ନ୍ତା, ତାହାହେଲେ ଗୀତନାଟ୍ୟ ରଚନା କ୍ଷେତ୍ରକୁ ମୋର ପ୍ରବେଶ ସମ୍ଭବ ହୋଇପାରି ନ ଥା'ନ୍ତା । ୧୯୬୦ ମସିହା ନଭେମ୍ବର ମାସର କଥା । ମୁଁ ଏହାର ପ୍ରାୟ ଚାରିବର୍ଷ ପୂର୍ବରୁ କଟକ ଆକାଶବାଣୀ କେନ୍ଦ୍ରର ନାଟକ ବିଭାଗରେ ଯୋଗ ଦେଇଥାଏ । ପ୍ରତିଦିନ ପରି ସେଦିନ ପୂର୍ବାହ୍ଣ ଦଶଟାବେଳେ ଷ୍ଟେସନ୍ ଡାଇରେକ୍ଟର ପି. ଭି. କୃଷ୍ଣମୂର୍ତ୍ତିଙ୍କ ଅଧ୍ୟକ୍ଷତାରେ ପ୍ରୋଗ୍ରାମ୍ ମିଟିଙ୍ଗ୍ ଆରମ୍ଭ ହେଲା । (ଆକାଶବାଣୀ କେନ୍ଦ୍ରରେ ଠିକ୍ ପୂର୍ବାହ୍ଣ ଦଶଟାବେଳେ ଏକ ପ୍ରୋଗ୍ରାମ୍ ମିଟିଙ୍ଗ୍ ଅନୁଷ୍ଠିତ ହୁଏ । ଷ୍ଟେସନ୍ କର୍ତ୍ତାଙ୍କ ସହିତ ପ୍ରୋଗ୍ରାମ୍ ସଂପୃକ୍ତ ଅନ୍ୟ କର୍ମଚାରୀମାନେ ଏ ମିଟିଙ୍ଗ୍‌ରେ ଉପସ୍ଥିତ ରହନ୍ତି । ଏଇ ମିଟିଙ୍ଗ୍‌ରେ ପୂର୍ବଦିନ ଯାହା ସବୁ ପ୍ରୋଗ୍ରାମ୍ ବା କାର୍ଯ୍ୟକ୍ରମ ପ୍ରଚାରିତ ହୋଇଥାଏ, ସେ ସବୁର ବିଶଦ ଆଲୋଚନା କରାଯାଏ ଓ ସେଇଦିନର ଯାହା ସବୁ କାର୍ଯ୍ୟକ୍ରମ ପ୍ରଚାରିତ ହେବାର କଥା, ତାହାର ସମୀକ୍ଷା ମଧ୍ୟ କରାଯାଏ ।) ସେଦିନ ମିଟିଙ୍ଗ୍ ଆରମ୍ଭ ହେଲା । ଆମେ ସବୁ ମିଟିଙ୍ଗ୍‌ରେ ଉପସ୍ଥିତ ଥାଉ । ଆରମ୍ଭରେ ଷ୍ଟେସନ୍ ଡାଇରେକ୍ଟର ଶ୍ରୀ କୃଷ୍ଣମୂର୍ତ୍ତି କହିଲେ—ଆମ କେନ୍ଦ୍ରରେ ଯେଉଁ ସବୁ ଅପେରା (Opera) ର ରେକର୍ଡିଙ୍ଗ ରହିଛି, ସେ ସବୁକୁ ଦିଲ୍ଲୀ ପଠାଇବା ପାଇଁ ଡାଇରେକ୍ଟରଙ୍କ ପାଖରୁ ଏ ଚିଠି ଆସିଛି । ...ଏତକ କହି କଟକ ଆକାଶବାଣୀ କେନ୍ଦ୍ରରେ କ'ଣ କ'ଣ ଅପେରାର ରେକର୍ଡିଂ ଅଛି, ସେ କଥା ସେ ଜାଣିବାକୁ ଚାହିଁଲେ ।

## କୃଷ୍ଣମୂର୍ତ୍ତି ଓ ଓଡ଼ିଆ ଗୀତନାଟ୍ୟ

ଏକଥା ଶୁଣି ମିଟିଙ୍ଗ୍‌ରେ ଟିକେ ଗୁଞ୍ଜରଣ ଖେଳିଗଲା । କଟକ କେନ୍ଦ୍ରରେ ଅପେରାର କୌଣସି ରେକର୍ଡିଂ ଆମର ନାହିଁ । ଯାହା ଅଛି, ମାତ୍ର ଦଶ ପନ୍ଦର ମିନଟ୍ ଅବଧିର ସଙ୍ଗୀତ ରୂପକ । ଏକଥା ଷ୍ଟେସନ ଡାଇରେକ୍ଟରଙ୍କୁ ଜଣାଇ ଦିଆଗଲା । ସେ କହିଲେ—ଠିକ୍ ଅଛି, ଏକଥା ଦିଲ୍ଲୀକୁ ଜଣେଇ ଦିଆଯାଉ ।... ଏତକ କହି ସେ ଦିଲ୍ଲୀରୁ ଆସିଥିବା ଚିଠି ଉପରେ କ'ଣ କିଛି ଲେଖିବାକୁ ଯିବାବେଳେ ମୁଁ ଟିକେ ସଚେତନ ହୋଇଉଠିଲି । (ସ୍ୱୀକାର କରୁଛି, ଏଇ ଅପେରା ସମ୍ପର୍କୀୟ ଆଲୋଚନାଟିକୁ ମୁଁ ଆରମ୍ଭରେ ସେମିତି କିଛି ଗୁରୁତ୍ୱ ଦେଇ ନ ଥିଲି) କହିଲି—କ୍ଷମା କରନ୍ତୁ ସାର୍, ଆମର ଏଠି ଓଡ଼ିଆରେ ଅପେରା ଅଛି ।... ମୋ କଥା ଶୁଣି ମିଟିଙ୍ଗ୍‌ରେ ସମସ୍ତେ ଯେପରି କିଛିକ୍ଷଣ ପାଇଁ ସ୍ତବ୍ଧ ହୋଇଗଲେ । ଏତିକିବେଳେ କେହିଜଣେ କହିଉଠିଲେ—ଅପେରା ! ଆମର ଏଠି କି ଅପେରା ଅଛି ? ଆମେ ତ ଜାଣୁ, ଅପେରା ଅଛି ୟୁରୋପର ରୁଷିଆ, ସ୍ୱିଡେନ୍, ଅଷ୍ଟ୍ରିଆ, ନରୱେ, ଆଉ ଜର୍ମାନୀ ପ୍ରଭୃତି ଦେଶମାନଙ୍କରେ । ସିନେମାରେ ଏଇସବୁ ଅପେରା ଆମେ ଦେଖିଚୁ—ଆପଣ କି ଅପେରା କଥା କହୁଚନ୍ତି ? ..ହାତ ପାଖରେ ଚେମ୍ବର୍ସ ଡିକ୍‌ସନାରୀ ଥୁଆହୋଇଥିଲା, ଖୋଲି ସମସ୍ତଙ୍କୁ ଦେଖାଇଲି । ଅପେରାର ଇଂଲିଶ ଅର୍ଥ ଲେଖାହୋଇଚି—ମ୍ୟୁଜିକାଲ୍ ଡ୍ରାମା । କହିଲି—ଏଇ ଦେଖନ୍ତୁ—ଏଇ ଇଂଲିଶ ଅପେରା ଶବ୍ଦଟିର ଅର୍ଥ ସେଇ ଇଂଲିଶରେ ହେଲା—ମ୍ୟୁଜିକାଲ ଡ୍ରାମା—ଯାହାର ସିଧାସଳଖ ଓଡ଼ିଆ ଅର୍ଥ ହେଲା—ଗୀତନାଟ୍ୟ । ମୁଁ ସେଇକଥା କହୁଚି—ଆମର ବହୁ ଅପେରା ଅର୍ଥାତ୍ ଗୀତନାଟ୍ୟ ରହିଚି, ଆଉ ଏଇ ସବୁ ଗିତନାଟ୍ୟର ମୁଖ୍ୟ ସ୍ରଷ୍ଟା ହେଲେ—ଆମର ଗଣକବି ବୈଷ୍ଣବ ପାଣି । ମୋ କଥା ଶୁଣି ଜଣେ ଭଦ୍ରଲୋକ ତାଙ୍କ ଆସନରୁ ଉଠି ଠିଆହୋଇ ତାଙ୍କ କଥାରେ ବେଶ୍ ଗୁରୁତ୍ୱ ଦେଇ କହିଲେ—ଇଏ ଆପଣ କ'ଣ କହୁଚନ୍ତି ଗୋପାଳବାବୁ ! ରେଡିଓକୁ ଆପଣ ବୈଷ୍ଣବ ପାଣିଙ୍କ ଯାତ୍ରା ଆଣିବେ ।—ଏଥିରେ ଓଡ଼ିଓର, ବେତାର କେନ୍ଦ୍ରର ଆଉ ମର୍ଯ୍ୟାଦା ରହିବ ? ତାଙ୍କର ଏ କଥାରେ ମୁଁ କିଛିଟା ଅପ୍ରସ୍ତୁତ ବୋଧ କରୁଥିଲେ ହେଁ ସ୍ପଷ୍ଟ ଗଳାରେ କହିଲି—ଦେଖନ୍ତୁ, ଯାତ୍ରା ଶବ୍ଦର ଅର୍ଥ ଅପେରା ବା ଗୀତନାଟ୍ୟ ନୁହେଁ । ଆମ ଓଡ଼ିଶାରେ ବହୁ ଦେବସ୍ଥଳମାନଙ୍କର ଯେଉଁ ମେଳା ଯଥା—ମକର ମେଳା, କ୍ଷୁଣ୍ଣେଶ୍ୱର ମେଳା ପ୍ରଭୃତି ଯାତ୍ରା ଅନୁଷ୍ଠିତ ହୁଏ, ସେଥିରେ ଏଇ ଗୀତନାଟ୍ୟ ପ୍ରଭୃତି ପ୍ରଦର୍ଶିତ ହୋଇଥାଏ । ସେଥିପାଇଁ ଯେଉଁମାନେ ଗୀତନାଟ୍ୟ ପ୍ରଦର୍ଶନ କରନ୍ତି, ତାଙ୍କୁ ଯାତ୍ରାଦଳ ବୋଲି କୁହାଯାଇ-

ଥାଏ । ଯେଉଁମାନେ ଓଡ଼ିଆରେ ଗୀତିନାଟ୍ୟ ବା ଗୀତିନାଟକ ଲେଖିଛନ୍ତି, ଗଣକବି ବୈଷ୍ଣବ ପାଣି ହେଉଛନ୍ତି ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ । ପ୍ରାୟ ଏକଶହ ପଚାଶରୁ ଅଧିକ ଗୀତିନାଟ୍ୟ ସେ ଲେଖିଯାଇଛନ୍ତି । କେବଳ ସଂଖ୍ୟା ଦୃଷ୍ଟିରୁ ନୁହେଁ, ଗୁଣାତ୍ମକମାନ ଦୃଷ୍ଟିରୁ ମଧ୍ୟ ତାଙ୍କ ଗୀତିନାଟ୍ୟ ରଚନା ଓଡ଼ିଆ ନାଟ୍ୟ-ସାହିତ୍ୟରେ ଏକ ସମ୍ମାନଜନକ ସ୍ଥାନ ଲାଭ କରିପାରିଛି । ବୈଷ୍ଣବ ପାଣି ଇଂରାଜୀ ଶିକ୍ଷା ଲାଭ କରି ନ ଥିଲେ—ଅପେରାର ଓଡ଼ିଆ ଅର୍ଥ ଗୀତିନାଟ୍ୟ ବୋଲି ଜାଣି ନ ଥିଲେ । ଅଥଚ ଯେତେବେଳେ ଏଇ ଶତାବ୍ଦୀର ଆରମ୍ଭ ଅର୍ଥାତ୍ ଊଣେଇଶିଶହ ମସିହା ପ୍ରଥମ ପାଦରେ ବୈଷ୍ଣବ ପାଣି ତାଙ୍କର ଲେଖା ଆରମ୍ଭ କଲେ, ସେ ତାଙ୍କର ବହିର ନାମ ଗୀତିନାଟ୍ୟ ରଖିଲେ—ଯେପରି କି କର୍ଣ୍ଣବଧ ଗୀତିନାଟ୍ୟ, ହରିଶ୍ଚନ୍ଦ୍ର ଗୀତିନାଟ୍ୟ ଇତ୍ୟାଦି । ଏଥିକିବେଳେ କେହି ଜଣେ କହିଲେ ଯେ, ବୈଷ୍ଣବ ପାଣି ଓ ଅନ୍ୟମାନଙ୍କ ଗୀତିନାଟ୍ୟ ତ ଏବେ, ସମ୍ପୂର୍ଣ୍ଣ ଲୋପ୍ ପାଇଗଲାଣି । ମୁଁ କହିଲି—ନା, ଲୋପ୍ ପାଇନି । ପ୍ରାୟ ପଚାଶ ବର୍ଷ ହେବ ବିତେଇ ଯାଇଛି ମାତ୍ର । ଯୋଉ ଗୀତିନାଟ୍ୟ ଦୀର୍ଘ ଚାଳିଶି ପଚାଶ ବର୍ଷ ଧରି ଅତି ଉଚ୍ଚଶିକ୍ଷିତ ଠୁଁ ଆରମ୍ଭ କରି ସ୍ୱଳ୍ପ-ଶିକ୍ଷିତ ଏପରିକି ସମ୍ପୂର୍ଣ୍ଣ ଅଶିକ୍ଷିତ ଦର୍ଶକ ପର୍ଯ୍ୟନ୍ତ ସମସ୍ତଙ୍କୁ ମୁଗ୍ଧ କରି ରଖିଥିଲା, ତାହା କେବେ ଲୋପ୍ ପାଇ ଯିବନି । କଟକ ବେତାର କେନ୍ଦ୍ର ୧୯୪୮ ମସିହାରେ ସ୍ଥାପିତ ହେଲା । ଏଇ ବାରବର୍ଷ ଭିତରେ ଓଡ଼ିଶାର ପ୍ରାୟ ସମସ୍ତ ସାଂସ୍କୃତିକ ବିଭବ ଅର୍ଥାତ୍ ପାଲା, ଦାଶକାଠିଆ, ଘୋଡ଼ାନାଚ, ତେଲଙ୍ଗିବାଦ୍ୟ, ମୃଦଙ୍ଗ କୀର୍ତ୍ତନ ଆଦି ସମସ୍ତ ଲୋକକଳା ବେତାରକେନ୍ଦ୍ରରେ ସ୍ଥାନ ପାଇଛି । କିନ୍ତୁ କାହିଁକି କେଜାଣି, ଆମର ଗୀତିନାଟ୍ୟ, ଯାହାକୁ ଆମେ ଆମର ସଂସ୍କୃତ ନାଟ୍ୟଯୁଗ ପରବର୍ତ୍ତୀ ଆଧୁନିକ ନାଟକର ପ୍ରତୀକ ବୋଲି କହିବା, ତାହା ଏପର୍ଯ୍ୟନ୍ତ ବେତାରକେନ୍ଦ୍ରରେ ସ୍ଥାନ ପାଇନି ।...ଏଇଠି ଷ୍ଟେସନ ଡାଇରେକ୍ଟର ଶ୍ରୀଯୁକ୍ତ ପି.ଭି. କୃଷ୍ଣମୂର୍ତ୍ତି ଜାଣିବାକୁ ଚାହିଁଲେ ଯେ, କ'ଣ ବର୍ତ୍ତମାନ କରାଯିବ ?... ଉତ୍ତରରେ ମୁଁ କହିଲି—ଆପଣ ଯଦି ଚାହିଁବେ ସାର୍, ତେବେ ଆମେ ଆମର ଗୀତିନାଟ୍ୟ ରେକର୍ଡିଂ କରିପାରିବା ।...ସେ ଏଥିରେ ସମ୍ମତ ହେଲେ ଓ ମୁଁ ବ୍ୟକ୍ତିଗତ ଭାବେ ଏ ଦାୟିତ୍ୱ ଗ୍ରହଣ କଲି । ତେବେ ଏଇଠି ଶ୍ରୀଯୁକ୍ତ କୃଷ୍ଣମୂର୍ତ୍ତି ତାଙ୍କ କଥାରେ ଟିକିଏ ଲଘୁଭାବ ଆଣି ମତେ ସୂଚେଇଦେଲେ ଯେ ଏ ଦାୟିତ୍ୱ ତମ ଉପରେ ରହିଲା ଠିକ୍ । କିନ୍ତୁ ଆମର ଶ୍ରୋତାମାନେ ଯଦି ଗୀତିନାଟ୍ୟକୁ ଗ୍ରହଣ ନ କରନ୍ତି ?? ..ମୁଁ ମୁହୂର୍ତ୍ତେ ବିଳମ୍ବ ନ କରି ସଙ୍ଗେ ସଙ୍ଗେ ଉତ୍ତର ଦେଲି—ସାର୍, ଆକାଶବାଣୀ ଡି.ଜି.ଙ୍କ ଦ୍ୱାରା ନିଯୁକ୍ତ ହୋଇ ମୁଁ ଏଠି ନାଟକ ବିଭାଗରେ ଯୋଗ ଦେଇଛି । ନାଟକ ରଚନା ଓ ପ୍ରଯୋଜନା କରିବା ହେଲା ମୋର

କର୍ମ ଓ ଧର୍ମ । ବୈଷ୍ଣବ ପାଣିଙ୍କ ଲିଖିତ ଗୀତିନାଟ୍ୟର ମୋ ଦ୍ୱାରା ବେତାର ନାଟ୍ୟରୂପକୁ ଯଦି ଶ୍ରୋତାମାନେ ଗ୍ରହଣ ନ କରନ୍ତି, ତେବେ ସେ ଦୋଷ ବୈଷ୍ଣବ ପାଣିଙ୍କର ନୁହେଁ, ମୋର । ଏହାପରେ ମୋର ସ୍ଥାନ ଆଉ ଆକାଶବାଣୀରେ ରହିବ ନାହିଁ । ମୁଁ ଆକାଶବାଣୀରୁ ବିଦାୟ ନେଇଯିବି ।···ଶ୍ରୀଯୁକ୍ତ କୃଷ୍ଣମୂର୍ତ୍ତି ହସି ହସି କହିଲେ—ଆରେ ନା, ନା, ମୁଁ ସେକଥା କହୁନି । ଏହାପରେ ଏ ଆଲୋଚନା ଏଇଠି ଶେଷ ହେଲା । ବାସ୍ତବରେ ମୋ'ର ବ୍ୟକ୍ତିଗତ ପ୍ରଚେଷ୍ଟାରେ ହିଁ ପ୍ରଥମରେ ବୈଷ୍ଣବ ପାଣିଙ୍କ ରଚିତ ରଙ୍ଗସଭା ଗୀତାଭିନୟ ୧୯୬୦ ମସିହା ନଭେମ୍ବର ମାସ ୧୬ ତାରିଖରେ କଟକ ଆକାଶବାଣୀରୁ ପ୍ରସ୍ତୁତ ହେଲା । କାର୍ଯ୍ୟକ୍ରମଟି ଶୁଣିବା ପରମୁହୂର୍ତ୍ତରେ ହିଁ ଡକ୍ଟର ପ୍ରାଣକୃଷ୍ଣ ପରିଜା ଷ୍ଟେସନ ଡାଇରେକ୍ଟରଙ୍କୁ ଫୋନ୍ କରି କହିଲେ—ଆଜି ଏ କଟକ ବେତାରକେନ୍ଦ୍ରର ପୁନର୍ଜନ୍ମ ହେଉଛି— ମିଃ କୃଷ୍ଣମୂର୍ତ୍ତି, ତୁମେ ଆଉ ପଛକୁ ଫେରି ଚାହଁନା, ଆଗେଇଯାଅ ।···ଏହାପରେ ଯଥା ସମୟରେ ମୋର ପ୍ରଥମ ଗୀତିନାଟ୍ୟ "ଗଣେଶ" କଟକ ଆକାଶବାଣୀରେ ପ୍ରସ୍ତୁତ ହେଲା । ଏଠି ଏ କଥାଟି ଉଲ୍ଲେଖ ନ କରି ମୁଁ ରହିପାରୁନି ଯେ ଗଣେଶ ଗୀତିନାଟ୍ୟ ପ୍ରସାରଣ ପରେ ଶ୍ରୋତାମାନଙ୍କ ଠାରୁ ପ୍ରଶଂସାସୂଚକ ଏକ ଶହରୁ ଅଧିକ ପତ୍ର ବେତାରକେନ୍ଦ୍ରକୁ ଆସିଥିଲା । ସେ ପର୍ଯ୍ୟନ୍ତ କୌଣସି ଗୋଟିଏ କାର୍ଯ୍ୟକ୍ରମ ସପକ୍ଷରେ ଏତେ ସଂଖ୍ୟକ ପତ୍ର ବେତାରକେନ୍ଦ୍ରକୁ ଏଇ ପ୍ରଥମ ଆସିଲା । ପୁଣି ଏଇ ଗଣେଶ ଗୀତିନାଟ୍ୟ ବେତାରରୁ ଶୁଣି ଆନ୍ତର୍ଜାତିକ ଖ୍ୟାତି-ସମ୍ପନ୍ନା ସାହିତ୍ୟ ଓ କଳାର କ୍ରିଟିକ୍ (ଆଲୋଚିକା) ଶ୍ରୀମତୀ ଅମିତା ମଲ୍ଲିକ ଏଇ କାର୍ଯ୍ୟକ୍ରମଟିର ଉଚ୍ଚ ପ୍ରଶଂସା କରି Times of India ରବିବାର ସଂଖ୍ୟା ପତ୍ରିକାରେ ଏକ ସୁବିସ୍ତୃତ ଆଲୋଚନା କରିଥିଲେ ।

(ଶାଳୀନତା ବା ଶିଷ୍ଟାଚାରର ଦୃଷ୍ଟିରୁ ଗିତିନାଟ୍ୟ ସମ୍ପର୍କରେ ମୋର ଉପରୋକ୍ତ ବକ୍ତବ୍ୟ ପ୍ରକାଶ କରିବା ହୁଏତ ଉଚିତ ନ ଥିଲା । କିନ୍ତୁ ମୋ' ବ୍ୟକ୍ତିଗତ ପ୍ରଚେଷ୍ଟାରେ ଗଣକବିଙ୍କ 'ରଙ୍ଗସଭା' ଗୀତିନାଟ୍ୟ ଓ ସେଇ ସାଙ୍ଗେ ସାଙ୍ଗେ ସେଇ ବୈଷ୍ଣବପାଣି ଓ ବାଲକୃଷ୍ଣ ମହାନ୍ତିଙ୍କ ଅନ୍ୟ ଗୀତିନାଟ୍ୟ ସବୁର ସଫଳ ପ୍ରସାରଣ ଦ୍ୱାରା ତଦବଧିଲୁପ୍ତ ଆମ ନାଟ୍ୟ ଜଗତର ମହାନ୍ ସମ୍ପଦ ପାରମ୍ପରିକ ଗୀତିନାଟ୍ୟର ଯେଉଁ ଅଭୂତପୂର୍ବ ପୁନରୁତ୍‌ଥାନ ହେଲା ଓ ସେଇ ସମ୍ପର୍କରେ ଅଗଣିତ ବେତାର-ଶ୍ରୋତା ଓ ସୁଧୀ ସମାଲୋଚକମାନଙ୍କର ମୂଲ୍ୟବାନ୍ ମତାମତ ଯଦି ମୁଁ ଏଠି ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରି ନ ଥା'ନ୍ତି, ତେବେ ମୁଁ ସେଇମାନଙ୍କ ନିକଟରେ ନିଶ୍ଚିତ ଭାବେ ଅପରାଧୀ ହୋଇ ରହିଯାଇଥା'ନ୍ତି) ।

## ଗୀତନାଟ୍ୟ

| ନାମ | ପ୍ରକାଶନ କାଳ |
|---|---|
| ୧ । ଚମ୍ପୂବିନୋଦ | ୧୯୮୮ |
| ୨ । ଗଣେଶ | ୧୯୭୨ |
| ୩ । ନପାନ୍ତୁ ରାଣ୍ଡ | ୧୯୭୨ |
| ୪ । ମହିଷମର୍ଦ୍ଦିନୀ | ୧୯୭୨ |
| ୫ । କପଟପଶା | ୧୯୮୯ |
| ୬ । ଶ୍ରୀ ଜଗନ୍ନାଥ | ୧୯୮୩ |
| ୭ । ବୋଲେ ହୁଁ'କି | ୧୯୮୩ |
| ୮ । ଘର ବର ଦେଖା | ୧୯୭୭ |
| ୯ । ବିନ୍ଦୁସାଗର | ୧୯୭୯ |
| ୧୦ । ମୀରାବାଈ | ୧୯୮୮ |
| ୧୧ । ଅଯୋଧ୍ୟା କାଣ୍ଡ | ୧୯୮୮ |
| ୧୨ । ଶ୍ରୀମତୀ ସମ୍ଭାର୍କ୍ତିନୀ | ୧୯୭୪ |
| ୧୩ । ଜନ୍ମାଷ୍ଟମୀ | ୧୯୮୨ |
| ୧୪ । ସମ୍ପୂର୍ଣ୍ଣ ରାମାୟଣ ... | ୧୯୮୦ |
| ୧୫ । ଛନୋଟି ଅପେରା ଏକାଙ୍କ | ୧୯୭୨ |
| ୧୬ । ସୀତା, ଲବ-କୁଶ | ୧୯୮୦ |
| ୧୭ । ପଞ୍ଚବଟୀ | ୧୯୮୧ |

## ଗଳ୍ପ ସଂକଳନ

| | |
|---|---|
| ୧ । ସେଇ ଫୁଲ | ୧୯୮୯ ମସିହା |
| ୨ । ଚନ୍ଦ୍ରମୁଖୀ | ୧୯୯୩ ମସିହା |

## ବେତାର ନାଟକ

ମୋର ପ୍ରଥମ ବେତାର ନାଟକ "ସମ୍ରାଟ୍‌ନନ୍ଦନୀ ଜାହାନାରା" ୧୯୪୯ ମସିହା ଜୁନ୍‌ମାସ ୧୫ ତାରିଖରେ କଟକ ଆକାଶବାଣୀ କେନ୍ଦ୍ରରୁ ପ୍ରସାରିତ ହୋଇଥିଲା । ସେତେବେଳେ ମୁଁ ବେତାର କେନ୍ଦ୍ରରେ ଜଣେ କର୍ମଚାରୀଭାବେ ଯୋଗଦେଇନ । ଏଇ ପାଣ୍ଡୁଲିପିଟିକ କେନ୍ଦ୍ରକୁ ପଠାଇବାର ଗୋଟିଏ ଦିନ ପରେ କର୍ତ୍ତୃପକ୍ଷଙ୍କ ସହିତ ଏ ନାଟକ ସମ୍ପର୍କରେ ଆଲୋଚନା କରିବା ପାଇଁ ଆମନ୍ତ୍ରଣ

ଯାଇଲି । କେନ୍ଦ୍ରକୁ ଗଲି । ବାସ୍ତବରେ ଆଲୋଚନା ସେମିତି କିଛି ନ ଥିଲା । ବରଂ ଆକାଶବାଣୀରେ ପ୍ରସାରିତ ହେବା ପାଇଁ ଏଇ ନାଟକଟି ଗୃହୀତ ହୋଇଯାଇଥାଏ । ଗୋଟିଏ ତଥାକଥିତ ଆପତ୍ତିଜନକ ଉଦ୍ଧୃତ ଶବ୍ଦ ନାଟକରେ ଥିଲା । ସେଇଟିକୁ ମୋର ଅନୁମତି ନେଇ ସେମାନେ ବାଦ୍‌ଦେଲେ । ସେତେବେଳେ ବେତାର କେନ୍ଦ୍ରରେ ବେଶ୍ ସମ୍ମାନଜନକ ଭାବେ ଅତିଥିମାନଙ୍କୁ ଅଭ୍ୟର୍ଥନା କରାଯାଉଥିଲା । ପ୍ଲେଟ୍ ଭର୍ତ୍ତି ମିଷ୍ଟାନ୍ନ—କଫି—୫୫୫ ସିଗ୍ରେଟ୍ । ହଁ, ମୁଁ ପଢ଼ିବା-ପାଇଁ ଦୁଇଖଣ୍ଡି ବହି ମତେ ଦେଲେ—(1) How to write Radio plays ? (2) B. B. C. Radio plays । ବେତାର ପାଇଁ କ୍ରମାଗତ ବେତାର ନାଟକ ମୁଁ ଲେଖିବା ପାଇଁ ସେମାନେ ଚାହିଁଲେ । ବାସ୍ତବରେ ମୁଁ ଗୋଟିଏ ପରେ ଗୋଟିଏ ବେତାର ନାଟକ ଲେଖିଚାଲିଲି । ସେତେବେଳେ ଆମେ ଯେଉଁମାନେ ମଞ୍ଚନାଟକ ଲେଖୁଥିଲୁ—ବିଶେଷତଃ ଶ୍ରୀ ରାମଚନ୍ଦ୍ର ମିଶ୍ର, ଶ୍ରୀ ଭଞ୍ଜକିଶୋର ପଟ୍ଟନାୟକ ଓ ମୁଁ, ଆମମାନଙ୍କ ଭିତରୁ ମିଶ୍ରେ ଆଦୌ ବେତାର ନାଟକ ଲେଖିଲେ ନାହିଁ । ଭଞ୍ଜକିଶୋର ଭଲ ଲେଖୁଥିଲେ, କିନ୍ତୁ ଅଳ୍ପ କିଛି ଲେଖିଲା ପରେ ବନ୍ଦ କରିଦେଲେ । କିନ୍ତୁ ମୁଁ ୧୯୫୬ ମସିହା ପର୍ଯ୍ୟନ୍ତ କ୍ରମାଗତ ବେତାର ନାଟକ ଲେଖି ଚାଲିଲି । ଏହାପରେ ୧୯୫୬ ମସିହାରେ ଦିଲ୍ଲୀରେ ଅନୁଷ୍ଠିତ ସର୍ବଭାରତୀୟ ସ୍ତରରେ ବେତାର ନାଟକ ଲେଖକମାନଙ୍କର ଏକ ଆଲୋଚନା ସଭାରେ ମୁଁ ଓଡ଼ିଆ ଭାଷାର ପ୍ରତିନିଧିତ୍ୱ କରି ଯୋଗଦେଲି । ସେଇଠି ବେତାର କେନ୍ଦ୍ରର ଡାଇରେକ୍ଟର ଜେନେରାଲ ଶ୍ରୀଯୁକ୍ତ ମାଥୁର୍ ସାହେବ ମୋର ବେତାର ନାଟକ ରଚନା ସମ୍ପର୍କରେ ମୋ'ଠୁ କିଛି ଜାଣିବାକୁ ଚାହିଁଲେ । ସେଇବର୍ଷ ଅର୍ଥାତ ୧୯୫୬ ମସିହା ଡିସେମ୍ବର ମାସରେ କଟକ ଆକାଶବାଣୀର ଜଣେ ସିନିୟର୍ ନାଟ୍ୟକାର ଭାବରେ ଯୋଗଦେଇ ୧୯୭୫ ମସିହା ଡିସେମ୍ବର ମାସରେ ଅବସର ଗ୍ରହଣ କଲି । ଏଇ କାର୍ଯ୍ୟକାଳ ମଧ୍ୟରେ ମୁଁ ସ୍ମରଣହରୁ ଊର୍ଦ୍ଧ୍ୱ ବେତାର ନାଟକ ରଚନା କରିଛି । ଏଇ ସମୟରେ ଷ୍ଟେସନ୍ ଡାଇରେକ୍ଟର କୃଷ୍ଣମୂର୍ତ୍ତିଙ୍କ ନିର୍ଦ୍ଦେଶ କ୍ରମେ ଆମର ସର୍ବପ୍ରଥମ ବେତାର ଧାରାବାହିକ ନାଟକ "ପୁରପୁର ପାରିବାରିକ"ର ରଚନା ଓ ପ୍ରଯୋଜନା ମୁଁ କଲି । ମାସକୁ ଅଧଘଣ୍ଟାର ଗୋଟିଏ ଚିତ୍ର ପ୍ରସାରିତ ହେଉଥିଲା । ତେତିଶ୍ ମାସ ପର୍ଯ୍ୟନ୍ତ ଏହା ଚାଲିଥିଲା । ଏହାପରେ ବିଭ୍ରାଟ (ଏକବର୍ଷ) ଡାକ୍ତରବାବୁ (ଏକବର୍ଷ) ଓ ଶ୍ରୀହରିଙ୍କ ସଂସାର ଅଢ଼ଚାଳିଶଟି ଚିତ୍ର ପ୍ରସାରିତ ହୋଇଥିଲା । ଏ ସମସ୍ତ ଥିଲା ହାସ୍ୟରସ-ଧର୍ମୀ ରଚନା ।

## ଦୂରଦର୍ଶନ ନାଟକ

କଟକ ଓ ଭୁବନେଶ୍ୱର ଦୂରଦର୍ଶନ ପାଇଁ ପ୍ରାୟ ପଞ୍ଚାଅଶୀଟି (୮୫) ନାଟକ ଲେଖିଚି । ଏଥିରେ "ଚକ୍ରବ୍ୟୂହ" ଓ "ଏମିତି ହୁଏ ନାହିଁ" ପ୍ରଭୃତି ଧାରାବାହିକ ନାଟକ ମଧ୍ୟ ପ୍ରସାରିତ ହୋଇଥିଲା ।

## ଗଳ୍ପ

ପ୍ରାୟ ତିରିଶଟି ଗଳ୍ପ ଦୁଇଟି ସଙ୍କଳନରେ ପ୍ରକାଶିତ ହୋଇଛି ।

## ଗୀତରଚନା

କଟକ ଆକାଶବାଣୀର ଜଣେ ସ୍ୱୀକୃତିପ୍ରାପ୍ତ ଗୀତିକାର ।

## ଚଳଚ୍ଚିତ୍ର

୧୯୪୯/୫୦ ମସିହାରେ ରୂପବାଣୀ ପ୍ରଯୋଜିତ ଓଡ଼ିଶାର ଅନ୍ୟତମ ଶ୍ରେଷ୍ଠ ଚଳଚ୍ଚିତ୍ର "ଶ୍ରୀ ଜଗନ୍ନାଥ" ସହିତ ଶ୍ରୀଯୁକ୍ତ ବାବୁଲାଲ୍ ଦୋଷୀଙ୍କ ପ୍ରଯୋଜିତ ଅମଡ଼ାବାଟ, ଅଭିନେତ୍ରୀ, ଅଦିନ ମେଘ, ମାଟିର ମଣିଷ, ତଥା ବଧୂ ନିରୁପମା ଓ ସ୍କୁଲମାଷ୍ଟର ପ୍ରଭୃତି ପ୍ରାୟ ପଚାଶଗୋଟି ଚଳଚ୍ଚିତ୍ରର ଚିତ୍ରରୂପ ଓ ସଂଳାପ ରଚନା କରିଅଛି ।

## ଏଲ୍. ପି. ରେକର୍ଡ଼

୧୯୭୬-୭୭ ମସିହା । ସେତେବେଳେ ପାଞ୍ଚ, ଛ ମିନିଟ୍‌ର ମାତ୍ର ଦୁଇ ତିନୋଟି ଓଡ଼ିଆ ନାଟକର ଗ୍ଲେଟ ଗ୍ରାମଫୋନ୍ ରେକର୍ଡ଼ ମିଳୁଥିଲା । ଏଲ୍. ପି. (ଲଙ୍ଗ୍ ପ୍ଲେଇଙ୍ଗ୍) ଅର୍ଥାତ୍ ଷାଠିଏ ମିନିଟ୍‌ର ଓଡ଼ିଆ ନାଟକର ରେକର୍ଡ଼ ଆଦୌ ନ ଥିଲା । ୧୯୭୭ରେ ବିଖ୍ୟାତ କଣ୍ଠଶିଳ୍ପୀ ଶ୍ରୀ ଅକ୍ଷୟକୁମାର ମହାନ୍ତି ଏକ ଏଲ୍. ପି. ରେକର୍ଡ଼ରେ ମୋର ଷାଠିଏ ମିନିଟ୍‌ର ଗୀତିନାଟକ ଶ୍ରୀମତୀ ସମ୍ଭାର୍ଜନୀକୁ ରେକର୍ଡ଼ କରାଇଲେ । ଏହାପରେ ଶ୍ରୀ ବାସୁଦେବ ରଥ ଓ ଅନ୍ୟମାନେ ମୋର ପ୍ରାୟ କୋଡ଼ିଏଟି ଗୀତିନାଟ୍ୟର ଏଲ୍. ପି. ରେକର୍ଡ଼ କରାଇଚନ୍ତି । ଏ ସବୁ ବର୍ତ୍ତମାନ କ୍ୟାସେଟ୍‌ରେ ମିଳୁଚି ।

## ଅନ୍ୟ ଭାଷାର ନାଟକ ସବୁର ଓଡ଼ିଆ ନାଟ୍ୟରୂପ

ଇଂରାଜୀ ଭାଷାର—"Enemy of the people, Mock Doctor, Evil that Men do and a Man with a Bowler's Hat." ଏବଂ

ବଙ୍ଗଳା ଭାଷାର ଶରତ ଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ "ରାମେର୍ ସୁମତି" ଓ ଶିବରାମ୍ ଚକ୍ରବର୍ତ୍ତୀଙ୍କ ବଙ୍ଗଳା ଗଳ୍ପ "ହନୁମାନେର ସ୍ୱପ୍ନ", ଏ ସବୁର ମୋ' ଦ୍ୱାରା ଓଡ଼ିଆ ନାଟ୍ୟ ରୂପାନ୍ତର ବେତାର ଓ ବିଭିନ୍ନ ମଞ୍ଚରେ ଅଭିନୀତ ହୋଇଛି ।

## ମୋ' ନିଜସ୍ୱ ଓଡ଼ିଆ ରଚନାର ଅନ୍ୟ ଭାଷାରେ ଅନୁବାଦ

ନାଟକ ପରିକଲ୍ପନା, ସହଧର୍ମିଣୀ ଓ ସମୁଦ୍ରମନ୍ଥନ ହିନ୍ଦୀ ଭାଷାରେ ଓ ନାଟକ ସୀମା ଇଂରାଜୀ ଭାଷାରେ ଅନୁବାଦିତ ହୋଇଛି । ...ଗଳ୍ପ "ଆଉ ଏକ ନାରୀ" ଏବଂ "ଚକ୍ରବିଚକ୍ର" ତେଲୁଗୁ ଭାଷାରେ ଏବଂ ଗଳ୍ପ "ମଧ୍ୟରାତ୍ରିର ପ୍ରହସନ" ଏବଂ "ନବଦମ୍ପତି" ଇଂରାଜୀ ଭାଷାରେ ଅନୁବାଦିତ ହୋଇଛି ।

## ସମ୍ମାନ ଓ ପୁରସ୍କାର

୧ । ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ଦ୍ୱାରା ପ୍ରଦତ୍ତ Governor's **Plaque of Honour, 1991.**

୨ । କେନ୍ଦ୍ର ସାହିତ୍ୟ ଏକାଡ଼େମୀଙ୍କ ଦ୍ୱାରା ପୁସ୍ତକ "ହାସ୍ୟରସର ନାଟକ" ପାଇଁ ୧୯୮୨ ସମ୍ମାନ ଓ ପୁରସ୍କାର ।

୩ । କେନ୍ଦ୍ର ସଙ୍ଗୀତ ନାଟକ ଏକାଡ଼େମୀ ଦ୍ୱାରା ନାଟ୍ୟ ରଚନା ପାଇଁ ୧୯୮୭ ସମ୍ମାନ ଓ ପୁରସ୍କାର ।

୪ । ଓଡ଼ିଶା ରାଜ୍ୟ ସାହିତ୍ୟ ଏକାଡ଼େମୀ ଦ୍ୱାରା ନାଟକ "ଛନୋଟି ଅପେରା ଏକାଙ୍କ" ପାଇଁ ୧୯୭୬ ସମ୍ମାନ ଓ ପୁରସ୍କାର ।

୫ । ଓଡ଼ିଶା ରାଜ୍ୟ ସଙ୍ଗୀତ ନାଟକ ଏକାଡ଼େମୀ ଦ୍ୱାରା ନାଟ୍ୟ ରଚନା ପାଇଁ ୧୯୭୬ ସମ୍ମାନ ଓ ପୁରସ୍କାର ।

୬ । ଓଡ଼ିଶା ରାଜ୍ୟ ସାହିତ୍ୟ ଏକାଡ଼େମୀ ଦ୍ୱାରା ଓଡ଼ିଆ ଭାଷାରେ ପ୍ରବୀଣତା ପାଇଁ ୧୯୮୬ ସମ୍ମାନ ଓ ପୁରସ୍କାର ।

୭ । ନାଟ୍ୟ ରଚନା ପାଇଁ ୧୯୮୮ ଶାରଳା ସମ୍ମାନ ଓ ପୁରସ୍କାର ।

୮ । ନାଟ୍ୟ ଓ ଗଳ୍ପ ରଚନା ପାଇଁ ୧୯୯୩ ସମ୍ମାନଜନକ ପ୍ରଜାତନ୍ତ୍ର ବିଷୁବ ସମ୍ମାନ ଓ ପୁରସ୍କାର ।

୯ । କଟକ ଗଣକବି ସାହିତ୍ୟ ସଂସଦ କଟକଙ୍କ ଦ୍ୱାରା ଗୀତିନାଟ୍ୟ ରଚନା ପାଇଁ ସମ୍ମାନ ଓ ପୁରସ୍କାର ।

୧୦ । ହାସ୍ୟରସର ନାଟକ ଓ ଗଳ୍ପ ଆଦି ରଚନା ପାଇଁ କଟକ ହାସ୍ୟ-ବିକାଶ କେନ୍ଦ୍ରଙ୍କ ଦ୍ୱାରା ୧୯୯୩ କାନ୍ତକବି ପୁରସ୍କାର ।

୧୧ । ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ଦ୍ୱାରା ୧୯୫୪ ନାଟକ ପ୍ରତିଯୋଗିତାରେ ଏ ଲେଖକର ନାଟକ "ପରକଲମ" ଶ୍ରେଷ୍ଠ ସ୍ଥାନ ଅଧିକାର ପାଇଁ ପୁରସ୍କାର ଓ ସେଇବର୍ଷ ଦିଲ୍ଲୀ ସର୍ବଭାରତୀୟ ନାଟକ ପ୍ରତିଯୋଗିତା ପାଇଁ ନାଟକ ପରକଲମ ନିର୍ବାଚିତ ।

୧୨ । ୧୯୫୬ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀର ଏକ ନାଟକ ପ୍ରତିଯୋଗିତାରେ ଏଇ ଲେଖକର ନାଟକ "ଅର୍ଦ୍ଧାଙ୍ଗିନୀ" ସର୍ବଶ୍ରେଷ୍ଠ ବିବେଚିତ ଓ ପୁରସ୍କୃତ ।

୧୩ । ୧୯୭୪ ମସିହା ସର୍ବଭାରତୀୟ ସ୍ତରରେ ବେତାର ନାଟକ ପ୍ରତିଯୋଗିତାରେ ଏ ଲେଖକର ଗୀତିନାଟ୍ୟ "ଶ୍ରୀମତୀ ସମ୍ମାର୍ଜନୀ" ସର୍ବଶ୍ରେଷ୍ଠ ବିବେଚିତ ଓ ପୁରସ୍କୃତ ।

## ବିଭିନ୍ନ ଅନୁଷ୍ଠାନ ଦ୍ୱାରା ସମ୍ମାନିତ

୧ । ଜଗତ୍‌ସିଂହପୁର ସାହିତ୍ୟ ସଂସଦ ୧୯୭୬
୨ । ଖାନନଗର ବିଦ୍ୟାପୀଠ ୧୯୭୫
୩ । ଉତ୍କଳ ପାଠକ ସଂସଦ ୧୯୭୧
୪ । ଗୃହ୍ଣ ନେହେରୁ ସମ୍ମାନ ୧୯୯୨
୫ । ଓଡ଼ିଆ ନାଟକ ଶତବାର୍ଷିକ ଉତ୍ସବ ୧୯୭୭
୬ । "ନଗର ପତ୍ରିକା" ରଜତ ଜୟନ୍ତୀ ଉତ୍ସବ ୧୯୫୬
୭ । 'ଆବେଗ' ଭୁବନେଶ୍ୱର ୧୯୮୨
୮ । ରାଜଧାନୀ ନୀଳଶୈଳ, ଭୁବନେଶ୍ୱର ୧୯୮୩
୯ । କଳାବିକାଶ କେନ୍ଦ୍ର ରଜତ ଜୟନ୍ତୀ ଉତ୍ସବ ୧୯୭୦

## ବିଭିନ୍ନ ପଦବୀ

ଆଞ୍ଚଳିକ ଚଳଚ୍ଚିତ୍ର ସେନ୍‌ସର୍ ବୋର୍ଡର ସଭ୍ୟ ।
ଓଡ଼ିଶା ସାହିତ୍ୟ ଏକାଡ଼େମୀ ସାଧାରଣ ପରିଷଦର ସଭ୍ୟ ।
ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ସାଧାରଣ ପରିଷଦର ସଭ୍ୟ ।
ଓଡ଼ିଆ ଚଳଚ୍ଚିତ୍ର ପୁରସ୍କାର ପ୍ରଦାନ ବିଚାରକ ମଣ୍ଡଳୀର ସଭ୍ୟ ।
କଟକ ଦୂରଦର୍ଶନ କେନ୍ଦ୍ର ପରାମର୍ଶଦାତା ମଣ୍ଡଳୀର ସଭ୍ୟ ।

ଓଡ଼ିଶାର ତିନୋଟିଯାକ ବିଶ୍ୱବିଦ୍ୟାଳୟ (ଉତ୍କଳ, ବ୍ରହ୍ମପୁର ଓ ସମ୍ବଲପୁର) ମାନଙ୍କରେ ଏହି ଶତାବ୍ଦୀର ଷଷ୍ଠ ଦଶକରୁ ଏ ଅବଧି ଏହି ଲେଖକର କେତେଗୋଟି ନାଟକ କଲେଜ ପାଠ୍ୟପୁସ୍ତକରୂପେ ଅନୁମୋଦିତ ହୋଇ ଆସୁଅଛି । ପୁସ୍ତକଗୁଡ଼ିକର ନାମ ନିମ୍ନରେ ପ୍ରଦତ୍ତ ହେଲା—

୧ । ଭରସା
୨ । ପର କଲମ
୩ । ଫେରିଆ
୪ । ଶଙ୍ଖାସିନ୍ଦୂର
୫ । ସାଧନା
୬ । ଅର୍ଦ୍ଧାଙ୍ଗିନୀ

ମ୍ୟାଟ୍ରିକ୍ୟୁଲେସନ୍ ପାଠ୍ୟ ପୁସ୍ତକ ପାଇଁ ଏହି ଲେଖକର ନିମ୍ନୋକ୍ତ ଏକାଙ୍କିକା ସବୁ ମାଧ୍ୟମିକ ଶିକ୍ଷା ପରିଷଦ ଦ୍ୱାରା ଅନୁମୋଦିତ ହୋଇଚି ।

୧ । ସାମଲ ବୁଅ
୨ । ବଉଳ
୩ । ବଉଳା
୪ । ବେଣୀବନ୍ଧନୀ
୫ । ଗୃହବୋହୂ
୬ । ସମୁଦ୍ରମନ୍ଥନ
୭ । ଡାକ୍ତର କ୍ୱାଇଁ
୮ । ଶୋଷ

ଏପର୍ଯ୍ୟନ୍ତ ତିନିଜଣ ଅଧ୍ୟାପକ ଏହି ଲେଖକର ନାଟ୍ୟ ରଚନାର ଗବେଷଣାତ୍ମକ ସନ୍ଦର୍ଭମାନ ଲେଖି Doctorate ବା ପି-ଏଚ୍. ଡ଼ି. (Ph. D.) ସମ୍ମାନ ଲାଭ କରିଚନ୍ତି । ସେମାନେ ହେଲେ ଡକ୍ଟର ସର୍ବେଶ୍ୱର ମିଶ୍ର, ଖଲ୍ଲିକୋଟ କଲେଜ, ବ୍ରହ୍ମପୁର, ଡକ୍ଟର ଶରତକୁମାର ମିଶ୍ର, ଜୟଦେବ କଲେଜ, ଭୁବନେଶ୍ୱର ଓ ଡକ୍ଟର ଶ୍ରୀମତୀ ସ୍ନେହଲତା ମିଶ୍ର ରଘୁନାଥଜୀ କଲେଜ, କଟକ ।

ଶ୍ରୀଯୁକ୍ତ ସର୍ବେଶ୍ୱର ମିଶ୍ର ଓ ଶରତ ମିଶ୍ର ଦୁହିଁଙ୍କର ଗବେଷଣା ବିଷୟ ଥିଲା "ଗୋପାଳ ଛୋଟରାୟଙ୍କ ସାମଗ୍ରିକ ନାଟ୍ୟରଚନା" ଓ ଶ୍ରୀମତୀ ମିଶ୍ରଙ୍କ ବିଷୟବସ୍ତୁ ଥିଲା—"ବେତାର ନାଟ୍ୟ ସ୍ରଷ୍ଟା ଶ୍ରୀ ଗୋପାଳ ଛୋଟରାୟ" ।

—*—



ଗୋପାଳ ଛୋଟରାୟ

ଜନ୍ମ ୧୯୧୬ ମସିହା ବର୍ତ୍ତମାନର ଜଗତସିଂହପୁର ଜିଲ୍ଲା ସୁତୁଣୀଗଡ଼ ଗ୍ରାମରେ । କର୍ମସ୍ଥଳୀ କଟକ ସହର । ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ବହୁ ସଂଖ୍ୟାରେ ମଞ୍ଚ ନାଟକ, ବେତାର ନାଟକ, ଦୂରଦର୍ଶନ ନାଟକ, ଚଳଚ୍ଚିତ୍ର କାହାଣୀ ଓ ସଂଳାପ, ଗଳ୍ପ ଓ ଗୀତିନାଟ୍ୟ ଆଦି ରଚନା କରି ବହୁ ସରକାରୀ ଓ ବେସରକାରୀ ସଂସ୍ଥା ଓ ଅନୁଷ୍ଠାନ ଦ୍ୱାରା ବହୁଭାବରେ ସମ୍ମାନିତ ଓ ପୁରସ୍କୃତ ହୋଇଛନ୍ତି । ଏପର୍ଯ୍ୟନ୍ତ ତାଙ୍କର ୪୫ ଗୋଟି ପୁସ୍ତକ ପ୍ରକାଶିତ ହୋଇଛି ।

ଏହି ରଚନାଟି ହେଉଛି ତାଙ୍କର ୪୬ତମ ପୁସ୍ତକ । ଏହି ପୁସ୍ତକ ସମ୍ପର୍କରେ ଲେଖକଙ୍କ ନିଜର ବକ୍ତବ୍ୟ ହେଲା—ଏହା ଭାବର ଜଗତ ନୁହେଁ କି ଅନୁଭବର ନୁହେଁ । ଏଥିପାଇଁ ସେ ବେଳାଭୂମିରୁ ଉପଳ ସଂଗ୍ରହ କରି ନାହାନ୍ତି କି ମହୋଦଧିରୁ ମୁକ୍ତା ଆହରଣ କରି ନାହାନ୍ତି । ତାଙ୍କର ପ୍ରିୟ ସହର/ଲକ୍ଷ୍ମୀ ସହର କଟକର କିଛି ମାଟି ଗୋଡ଼ି ସଂଗ୍ରହ କରି ଶେଷରେ ସେ "ପଞ୍ଚକ"ର କଳେବରକୁ ସମୃଦ୍ଧ କରିବାର ପ୍ରୟାସ ମାତ୍ର କରିଛନ୍ତି ।

---

ISBN : 81-7411-118-2

ବିଦ୍ୟାପୁରୀ
କଟକ